# ସର୍ବପୁରାଣସାର

BY


*N. C. Das*

*&*

*Dharmananda Das*


AUTHOR AND COMPILER

*OF*

*A Book of Words & Phrases*

*A Book of Model Petitions*

*A Book for Students & Writers*

*A Dictionary of Phrases & Idioms*

ବୃକ୍ଷଲତା

ଓଡ଼ିଆ ଶବ୍ଦ ସମ୍ପଦ

ସ୍ୱାସ୍ଥ୍ୟ-ସାହିତ୍ୟ-ସମାଜ

ଛାତ୍ର-ଲେଖକ-ବକ୍ତା

ଗାଁବାଲଙ୍କ ଜାଣିବା କଥା

ସମସ୍ତଙ୍କ ଜାଣିବା କଥା

*Price—Rupees Four only*

# ଗ୍ରନ୍ଥ ପରିଚୟ

ଏହି ପୁସ୍ତକର ନାମରୁ ସ୍ପଷ୍ଟ ପ୍ରକାଶ ଯେ, ଏଥିରେ ସ୍ତ ପୁରାଣମାନଙ୍କର ସାରତତ୍ତ୍ୱମାନ ସନ୍ନିବେଶିତ ହୋଇ-ଛି । ପ୍ରାଚୀନକାଳର ମୁନିଋଷିମାନେ ବ୍ୟକ୍ତିଗତ ଜୀବନ, ାମାଜିକ ଜୀବନ, ଐହିକ ଜୀବନ ଓ ପାରତ୍ରିକ ଜୀବନପାଇଁ ାହା ସତ୍‌ମାର୍ଗ ତାହା ଗଳ୍ପ, ଉପନ୍ୟାସ ଓ ଇତିହାସ ଳରେ ପ୍ରକାଶ କରିଯାଇଛନ୍ତି । ପୃଥିବୀର ସମସ୍ତ ଦେଶରେ ହି ପ୍ରକାର ପୁରାଣମାନ ଅଛି । ମୁଁ ବିଶେଷ କରି ଭାରତୀୟ ୁରାଣମାନଙ୍କର ସାରମର୍ମ ବାଛି ଏ ପୁସ୍ତକରେ ଗୁନ୍ଥି ଦେଇଅଛି ।

ପୂର୍ବ ଓ ପାଶ୍ଚାତ୍ୟ ଦେଶର ମହାମନୀଷିମାନେ କହିଛନ୍ତି ଯେ, ମାନବର ସଂସାରରେ କ'ଣ କର୍ତ୍ତବ୍ୟ ଓ ସେ କି ପନ୍ଥା ଅନୁସରଣ କରିବ ସେଥିରେ ସେ ସନ୍ଦିହାନ ହୋଇ ପଡ଼ିଥାଏ କିନ୍ତୁ ମୁନିଋଷିଙ୍କର ବାଣୀ ତାକୁ ପ୍ରକୃତ ବାଟ ଦେଖାଇ ଦିଏ । ଆମର ସଂସ୍କୃତରେ ଏକ ଶ୍ଲୋକ ଅଛି—

ଅଜ୍ଞାନ ତିମିରାନ୍ଧସ୍ୟ-ଚକ୍ଷୁ ଉନ୍ମୀଳିତ ଯେନ
ତତ୍ ପଥ ଦର୍ଶିତଂ ଯେନ-ତସ୍ମୈ ଶ୍ରୀ ଗୁରବେ ନମଃ ।

“ଅର୍ଥାତ୍ ସତ୍ୟର ପଥ ଯେଉଁ ଗୁରୁ ଦେଖାଇ ଦେଇଛନ୍ତି ତାଙ୍କୁ ମାନି ଚଳିବା ଉଚିତ ।” ଏହି ଦୃଷ୍ଟିରୁ ଦେଖି ବସିଲେ ଏ ‘ସର୍ବ ପୁରାଣ ସାର’ ପୁସ୍ତକର ଯଥାର୍ଥତା ଅଛି । କ୍ଷୁଦ୍ର ସୀମା

ମଧ୍ୟରେ ରହି ମଧ୍ୟ ପୁରାଣ କଳ୍ପିତ ପଥ ଅନୁସରଣ କଲେ ମାନବ ଅସୀମର ସ୍ପର୍ଶରେ ଆସିପାରିବ । ଜବାହରଲାଲ୍ ନେହେରୁ ତାଙ୍କ ରଚିତ "ଭାରତର ଆବିଷ୍କାର" ନାମକ ଗ୍ରନ୍ଥରେ ପୁରାଣମାନଙ୍କର ଉପୃଓ ଓ ଉପାଦେୟତା ସମ୍ବନ୍ଧରେ କହିଛନ୍ତି "ଅତି ପ୍ରାଚୀନକାଳରୁ ଆରମ୍ଭ କରି ପ୍ରାଚୀନ ଭାରତର ବିଭିନ୍ନ ସାମାଜିକ ସ୍ତରର ସାଂସ୍କୃତିକ ବିକାଶ (Cultural development) ପ୍ରତିଫଳିତ ହୋଇଅଛି । ପରମ୍ପରା ଉପରେ ମୂଳଦୁଆ ଗଢ଼ାହୋଇ କିପରି ନୈତିକ ଓ ଆଧ୍ୟାତ୍ମିକ ଜୀବନ ନିୟନ୍ତ୍ରଣ କରିବାକୁ ହେବ ସେଥିପାଇଁ ନିର୍ଦ୍ଦେଶ ଦିଆଯାଇଅଛି । 'ପ୍ରାଚୀନ ଭାରତରେ ମାନବର ମନ ଓ ହୃଦୟରେ କି ଭାବ ଜାଗରିତ ହୋଇଥିଲା ସେହି ଅନୁସାରେ ସମାଜ ଚିନ୍ତାରେ ଓ କାର୍ଯ୍ୟରେ ଅଗ୍ରଗତି କରୁଥିଲା ଓ ସେହି ଚିନ୍ତା ଦର୍ଶନ ଓ ଧର୍ମଦ୍ୱାରା ପ୍ରଭାବିତ ହୋଇଥିଲା; "ସେହି ଚିନ୍ତା ଓ କାର୍ଯ୍ୟ ସମାଜକୁ ଏ ପର୍ଯ୍ୟନ୍ତ ନିଗୂଢ଼ ଓ ଅକ୍ଷୁଣ୍ଣ କରି ରଖିଅଛି—ସେହି ପରମ୍ପରା ଉପରେ ସମାଜ ବଞ୍ଚିରହିଛି ଓ ଜାତୀୟ ସଂହତି ସୁଦୃଢ଼ ହୋଇଅଛି ।

ପୁରାଣମାନଙ୍କରେ ଏହି ସଂସାରର ସୃଷ୍ଟି, ସ୍ଥିତି, ପ୍ରଳୟ ଓ ଦେବତା ମାନବମାନଙ୍କର ଲୀଳା ଓ ଅସୁରଙ୍କର ଦୁର୍ନୀତି ଏବଂ ଧ୍ୱଂସ ଆଦି ବିଷୟ ବର୍ଣ୍ଣିତ ହୋଇଅଛି । ଅର୍ଥାତ୍ ଧର୍ମର ଜୟ ଓ ଅଧର୍ମର ପରାଜୟର ତଥ୍ୟ ବର୍ଣ୍ଣନା ପୁରାଣର ଉଦ୍ଦେଶ୍ୟ ଅଟେ । ମାନବ ସମାଜକୁ ସତ୍‌ପଥରେ ଚାଳନ କରିବାନିମିତ୍ତ ମୁନିଋଷିଗଣ ଯେ ପୁରାଣମାନ ରଚନା କରିଛନ୍ତି ସେଥିରେ କେତେକ ସତ୍ୟଘଟଣା ସଙ୍ଗେ ସଙ୍ଗେ କେତେକ କାଳ୍ପନିକ ବିଷୟ ମଧ୍ୟ ରହିଛି; କିନ୍ତୁ ଏହି କାଳ୍ପନିକ ବିଷୟମାନଙ୍କୁ ଏ ଦେଶର ମାନବ ସମାଜ ପରମ୍ପରାରୁ ସତ୍ୟ ବୋଲି

ବିଶ୍ୱାସକର ଆସୁଅଛୁ ଓ ତାହାକୁ ଆଦର୍ଶ ପଥରୂପେ ଗ୍ରହଣ କରି-ଅଛୁ । ଏ ସୃଷ୍ଟି ବିରାଟ ହେଲେହେଁ ଅନନ୍ତର ବିରାଟ ସୃଷ୍ଟିର ଏହା ଏକ କ୍ଷୁଦ୍ର ଅଂଶ । ଯେ ଏ ସୃଷ୍ଟି କରିଛି ସେ ପୁଣି କେଡ଼େ ବିରାଟ ନୁହେଁ ? ଏହି ଭିତ୍ତି ଉପରେ ପୁରାଣ-ସୌଧ ଗଢ଼ାହୋଇଅଛି । ମନୁଷ୍ୟ ଯାହା ଚିନ୍ତା କରିଅଛି ଉଦ୍ଭାବନ ଓ ଆବିଷ୍କାର କରୁଛି ସେସବୁ ସେହି ସମୟର ଆଖିକୁ ବଡ଼ ଦିଶେ । ନୂଆ ନୂଆ ଆବିଷ୍କାର ଓ ଉଦ୍ଭାବନ ହେବାରେ ସେସବୁ ପଛକୁ ପଡ଼ିଯାଉଛି ସତ୍ୟ, କିନ୍ତୁ ପ୍ରାଚୀନ ଅତୀତ କାଳରୁ ମୁନିଋଷିମାନେ ଚିନ୍ତା-ରାଜ୍ୟର ଶୀର୍ଷସ୍ତରରେ ପ୍ରବେଶ କରି ଯାହା ସମାଜର ମଙ୍ଗଳପାଇଁ ଲେଖି ଯାଇଅଛନ୍ତି ତାହାହିଁ ଆମ୍ଭମାନଙ୍କୁ ଭବିଷ୍ୟତର ଭୟରୁ ଓ ବର୍ତ୍ତମାନର ସନ୍ଦେହରୁ ରକ୍ଷାକରିବ ଓ ଅମର ପଥକୁ ଆଲୋକିତ କରିବ ଏବଂ ଭଗବତ୍ ସତ୍ତା ଆଡ଼କୁ ଟାଣିନେବ । ଏ ଗ୍ରନ୍ଥରେ ନାନାଦି ବିଷୟ ନାନା ଶାସ୍ତ୍ର ପୁରାଣରୁ ସଂଗ୍ରହ କରାଯାଇଅଛି । ଏହା ପାଠକମାନଙ୍କ ମନରେ କୌତୂହଳ ଉଦ୍ରେକ କରାଇ ଆନନ୍ଦ ଜାତ କରିବ ଓ ଜ୍ଞାନର ପରିସର ବଢ଼ାଇବ । ସତ୍ ଓ ସାଧୁ ମାର୍ଗରେ ଦୈନନ୍ଦିନ ଜୀବନକୁ ଆଧ୍ୟାତ୍ମିକ ପ୍ରଣାଳୀରେ ଯାପନ କରିବାରେ ସହାୟକ ହେବ ।

ମୋର ଜ୍ଞାନର ପରିସର ଓ ଶକ୍ତି ମୁତାବକ ମୁଁ ଏ ପୁସ୍ତକସ୍ଥ ବିଷୟମାନ ସଂଗ୍ରହ କରିଅଛି । ମୁଁ ଭାବେ ଯୋଗ୍ୟତର ବ୍ୟକ୍ତିଙ୍କ ହାତରେ ଏଭଳି ପୁସ୍ତକର ସଂକଳନ ହୋଇଥିଲେ ଏହା ସମାଜର ଏକ ମୂଲ୍ୟବାନ୍ ସମ୍ପଦରେ ପରିଣତ ହୋଇ ପାରିଥାନ୍ତା ।

ଏ ପୁସ୍ତକ ପ୍ରଣୟନରେ ମୁଁ କିଛି ଯୋଗ୍ୟତା ପ୍ରଦର୍ଶନ କରିନାହିଁ; ମାତ୍ର ଅପାର ଆନନ୍ଦ ଉପଲବ୍ଧ କରିଅଛି ଓ ଆଶାକରେ ପାଠକ ସାଧାରଣ ଗ୍ରନ୍ଥକାରର ଯୋଗ୍ୟତାପ୍ରତି ଦୃଷ୍ଟି-ନଦେଇ ଯେବେ ଗ୍ରନ୍ଥର ବିଷୟସୂଚୀ ପ୍ରତି ଦୃଷ୍ଟି ଦେବେ ସେମାନେ ଅପାର ଆନନ୍ଦ ଭୋଗ କରିବେ ଓ ବିଶ୍ୱର ଲୀଳାରେ ବ୍ୟାପୃତ ହୋଇ ତାହାର ଲକ୍ଷ୍ୟ ଦିଗରେ ଅଗ୍ରସର ହେବେ ।

**ନମାଇଁର ପ୍ରଣାମ**

# ଅଭିମତ

## ପଦ୍ମଶ୍ରୀ ଡକ୍ଟର ଆର୍ତ୍ତବଲ୍ଲଭ ମହାନ୍ତି, ଏମ୍. ଏ.

ଶ୍ରୀ ନିମାଇଁଚରଣ ଦାସଙ୍କ ସଂକଳିତ 'ସର୍ବପୁରାଣସାର' ନାମକ ପୁସ୍ତକ ପାଠ କରି ବିଶେଷ ପ୍ରୀତ ହେଲି । ଆଜିକାଲିକାର ଲୋକଙ୍କର ଏପରି ଗ୍ରନ୍ଥପାଠ କଲେ ନିଜର ସଂସ୍କାର ଓ ସଂସ୍କୃତି ବହୁ ପରିମାଣରେ ସଂରକ୍ଷିତ ହେବ ବୋଲି ମୋର ଧାରଣା । ପୁସ୍ତକ ସମୟୋପଯୋଗୀ ହୋଇ ସୁଖପାଠ୍ୟ ହୋଇଅଛି । **ମୋର ବିଶ୍ୱାସ ଏପରି ଗ୍ରନ୍ଥ ପାଠ କଲେ ଲୋକେ ଧର୍ମ ଓ କର୍ମ ଉଭୟତଃ କୁଶଳୀ ହେବେ ।**

---

## ଅଧ୍ୟାପକ ରତ୍ନାକର ପତି, ଏମ୍. ଏ:

ମୁଁ ଶ୍ରୀମାନ୍ ନିମାଇଁଚରଣ ଦାସଙ୍କ ଲିଖିତ 'ସର୍ବପୁରାଣ ସାର' ଗ୍ରନ୍ଥଟି ପାଠ କରିଅଛି । ଏହା ଲେଖକଙ୍କର ସାବଧାନ ପ୍ରଯତ୍ନର ପରିଚାୟକ । **ଗ୍ରନ୍ଥଟିରେ ବିଭିନ୍ନ ପୁରାଣରେ ପ୍ରଦର୍ଶିତ ପ୍ରଧାନ ପ୍ରଧାନ ଶିକ୍ଷଣୀୟ ବିଷୟଗୁଡ଼ିକର ସଂକଳନ ଦେଖିବାକୁ ମିଳେ ।** ଆଧୁନିକ ସଭ୍ୟତାର ପ୍ରଭାବରେ ପ୍ରଭାବିତ ତଥା ଚାଳିତ ବ୍ୟକ୍ତିମାନଙ୍କର କାର୍ଯ୍ୟକଳାପ ପ୍ରତି ଦୃଷ୍ଟି ରଖି ଲେଖକ ଉପଯୁକ୍ତ ଉପାଦାନଗୁଡ଼ିକ ସଂଗ୍ରହ କରିଅଛନ୍ତି । **ଏ ଦିଗରେ ସଂଗ୍ରହ ସମାଜର ବହୁସଂଖ୍ୟକ ବ୍ୟକ୍ତିଙ୍କର ମନୋ-ବୃତ୍ତିକୁ ନୈତିକତାଆଡ଼କୁ ଘେନିଯିବ, ମୋର ବିଶ୍ୱାସ ।** ଏଥିରେ ବିଭିନ୍ନ ଶ୍ରେଣୀର ବ୍ୟକ୍ତିମାନଙ୍କର ଜୀବନକୁ ପ୍ରଭାବିତ କରିବାପାଇଁ ଯଥୋପଯୁକ୍ତ ଉପାଦାନ ରହିଅଛି । ମୁଁ ଲେଖକଙ୍କର ସଯତ୍ନକୁ ପ୍ରଶଂସା ନ କରି ରହିପାରୁ ନାହିଁ ।

---

**ପଦ୍ମଶ୍ରୀ ଡକ୍ଟର ଲକ୍ଷ୍ମୀନାରାୟଣ ସାହୁ, ଏମ୍‌ ଏ:**
**ସାହିତ୍ୟଭୂଷଣ, ପ୍ରେସିଡେଣ୍ଟ, ସାହିତ୍ୟ-ଏକାଡେମି**

ସ୍ନେହର ନମାଇଁ,

ତୁମେ କେତେ ଆଦରରେ ତୁମ ନବ ଲିଖିତ ପୁସ୍ତକ "ସର୍ବପୁରାଣ ସାର"ରୁ ଠିକେ, ଠିକେ, କେତେ କଥା ଶୁଣାଇଲ। ମୁଁ ଜଣେ ପାପିଷ୍ଠ ଲୋକ, ବ୍ରହ୍ମନିଷ୍ଠ ହେବାର ମୋ ପକ୍ଷରେ ବଡ଼ କଠିନ। ତଥାପି ମାନବାତ୍ମା ସେହି ଦିଗରେ ସବୁବେଳେ ଗତି କରିବାକୁ ଆକାଂକ୍ଷିତ। ତୁମର ଏହି ବହିରେ ପୁରାଣ କଥା ଅନେକ ଦିଆ ହୋଇଛି। ଆଜ ପୂର୍ବ ନ ଥିବା କଥା ମଧ୍ୟ ଦିଆ ଯାଇଅଛି। **ବସ୍ତୁତଃ ତୁମର ଏହି ପୁସ୍ତକରେ ଗୋଟିଏ ଯୁଗ ନୁହେଁ ବହୁ ଯୁଗର ସଞ୍ଚିତ ଚିନ୍ତାକୁ ଏକତ୍ର ରଖା ଯାଇଛି।** ଅବଶ୍ୟ କାଳର ଗତିରେ କେଉଁଟା ସେବ୍ୟ ଆଜ କେଉଁଟା ସେବ୍ୟ ହେବ ନାହିଁ, ତାହା ପ୍ରତ୍ୟେକ ପାଠକ ନିଜ ନିଜର ରୁଚି ଅନୁଯାୟୀ ଓ ବିଚାର ଅନୁଯାୟୀ ଗ୍ରହଣ କରିବେ। **କିନ୍ତୁ ତୁମେ ଯେ ଏହି ପୁସ୍ତକର ପୃଷ୍ଠାମାନଙ୍କରେ ବହୁ ସଂଗୃହୀତ ରତ୍ନ ସ୍ଥାପନ କରିଅଛ, ତାହା ପାଠକ ଓ ସମାଲୋଚକ, ଭାବୁକ ଓ ଚିନ୍ତକ ସାଧୁ ଓ ସୁଧୀ ଏ ସମସ୍ତଙ୍କୁ ଆକର୍ଷଣ କରିବ।** ଆକର୍ଷଣ ପରେ ଏଥିରୁ ନିଜ ନିଜର ବିଚାର ବୁଦ୍ଧିଦ୍ୱାରା ଓ ଇଚ୍ଛା ଦ୍ୱାରା ଯେ ଯାହା ଗ୍ରହଣ କରିବ ସେଥିରେ ଆପତ୍ତି କାହିଁ ?

ତୁମେ ଯଶସ୍ୱୀ ହୁଅ। ପୁରାଣ କାଳ ପୂର୍ବର କଥା ନୁହେଁ, ପର ନ ଥିବା ମଧ୍ୟ ପୁରାଣ। ତୁମର ଏହି ସର୍ବପୁରାଣସାର ଏହାହିଁ

ସ୍ପଷ୍ଟୀକୃତ କରାଇଛନ୍ତି । ମୁଁ ଅଧିକ କଅଣ ଲେଖିବି ? ତୁମର ଏହି ଅପ୍ରତୁଳ ଚେଷ୍ଟା ପାଠକର ଅନ୍ତରକୁ ଆକର୍ଷିତ କରୁ ଏହାହିଁ ମୋର କାମନା ।

———

ପ୍ରିନ୍‌ସିପାଲ ଶ୍ରୀ ଶତ୍ରୁଘ୍ନ ନାଥ, ଏମ୍. ଏ. ( ଲଣ୍ଡନ )
ବେସିକ୍ ଟ୍ରେନିଂ କଲେଜ, ଓଡ଼ିଶା

ଶ୍ରଦ୍ଧେୟ ନିମାଇଁଚରଣ ଦାସଙ୍କର "ସର୍ବପୁରାଣସାର" ପଢ଼ିବାର ସୁଯୋଗ ପାଇଲି । **ପୁରାଣାଦି ବହୁଗ୍ରନ୍ଥର ସର୍ବସାର ସଂଗ୍ରହ ସେ ଏଥିରେ କରିଛନ୍ତି ।** ସଂକଳନ ବ୍ରତରେ ନିମାଇଁବାବୁଙ୍କ ଦୀକ୍ଷା ଓ ତାଙ୍କ ବ୍ରତର ପୁଣ୍ୟଫଳ ଆମେ ପାଇ ଧନ୍ୟହେଉଛୁଁ । ସେ ତ ଏ ବିଷୟରେ ଓଡ଼ିଶାରେ ଅଦ୍ୱିତୀୟ ଓ **ତାଙ୍କର ଏହି ଗ୍ରନ୍ଥଟି ଅଦ୍ୱିତୀୟ ଅବଦାନ । ଏ ଗ୍ରନ୍ଥ ଆମ ଦେଶର ପାଠାଗାରରେ ସର୍ବସାର ହୋଇ ରହିବ । ପାଠୁଆ, ଅପାଠୁଆ, ସହର, ଗାଁଗଣ୍ଡା ସବୁ ଶ୍ରେଣୀର ଲୋକଙ୍କପାଇ ଏ ଗ୍ରନ୍ଥରେ ପୁରାଣର ଯେଉଁ ବୈଜ୍ଞାନିକ ସଂକଳନ ରହିଛି, ତାହା ଉପଯୋଗୀ ହେବ ।** ତାଙ୍କ ଲେଖନୀ ଅମର ହେଉ, ଭଗବାନଙ୍କ ନିକଟରେ ମୋର ଏହା ହିଁ ପ୍ରାର୍ଥନା ।

—o—

ଅଧ୍ୟାପକ ଡକ୍‌ଟର ଶ୍ରୀରାମଚନ୍ଦ୍ର ଦାଶ
ଏମ୍. ଏ (ପାଟନା) ଡି. ଫିଲ୍ (ବର୍ଲିନ) ଏଲ୍.ଏଲ୍.ବି.

ଶ୍ରୀଯୁକ୍ତ ନିମାଇଁଚରଣ ଦାସଙ୍କଦ୍ୱାରା ସଂଗୃହୀତ ଓ ସଂପାଦିତ "ସର୍ବପୁରାଣସାର" ବହିଟି ପଢ଼ି କୃତାର୍ଥ ହେଲି । ଏତେବଡ଼ ଏ

ପୁରାଣ ଜଣେ କେହି ପଢ଼ି ପାରନ୍ତି ନାହିଁ; କିନ୍ତୁ ନିମାଇଁ ବାବୁଙ୍କ ବହିଟି ପଢ଼ିଲେ ସବୁ ପୁରାଣ ପଢ଼ିବାର ଉପକାରିତା ମିଳିବ । **ଏହି ବହିଟି ପ୍ରତ୍ୟେକ ବିଦ୍ୟାଳୟ ଓ ମହାବିଦ୍ୟାଳୟ ପାଠାଗାର ଏବଂ ଗ୍ରାମ୍ୟ ପାଠାଗାରମାନଙ୍କରେ ରହିଲେ ଲୋକଙ୍କର ଅଶେଷ ଉପକାର ସାଧିତ ହେବ ।**

ପୂଜନୀୟ ନିମାଇଁ ବାବୁ ଆହୁରି ଦୀର୍ଘକାଳ ବଞ୍ଚି ତତ୍‌ସଂପାଦିତ ଅନେକ ଉପାଦେୟ ସଂଗ୍ରହପରି ଅନ୍ୟାନ୍ୟ ପୁସ୍ତକ ପ୍ରକାଶ କରି ସମାଜକୁ ଉନ୍ନତ ଓ ରୁଚିମନ୍ତ କରନ୍ତୁ ।

—୦—

## ସମାଜ ପତ୍ରିକା କହନ୍ତି

ଏହି ପୁସ୍ତକରେ ପୁରାଣ ମାହାତ୍ମ୍ୟ, ଦେବ ଉପାସନା, ଭକ୍ତିର ପ୍ରକାରଭେଦ, ଜଗନ୍ନାଥ ଧର୍ମ,ଗୋ-ମାହାତ୍ମ୍ୟ, କର୍ମ ବିଧାନ, ଦାନ, ଧର୍ମ, ବିବାହ, ଆଦର୍ଶ ନାରୀର କର୍ତ୍ତବ୍ୟ, ତୀର୍ଥସ୍ଥାନର ପରିଚୟ, ସ୍ୱାସ୍ଥ୍ୟ-ନୀତି, ଖାଦ୍ୟାଖାଦ୍ୟ ଓ ଚିକିତ୍ସା ବ୍ୟବସ୍ଥା ସମ୍ବନ୍ଧରେ ଆଲୋଚନା କରାଯାଇଛି । ବହୁ ଚିନ୍ତାଶୀଳ ବ୍ୟକ୍ତିଙ୍କର ଚିନ୍ତାରୁ ଜ୍ଞାତବ୍ୟ ବିଷୟମାନ ଉଦ୍ଧାର କରାଯାଇଛି । ଉଦ୍ଧୃତିଗୁଡ଼ିକର ନିର୍ବାଚନରେ ଲେଖକଙ୍କର ଦକ୍ଷତା ପ୍ରକାଶ ପାଇଛି । **ମନୁଷ୍ୟକୁ ତାହାର ଦୈନନ୍ଦିନ ଜୀବନ-ଯାତ୍ରାପଥରେ ଆଗେଇ ନେବାରେ ଏ ପୁସ୍ତକଟି ଯଥେଷ୍ଟ ପ୍ରେରଣା ଯୋଗାଇବ ବୋଲି ଆଶା କରାଯାଏ ।**

—୦—

## ପ୍ରଜାତନ୍ତ୍ର ପତ୍ର କ'ଣ କହନ୍ତି

ବିଭିନ୍ନ ପୁରାଣ, ଇତିହାସ, କାବ୍ୟ କବିତାଆଦିରୁ ସଂଗୃହୀତ ବହୁ ତଥ୍ୟ ଓ ଜ୍ଞାତବ୍ୟ ବିଷୟର ଅବତାରଣା ଏହି ପୁସ୍ତକଟିରେ କରାଯାଇଛି । ଜାତି, ଧର୍ମ, ସ୍ୱାସ୍ଥ୍ୟ, ସଂସ୍କୃତି, ଇତିହାସ, ସୁପରୀକ୍ଷିତ ଔଷଧାବଳି ଓ **ଅନେକ ଶିକ୍ଷଣୀୟ ବିଷୟର ଅନୁଶୀଳନରେ ଏହି ପୁସ୍ତକଟି ଛାତ୍ର ତଥା ସାଧାରଣ ବ୍ୟକ୍ତିଙ୍କ ପକ୍ଷରେ ଅତି ଉପାଦେୟ ହୋଇଛି, ଏଥିରେ ସନ୍ଦେହ ନାହିଁ । ଉଦ୍ଧୃତିଗୁଡ଼ିକ ସୁନିର୍ବାଚିତ ଓ ଉପଯୋଗୀ ହୋଇଛି । ସାମାଜିକ ତଥା ବ୍ୟକ୍ତିଗତ ଜୀବନରେ ଯେ ଏହି ଅନୁରୂପ ପୁସ୍ତକ ଅପରିହାର୍ଯ୍ୟ ଏଥିରେ ସନ୍ଦେହ ନାହିଁ ।**

—×—

**ନଆଁଖୁଣ୍ଟାପତ୍ରିକାର ସମ୍ପାଦକ ଶ୍ରୀ ଗୋଦାବରୀଶ ମହାପାତ୍ର କହନ୍ତି –**

ଆମ ସାହିତ୍ୟରେ ପୁରାଣ ସମୁଦ୍ରପରି ବିରାଟ ଓ ମହାନ୍ । ଏହି ବିରାଟ ସମୁଦ୍ର ଭିତରୁ ରତ୍ନ ଆହରଣ କରିବା ଆଜକାଲି ଏ କର୍ମମୟ ଯୁଗରେ ବହୁ ସମୟ ସାପେକ୍ଷ । ଅଥଚ ଭାରତୀୟ ଅଭିମୁଖ୍ୟ ଦୃଷ୍ଟିରୁ ଅନେକ ଇଚ୍ଛା କରନ୍ତି ପୁରାଣଗତ ବିଷୟ ଜାଣିବାପାଇଁ । ଓଡ଼ିଆ ସାହିତ୍ୟରେ ସ୍ୱନାମଧନ୍ୟ ସଂଗ୍ରାହକ ଶ୍ରଦ୍ଧେୟ ନିମାଇଁବାବୁ ଏହି ଯେଉଁ 'ସର୍ବପୁରାଣ ସାର' ପୁସ୍ତକଟି ପ୍ରକାଶ କରିଛନ୍ତି, ପୁରାଣଗତ ତତ୍ତ୍ୱ, ଆଦର୍ଶ ମତବାଦ ଆଦି

ଜାଣିବାପାଇଁ ଅଗ୍ରହୀ ପାଠକଙ୍କୁ ତାହା ଯେ ସାହାଯ୍ୟ କରିବ ଏଥିରେ କିଛି ସନ୍ଦେହ ନାହିଁ । ସବୁ ପୁରାଣକୁ ମିଶାଇ ଏ ଏକ ସ୍ୱତନ୍ତ୍ର ପୁରାଣପରି ହୋଇଛି । ଏଥିରେ ଜପ, ତପ, ସାଧୁସଙ୍ଗ କଥାଠୁଁ ଆରମ୍ଭ କରି ଯମ-ଯନ୍ତ୍ରଣା ପର୍ଯ୍ୟନ୍ତ ସକଳ କଥା ସଂଗ୍ରହ କରାଯାଇଛି । ସବୁଶ୍ରେଣୀର ପାଠକ ଏଥିରୁ ଜ୍ଞାନ ଅର୍ଜ୍ଜନ କରି ପାରିବେ । ଏହାର ବହୁଳ ପ୍ରସାର ମୁଁ କାମନା କରୁଛି ।

---

## ମାତୃଭୂମି ପତ୍ରିକା କହନ୍ତି

'ସର୍ବପୁରାଣସାର' ପୁସ୍ତକଟି ଶାସ୍ତ୍ର ଓ ପୁରାଣ ବର୍ଣ୍ଣିତ ନାନା ବିଷୟର ଏକତ୍ର ସଂକଳନରୂପେ ପ୍ରକାଶ ପାଇଛି । ଏ ଧରଣର ପୁସ୍ତକ ଓଡ଼ିଶାରେ ଏହା ହିଁ ପ୍ରଥମ । ଏହାର ପରିସର ଏତେ ବୃହତ୍ ଯେ ନାନାବିଷୟରେ ଜିଜ୍ଞାସୁ ଲୋକଙ୍କ କୌତୂହଳ ମେଣ୍ଟାଇବାକୁ ଏହା ସକ୍ଷମ । ଏହାର ଉପଯୋଗିତା ମଧ୍ୟ ଅନସ୍ୱୀକାର୍ଯ୍ୟ ।

---

# ବିଷୟ ସୂଚୀ

---

# ସର୍ବ ପୁରାଣ ସାର

## ପୁରାଣ ମାହାତ୍ମ୍ୟ

ପୁରାଣ ପଠନେ  କିସ ଫଳ ହୁଏ  [illegible] କି ଜାଣିଛି ଭାଇ
ପୁରାଣରେ ଯେଉଁ  ନିର୍ଦ୍ଦେଶ ଅଛି  ଦେଖିଛ କି ଅଉ କାହିଁ ?
ମୁକ୍ତି ପଥର  ଆଲୋକ ଦେଖାଏ  ତାହାର ତତ୍ତ୍ୱ ବାଣୀ
ଭ୍ରାନ୍ତ ପଥରୁ  ମାନବକୁ ସେହି  ଅଣିପାରେ ଏକା ଟାଣି ।

ଆଜି ଯେତେବେଳେ ସର୍ବିଯ୍ୟ ଭୁଲେ  ଆପଣା ଧର୍ମ ନୀତି
ଆଜି ଯେତେବେଳେ ହୀନ କର୍ମରେ  ମଣିଷ ଉଠଇ ମାତି ।
ଆଜି ଯେତେବେଳେ ନୟନେ ଆମର  ହିଂସା-ଫଳକ ଝୁଲେ
ପୁରାଣ ପଠନେ  ହୃଦୟ ସେ ବେଳେ ନବ ଉଦ୍‌ବେଗେ ଫୁଲେ ।

ଅପୂର୍ଣ୍ଣ ଏଇ  ମଣିଷ ଜୀବନ  ପୁରାଣ ପଠନ ବିନା
ହୃଦ-ମନ୍ଦିରେ  ଝଙ୍କାରେ ସିଏ  ପ୍ରୀତି-ମମତାର ବୀଣା ।
ରୋଗ ଶୋକ ଦୁଃଖ ପାପ ତାପ ଆଦ  ଅପସରି ଯାଏ କାହିଁ
ଦୁରଗ୍ରହ ପୀଡ଼ା  ଭୂତ ପ୍ରେତ ଭୟ  କେହି ରହନ୍ତି ନାହିଁ ।

କର୍ମ-ମୁଖର  ଧରଣୀର ଏହି  ପିଚ୍ଛିଳ ପଥ ପରେ
ଆମ ହିତ ପାଇଁ  ବନ୍ଧୁ ପରାୟେ  ପଛୁ ସେହି ଟାଣିଧରେ ।
ଜୀବନ ଯାତ୍ରା-  ପଥର ମାପକ  ପୁରାଣ ପୃଷ୍ଠା ସିନା
ଜୀବନ ଯାତ୍ରା  ରଥର ବାହକ  ତା'ର ନିର୍ଦ୍ଦେଶ-ନାମା ।

ବିରାଟ ତାହାର ଗର୍ଭ ଭିତରେ ତଥ୍ୟ ଯା' ଅଛି ରହି
ରୋଗଗ୍ରସ୍ତ ଏ ମଣିଷ ସମାଜେ ପଥ୍ୟ ସେ ଦେବ କହି ।
ପଞ୍ଜରା-ଥରା ସଞ୍ଜ ବେଳରେ ମିଳେ ପୁରାଣରୁ ତାପ,
ବହ୍ନି-ବରଷୀ ପ୍ରବଳ-ଗ୍ରୀଷ୍ମେ ମିଳଇ ଶୀତଳ ଲେପ ।

ମେଘ-ମେଦୁରିତ ଦିବସର ଭାଗେ ମିଳଇ ମଳୟାଭାସ
ଅପସରିଯାଏ ନିରାଶା-କୁହେଳି ମିଳେ ଆଶା ଆଶ୍ୱାସ ।
ମଣିଷର ଆଗେ ପୁରାଣରେ ବାଣୀ ମୁକ୍ତ ତୋରଣ ସିନା
ବକ୍ଷର ତା'ର ପ୍ରତି ଅକ୍ଷର ଆଶାର ଶିଶିର-କଣା ।

ବିଜ୍ଞାନ ଯାହା ପ୍ରମାଣଇ ଏବେ ରହିଛି ପୁରାଣେ ତାହା
ଗିଆନ ନୟନେ ଠିକ୍ ଲକ୍ଷି କର ଭିତରକୁ ତା'ର ଗୃହାଁ ।
ଅମୂଲ୍ୟ ସେହି ଉପଦେଶ ଭୁଲି ହେଗୁଁ ଆଜି ନାନା ଦୁଃଖ
ସବୁ ପୂରି ଥାଉଁ ପୂର୍ବରେ ପୁରେ ଆଜି ବିରସ ସବୁରି ମୁଖ ।

ଶାନ୍ତ ମୁକତି ପ୍ରଗତିର ପଥେ ଆଗେଇବ ଯେବେ ଭାଇ
ପୁରାଣ ବିହୁନେ ସଫଳ କୃତ୍ୟ କେବେହି ହୋଇବ ନାହିଁ ।
ବିଶ୍ୱର ଆଜି ଘନଘଟା ବେଳେ ପୁରାଣ ହୋଇବ ସାହା
କୋଟି କଣ୍ଠରେ ଭାରତ ଜନନୀ ପୁରାଣର ଗୀତ ଗାଆ ।

---

# ପୁରାଣ ପଠନର ଫଳ

ପଚ୍ଛରନ୍ତି ତପସ୍ୱୀ ଭକ୍ତି ନମ୍ରଶତେ ।
କହ କହ ବ୍ୟାସସୁତ ଆମ୍ଭର ଅଗ୍ରତେ ।।
ଦାନଫଳ ଭବେ ଅଛି ଦେବେ ଅଗୋଚର ।
ଦାନ କଲେ ପ୍ରାପ୍ତ ହୁଏ ଧର୍ମ ମୋକ୍ଷ ଫଳ ।।
ମାତ୍ର କଳିଯୁଗେ ଲୋକେ ହୋଇବେ ନିର୍ଦ୍ଧନ ।
ଦାନ ଦେବାପାଇଁ କାହିଁ ନ ପାଇବେ ଧନ ।।
କିପରି ମୁକତ ହେବେ କହ ସେହି ବାଣୀ ।
ଶୁଣିଲେ ସନ୍ଦେହ ମନୁଁ ଯିବ ଅଟେ ଜ୍ଞାନୀ ।।
ଋଷିଙ୍କ ବଚନେ କହୁଛନ୍ତି ବ୍ୟାସସୁତ ।
ସେକଥା କହିବା ଏବେ ଶୁଣ ଋଷିବ୍ରାତ ।।
ପୁରାଣ ଅଟଇ କଳିଯୁଗେ ଶ୍ରେଷ୍ଠ ଧର୍ମ
ମହାଯୋଗୀ କରେ ସଦା ପୁରାଣ ପଠନ ।।
ପୁରାଣ ପଢ଼ିଲେ ମିଳିଥାଏ ସର୍ବଫଳ ।
ଦାନ ଯଜ୍ଞ ଯାଗ ତୀର୍ଥ ବ୍ରତାଦି ସକଳ ।।
ଯେତେ ପୁଣ୍ୟଫଳ କାଳେ କରନ୍ତି ପ୍ରଦାନ ।
ପୁରାଣ ଦିଅଇ ଏକା ଜାଣ ସେହି ମାନ ।।
ବିଷ୍ଣୁଙ୍କ ଆଳୟେ କିମ୍ବା ଶିବଙ୍କର ଅଟେ ।
ବ୍ରହ୍ମାଙ୍କ ମନ୍ଦିରେ ଅବା ଦେବତା ଦେଉଳେ ।।
ପୁରାଣ ପଢ଼ଇ ଯେହୁ ଭକ୍ତି ନମ୍ର ଶତେ ।
ସବୁ ଫଳପ୍ରାପ୍ତ ସେହୁ ହୁଅଇ ନିଶ୍ଚିନ୍ତେ ।।
ପୁରାଣ ପୁସ୍ତକମାନ ସଙ୍କଳପ କରି ।
ଦେବତା ମନ୍ଦିରେ ପଢ଼େ ଯେହୁ ପୋଥି ଧରି ।।

ତାହାର ହୁଅଇ ପୁଣ୍ୟ ପୂର୍ଣ୍ଣ ମନସ୍କାମ ।
ଦେହରୁ କଲୁଷରାଶି ହୁଅଇ ଦହନ ॥
ଦାନ ଆଦ ଧର୍ମକଲେ ନୁହେଁ ଯେତେ ପୁଣ୍ୟ ।
ସେତେ ପୁଣ୍ୟ ଦେଇଥାଏ ପୁରାଣ ପଠନ ॥
ଗ୍ରାମ ଅନ୍ତେ ଅବା ମଧ୍ୟେ କି ପଥ କାଗାରେ ।
ତୁଳସୀ ଚଉରା ମୂଳେ କବା ଶିବଆଳେ ॥
ପଢ଼ିଲେ ପୁରାଣମାନ ହୁଏ ଦିବ୍ୟଜ୍ଞାନ ।
କୋଟି ଅଶ୍ୱମେଧ ଫଳ ମିଳଇ ବହନ ॥
ନଦୀତଟରେ ଜଳଘାଟେ ପଢ଼େ ଯେ ପୁରାଣ ।
ସେ ଠାବରେ ବସି ଶୁଣୁଥାନ୍ତି ଯେବା ଜନ ॥
ଶ୍ରୋତା ବକତା ଯେ ଦୁହେଁ ଧନ୍ୟ ଏ ମହୀରେ ।
ପୁରାଣ ପଢ଼ିବ ଯେବେ ସଞ୍ଜ ସକାଳରେ ॥
ତେବେ ବହୁ ପୁଣ୍ୟଫଳ ହୋଇବ ତ ପ୍ରାପ୍ତ ।
ବେଦର ବଚନ ଏହା ନୁହଇ ଅସତ୍ୟ ॥
ଦେବୀ ଅଳେ ବସି ଯେହୁ ପୁରାଣ ପଢ଼ଇ ।
ଧନ ଜନ ଯଶ ମାନ ପାଇଥାଏ ସେହି ॥
ଲକ୍ଷ୍ମୀଙ୍କ ମନ୍ଦିରେ ପାଠ କଲେ ଧନ ମିଳେ ।
ବିଦ୍ୟା ବୁଦ୍ଧି ପ୍ରାପ୍ତ ହୁଏ ସରସ୍ୱତୀ ଅଳେ ॥
ପାର୍ବତୀଙ୍କ ଅଳେ ପାଠ କରିଲେ ପୁରାଣ ।
ମନର କାମନା ସର୍ବ ହୁଅଇ ପୂରଣ ॥

—ଶିବ ପୁରାଣ—



# ଅଷ୍ଟାଦଶ ପୁରାଣ

ଅଷ୍ଟାଦଶ ପୁରାଣ ଯେ ପଚ୍ଛରିଲୁ ମୋତେ ।
ପଦେ ପଦେ କହଣ ଯେ କହ୍ନଦେବା ତୋତେ ॥
ପ୍ରଥମେ ହୋଇଲା ବ୍ରହ୍ମ ପୁରାଣ ଉକତ ।
ପଦ୍ମ ନାମେ ପୁରାଣ ତହୁଁର ପଛେ ପାର୍ଥ ॥
ତହୁଁ ଅନ୍ତେ ବିଷ୍ଣୁ ନାମେ ପୁରାଣ ହୋଇଲା ।
ଶିବ ପୁରାଣକୁ ତହୁଁ ପଛରେ ଲେଖିଲା ॥
ତଦନ୍ତରେ ଲେଖିଲେ ପୁରାଣ ଭାଗବତ ।
ନାରଦ ପୁରାଣ ତହୁଁ ପଛରେ ଉକତ ॥
ବାୟବ୍ୟ ପୁରାଣ ତା'ର ନିକଟରେ ଯୋଖି ।
ମାରକଣ୍ଡ ପୁରାଣ ତହୁଁର ପଛେ ଲେଖି ॥
ଅଗ୍ନି ନାମେ ପୁରାଣ ଯେ ତଦନ୍ତରେ ଜାତ ।
ଭବିଷ୍ୟପୁରାଣ ତହୁଁ ନିକଟରେ ପାର୍ଥ ॥
ବାମନପୁରାଣ ଯେ ନିବାହ କଲେ ମୁଖେ ।
ଲିଙ୍ଗନାମେ ପୁରାଣ ଲେଖିଲେ ତା'ର ପାଖେ ॥
ବରାହ ପୁରାଣ ପାଖେ ଅସ୍କନ୍ଦ ପୁରାଣ ।
ତହୁଁ ପଛେ ଲେଖିଲେ ଯେ ବାମନ ପୁରାଣ ॥
କୁରୁମପୁରାଣ ତା'ର ନିକଟରେ କଲେ ।
ମତ୍ସ୍ୟପୁରାଣକୁ ତହୁଁ ପଛରେ ଲେଖିଲେ ॥

ଗରୁଡ଼ପୁରାଣ ଛନ୍ଦ ସନ୍ଧିରେ ଜାଣ ।
ସବୁ ପଛେ ଲେଖିଲେ ଯେ ବ୍ରହ୍ମାଣ୍ଡ ପୁରାଣ ॥
ଅଷ୍ଟାଦଶ ପୁରାଣ ଯେ ପଚାରିଲୁ ମୋତେ ।
ଆଦ୍ୟଅନ୍ତ କରି ପାର୍ଥ କହିଦେଲୁଁ ତୋତେ ॥

---

## ଶାସ୍ତ୍ର ଶବ୍ଦର ଅର୍ଥ

ଶାସ୍ତ୍ରଶବ୍ଦର ଅର୍ଥ ହେଉଛି ଉପଦେଶ । ସାତ୍ତ୍ୱିକ, ରାଜସିକ ଓ ତାମସିକ ଭେଦରେ ଉପଦେଶ ଗ୍ରହଣକାରୀ ଲୋକମାନେ ତିନି ପ୍ରକାର ଥିବାରୁ ଉପଦେଶାତ୍ମକ ଶାସ୍ତ୍ର ମଧ୍ୟ ତିନିପ୍ରକାର ଅଛି । ଅମର ଅଦମ ଶାସ୍ତ୍ର ବେଦ ତିନିପ୍ରକାର ଅଟେ । ଏଣୁ ବେଦର ବ୍ୟାଖ୍ୟାରୂପ ପୁରାଣ ମଧ୍ୟ ତିନିପ୍ରକାର ଅଟେ । ବିଷ୍ଣୁ ପୁରାଣ, ନାରଦ ପୁରାଣ, ଭାଗବତ ପୁରାଣ ଗରୁଡ଼ ପୁରାଣ, ପଦ୍ମ ପୁରାଣ ଓ ବରାହ ପୁରାଣ ସାତ୍ତ୍ୱିକ ।

ବ୍ରହ୍ମାଣ୍ଡ ପୁରାଣ, ବ୍ରହ୍ମବୈବର୍ତ୍ତ ପୁରାଣ, ମାର୍କଣ୍ଡେୟ ପୁରାଣ, ଭବିଷ୍ୟ ପୁରାଣ, ବାମନ ପୁରାଣ, ଓ ବ୍ରହ୍ମ ପୁରାଣ ରାଜସିକ ।

ମତ୍ସ୍ୟ ପୁରାଣ, କୂର୍ମ ପୁରାଣ, ଲିଙ୍ଗ ପୁରାଣ, ଶିବ ପୁରାଣ, ସ୍କନ୍ଦ ପୁରାଣ ଏବଂ ଅଗ୍ନି ପୁରାଣ ତାମସିକ ।

ଏହିପ୍ରକାର ମୁନିମାନଙ୍କ ବିରଚିତ ସଂହିତା ମଧ୍ୟ ତିନିପ୍ରକାର ଅଟେ । ବଶିଷ୍ଠ, ହାରିତ, ବ୍ୟାସ, ପରାଶର, ଭରଦ୍ୱାଜ ଓ କାଶ୍ୟପ ସଂହିତା ସାତ୍ତ୍ୱିକ ।

ଯାଜ୍ଞବଲ୍କ୍ୟ, ଅତ୍ରେୟ, ତୈତ୍ତିର, ଦକ୍ଷ, କାତ୍ୟାୟନ, ଓ ବୈଷ୍ଣବ ସଂହିତା ରାଜସିକ ।

ଗୌତ୍ତମ, ବାର୍ହସ୍ପତ୍ୟ, ଶାବର୍ତ୍ତି, ଯମ, ଶଙ୍ଖ୍ୟ ଓ ଔସନ ସଂହିତା ତାମସିକ ।

ସାତ୍ତ୍ୱିକ ଶାସ୍ତ୍ରର ଉପଦେଶ ଅନୁସାରେ ଚଳିଲେ ମୁକ୍ତି ମିଳେ । ରାଜସିକ ଶାସ୍ତ୍ରର ଉପଦେଶ ଅନୁସାରେ ଚଳିଲେ ସ୍ୱର୍ଗ ଓ ତାମସିକ ଶାସ୍ତ୍ର ଅନୁସାରେ ଚଳିଲେ ଲୋକ ନରକପ୍ରାପ୍ତ ହୁଏ ।

ଏହିସବୁ କାରଣରୁ ଏହି ଶ୍ରୀମଦ୍ ଭାଗବତ କେବଳ ପୁରାଣ ନୁହେଁ, ଏହା ମହାପୁରାଣ । ଏହା କେବଳ ସାତ୍ତ୍ୱିକ ପୁରାଣ ନୁହେଁ, ଏହା ବିଶୁଦ୍ଧ ସାତ୍ତ୍ୱିକ ପୁରାଣ । ସୁତରାଂ ଯେଉଁମାନେ ମୁକ୍ତିକାମୀ ସେମାନେ ଉପରୋକ୍ତ ସାତ୍ତ୍ୱିକ ପୁରାଣମାନ ଶ୍ରଦ୍ଧା-ସହକାରେ ପଢ଼ିପାରନ୍ତି, ମାତ୍ର ଯେଉଁମାନେ ବିଶୁଦ୍ଧ ଭକ୍ତିରୂପ ଭାଗବତ-ଧର୍ମବାସୀ ସେମାନେ ଏହି ଶ୍ରୀମଦ୍ଭାଗବତକୁ ହିଁ ଅଧିକ ଶ୍ରଦ୍ଧା କରି ଅଧିକଭାବରେ ପ୍ରତ୍ୟହ ପାଠ କରିବେ ।

ପରମଶାସ୍ତ୍ର ଭାଗବତ, ଅଭ୍ୟାସ କରୁଥିବ ନିତ୍ୟ ।
ଅନ୍ୟଶାସ୍ତ୍ରର ଗୁଣଦୋଷ, ମୁଖେ ନ କର ପ୍ରକାଶ ।

---

## ରାମାୟଣ

ରାମାୟଣ—ବାଲ୍ମୀକି ରଚିତ ରାମଚନ୍ଦ୍ରଙ୍କର ଜୀବନୀ । ରାମାୟଣ ସପ୍ତକାଣ୍ଡରେ ବିଭକ୍ତ । ଏଥିରେ ଚବିଶ ହଜାରରୁ ଅଧିକ ଶ୍ଳୋକ ଅଛି । ଏହି ସପ୍ତକାଣ୍ଡର ନାମ—ଆଦି ବା ବାଲଖଣ୍ଡ, ରାମଙ୍କର ବାଲ୍ୟକାଳ ।

ଅଯୋଧ୍ୟାକାଣ୍ଡ—ଅଯୋଧ୍ୟାର ଘଟଣାବଳୀ, ଦଶରଥଙ୍କ କର୍ତ୍ତୃକ ରାମଙ୍କର ନିର୍ବାସନ ।

ଅରଣ୍ୟକାଣ୍ଡ—ରାମଙ୍କର ଅରଣ୍ୟ ଜୀବନ ଓ ସୀତାହରଣ ।

କିଷ୍କିନ୍ଧାକାଣ୍ଡ—କିଷ୍କିନ୍ଧାରେ ରାମଙ୍କର ବାସ ଏବଂ ସୁଗ୍ରୀବଙ୍କ ସହିତ ବନ୍ଧୁତ୍ୱ ।

ସୁନ୍ଦରାକାଣ୍ଡ—ରାମଙ୍କର ଲଙ୍କାଯାତ୍ରା ଓ ଲଙ୍କାରେ ଉପସ୍ଥିତି ।

ଲଙ୍କାକାଣ୍ଡ ବା ଯୁଦ୍ଧକାଣ୍ଡ—ରାବଣଙ୍କ ସହିତ ରାମଙ୍କର ଯୁଦ୍ଧ, ରାବଣର ପଳାୟନ ଓ ମୃତ୍ୟୁ—ସୀତାଙ୍କୁ ଉଦ୍ଧାର କରି ଅଯୋଧ୍ୟାକୁ ପ୍ରତ୍ୟାବର୍ତ୍ତନ ଏବଂ ରାମଙ୍କର ରାଜ୍ୟାଭିଷେକ ।

ଉତ୍ତର କାଣ୍ଡ—ଅଯୋଧ୍ୟାରେ ରାମଙ୍କର ରାଜ୍ୟ ଶାସନ, ସୀତାଙ୍କର ବନବାସ, ଲବକୁଶଙ୍କର ଜନ୍ମ, ସୀତାଙ୍କର ନିର୍ଦ୍ଦୋଷିତାର ପ୍ରମାଣ, ପୁନର୍ମିଳନ ଓ ମୃତ୍ୟୁ ।

## ରାମାୟଣ

ବାଲ୍ମୀକିଙ୍କ ରାମାୟଣ ଭାରତର ସର୍ବ ପ୍ରଧାନଗ୍ରନ୍ଥ । ରାମାୟଣରେ ଜନକନନ୍ଦିନୀ ରାମହୃଦୟ-ଜ୍ୟୋତ୍ସ୍ନାରୂପିଣୀ ସୀତାଙ୍କର ହୃଦୟହାରୀ ପବିତ୍ର ଚରିତ୍ର ଯେପରି ଚିତ୍ରିତ ହୋଇଅଛି, ସେହିପରି ସତୀନାରୀର ଚିତ୍ର ଅନ୍ୟ କୌଣସି ଦେଶର ସାହିତ୍ୟରେ ନାହିଁ । ସୀତା ଏକାନ୍ତ ପତିପ୍ରାଣା ଓ ସରଳ ହୃଦୟା ଥିଲେ । ସୀତା ରାଜନନ୍ଦିନୀ ଏବଂ ରାଜ ମହିଷୀ ଥିଲେ । ତଥାପି ସେ କଦାପି ଐଶ୍ୱର୍ଯ୍ୟ ପ୍ରାର୍ଥନା କରି ନ ଥିଲେ, ବରଂ ସ୍ୱାମୀଙ୍କ ସୁଖରେ ସୁଖୀ ଏବଂ ସ୍ୱାମୀଙ୍କ ଦୁଃଖରେ ଦୁଃଖୀ ହେବା ତାହାଙ୍କର ଏକମାତ୍ର କର୍ତ୍ତବ୍ୟ ଜାଣି ସମସ୍ତ କଷ୍ଟକୁ ତୁଚ୍ଛ ମଣି, ରାମଚନ୍ଦ୍ରଙ୍କ ସଙ୍ଗରେ ଘୋର ଅରଣ୍ୟ ମଧ୍ୟରେ ପରିଭ୍ରମଣ କରିଥିଲେ ।

ସୀତା ଏପରି ପ୍ରଗାଢ଼ଭାବରେ ପତିଙ୍କୁ ଭକ୍ତି କରୁଥିଲେ ଯେ ସେ ରାମଚନ୍ଦ୍ରଙ୍କ କର୍ତ୍ତୃକ ଅକାରଣରେ ନିର୍ଦ୍ଦୟରୂପେ ନିର୍ବାସିତ ହୋଇ ସୁଦ୍ଧା ମୁହୂର୍ତ୍ତିକପାଇଁ ପତି ନିନ୍ଦା କରି ନଥିଲେ ।

ସୀତାଙ୍କର ପାତିବ୍ରତ୍ୟ, ତାଙ୍କର ଦୁଃଖ ଏବଂ ପବିତ୍ର ବିଷୟ ସ୍ମୃତିପଥାରୂଢ଼ ହେଲେ କାହାର ହୃଦୟ ବିଗଳିତ ନ ହୁଏ ? କେଉଁ ହୃଦୟବାନ୍ ବ୍ୟକ୍ତି ତାଙ୍କ ଚରିତ୍ର ଶ୍ରବଣ କରି ଅଶ୍ରୁ ବିସର୍ଜନ ନକରି ରହିପାରିବ ? ରାମରାଜ୍ୟ ଥିଲା ଆଦର୍ଶ ରାଜ୍ୟ ।

**ଆମ ସାହିତ୍ୟରେ ରାମାୟଣର ପ୍ରଭାବ :—**
ରାମାୟଣରୁ କାଳିଦାସଙ୍କର 'ରଘୁବଂଶ' ତୁଳସୀଦାସଙ୍କର 'ରାମଚରିତ ମାନସ' ବଳରାମ ଦାସଙ୍କ 'ରାମାୟଣ' ଉପେନ୍ଦ୍ରଭଞ୍ଜଙ୍କ 'ବୈଦେହୀଶ ବିଳାସ' ; ଗଙ୍ଗାଧର ମେହେରଙ୍କ 'ତପସ୍ୱିନୀ' ଓ ବିଶ୍ୱନାଥ ଖୁଣ୍ଟିଆଙ୍କ 'ପଦ୍ୟାବଳୀ' ପ୍ରଭୃତି ଅସଂଖ୍ୟ କାବ୍ୟ-କବିତାର ସୃଷ୍ଟି । ତାମିଲ ଭାଷାରେ କବିକମ୍ବନଙ୍କ ରଚିତ ରାମାୟଣ ଆଜି ସେ ରାଜ୍ୟରେ ଘରେ ଘରେ ପରିଚିତ ଓ ଆଦୃତ ।

ଆମ ସାହିତ୍ୟ ଛଡ଼ା କଳା, ଶିଳ୍ପ ଓ ସ୍ଥାପତ୍ୟରେ ରାମାୟଣ ଶକ୍ତିଶାଳୀ ପ୍ରଭାବ ପକାଇ ପାରିଛି । ଅଧ୍ୟାତ୍ମ୍ୟବାଦର ଦେଶ ଭାରତ-ବର୍ଷରେ ରାମାୟଣର ପ୍ରଭାବ ଚିରଦିନପାଇଁ ରହିବ । ରାମନାମ ଆମ ହୃଦୟକୁ ସ୍ପର୍ଶକରେ, ବିଭ୍ରାନ୍ତିରୁ ମୁକ୍ତକରେ—ଏହା ଲକ୍ଷ ଲକ୍ଷ ଲୋକଙ୍କର ଦୃଢ଼ ବିଶ୍ୱାସ ଉପରେ ପ୍ରତିଷ୍ଠିତ ।

ମହାତ୍ମା ଗାନ୍ଧୀ କହନ୍ତି "ତୁଳସୀଦାସଙ୍କ ରାମାୟଣ ଭକ୍ତି ମାର୍ଗର ସର୍ବୋତ୍ତମ ଗ୍ରନ୍ଥ ଅଟେ । "ରାମଚରିତମାନସ" ଚିନ୍ତା ଓ ବିଚାର ସ୍ୱରୂପ ରତ୍ନର ଏକ ବୃହତ୍ ଭଣ୍ଡାର । "ରାମଚରିତମାନସରୁ" ଲକ୍ଷ ଲକ୍ଷ ଲୋକ ଶକ୍ତି ଆହରଣ କରନ୍ତି ।

ମୋଟ ଉପରେ ସୀତାଙ୍କର ଅସାମାନ୍ୟ ପାତିବ୍ରତ୍ୟ, ଭରତ ଏବଂ ଲକ୍ଷ୍ମଣଙ୍କର ଅସାଧାରଣ ଭ୍ରାତୃପ୍ରେମ, ଦଶରଥ ଏବଂ କୌଶଲ୍ୟାଙ୍କର ଅପତ୍ୟ ବାତ୍ସଲ୍ୟ, ରାମଙ୍କର ପିତୃଭକ୍ତି, ଉଦାରତା ଏବଂ ସତ୍ୟନିଷ୍ଠା, ହନୁମାନଙ୍କ ପ୍ରଭୁଭକ୍ତି, ସୁଗ୍ରୀବଙ୍କର ମିତ୍ରତା, ପ୍ରଜାମାନଙ୍କର ଅଗାଧ ସ୍ନେହ ଏ ସମସ୍ତ ପୃଥିବୀରେ ଚିରକାଳପାଇଁ ଆଦର୍ଶ ହୋଇ ରହି ଜନସମାଜ ସମକ୍ଷରେ ସଭ୍ୟତା, ସଂସ୍କୃତି ଓ ପ୍ରଗତିପାଇଁ ପଥ ପ୍ରଦର୍ଶନ କରିବ ।

———

# ମହାଭାରତ

ମହାଭାରତ କୃଷ୍ଣ ଦ୍ୱୈପାୟନ-ଦେବବ୍ୟାସକୃତ ମହାକାବ୍ୟ । ମହାଭାରତରେ ବେଦର ନିଗୂଢ଼ତତ୍ତ୍ୱ, ବେଦବେଦାଙ୍ଗ ଓ ଉପନିଷଦର ବ୍ୟାଖ୍ୟା, ଇତିହାସ ଓ ପୁରାଣର ପ୍ରକାଶ, ବର୍ତ୍ତମାନ, ଭୂତ, ଭବିଷ୍ୟତ, ଏହି ତିନିକାଳର ନିରୂପଣ; ଜରା, ମୃତ୍ୟୁ, ଭୟ, ବ୍ୟାଧି, ଭାବ ଓ ଅଭାବର ନିର୍ଣ୍ଣୟ; ବିବିଧ ଧର୍ମର ଓ ବିବିଧ ଆଶ୍ରମର ଲକ୍ଷଣ; ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ, ଶୂଦ୍ର—ଏହି ଚତୁର୍ବର୍ଗର ନାନା ପୁରାଣୋକ୍ତ ଆଚାର ବିଧି, ତପସ୍ୟା, ବ୍ରହ୍ମଚର୍ଯ୍ୟ, ପୃଥିବୀ, ଚନ୍ଦ୍ର, ସୂର୍ଯ୍ୟ, ଗ୍ରହ, ନକ୍ଷତ୍ର, ତାରା ଓ ଯୁଗ ପ୍ରମାଣ; ଋଗ୍‌ବେଦ, ଯଜୁର୍ବେଦ, ସାମବେଦ, ଆତ୍ମତତ୍ତ୍ୱ ନିରୂପଣ ନ୍ୟାୟ-ଶିକ୍ଷା, ଚିକିତ୍ସା; ଦାନଧର୍ମ, ପାଶୁପତଧର୍ମ ଏବଂ ଯେ ଯେଉଁ କାରଣରୁ ଦିବ୍ୟ ବା ମାନବ ଯୋନିରେ ଜନ୍ମ ଗ୍ରହଣ କରିଅଛନ୍ତି ତା'ର ବିବରଣୀ, ପବିତ୍ର ତୀର୍ଥ, ଦେଶ, ନଦୀ, ପର୍ବତ, ବନ, ସମୁଦ୍ର, ଦିବ୍ୟପୁରୀ, ଦୁର୍ଗ, ସେନାର ବ୍ୟୂହ ରଚନାଦି କୌଶଳ ଏହି ମହାଭାରତ ପଞ୍ଚମ ବେଦ ନାମରେ ପ୍ରସିଦ୍ଧ । ମହାଭାରତ ଅଷ୍ଟାଦଶ ପର୍ବରେ ସମାପ୍ତ । ପୁଣି ଏହି ଅଷ୍ଟାଦଶ ପର୍ବର ମଧ୍ୟରେ ଏକଶତ ପର୍ବାଧ୍ୟାୟ ଅଛି । ମହାଭାରତରେ ଏକଲକ୍ଷ ଶ୍ଳୋକ ଅଛି । ପୃଥିବୀ ମଧ୍ୟରେ ମହାଭାରତ ସର୍ବାପେକ୍ଷା ବୃହତ୍ ମହାକାବ୍ୟ ।

ଯେତେବେଳେ ଆର୍ଯ୍ୟମାନେ ଭାରତକୁ ଆସି ବିଭିନ୍ନ ଅଂଶରେ ବସତି ସ୍ଥାପନ କରି ସାରିବାପରେ ଏକ ମହାଭାରତୀୟ

ଜାତିରୂପେ ନିଜ ସଂଗଠନକୁ ଦୃଢ଼ୀଭୂତ କରୁଥିଲେ ସେହି ସମୟର ଘଟଣାବଳୀକୁ ମୂଳ କରି ମହାଭାରତ ରଚିତ ହୋଇଥିଲା । ପଣ୍ଡିତ ଜବାହରଲାଲ ନେହେରୁ ମହାଭାରତ ସମ୍ବନ୍ଧରେ ତାଙ୍କ ରଚିତ "ଭାରତର ଆବିଷ୍କାର" ନାମକ ପୁସ୍ତକରେ ଲେଖିଅଛନ୍ତି ଯେ "ପୃଥିବୀରେ ଆଜି ପର୍ଯ୍ୟନ୍ତ ଏତେ ବଡ଼ ବିରାଟ ପୁସ୍ତକ ରଚିତ ହୋଇ ନାହିଁ । ପରମ୍ପରାରୁ ଗଢ଼ି ଆସୁଥିବା ଧର୍ମ ଭାବ, କାହାଣୀ ଓ ପୂର୍ବ କାଳର ରାଜନୈତିକ, ସାମାଜିକ ଅନୁଷ୍ଠାନମାନଙ୍କର କ୍ରମବିକାଶ ଏଥିରେ ଲିପିବଦ୍ଧ ଅଛି ।" ଏହି ସମୟରେ ବୈଦେଶିକମାନେ ମଧ୍ୟ ଭାରତରେ ପ୍ରବେଶ କରି ତାଙ୍କ ପ୍ରଥା ଓ ସଂସ୍କୃତିକୁ ଏ ଦେଶରେ ପ୍ରବେଶ କରାଇଥିଲେ । ଏହା ଫଳରେ ବେଦଧର୍ମର କେତେକ ଅବଶ୍ୟକୀୟ ପରିବର୍ତ୍ତନ ମଧ୍ୟ ଘଟିଥିଲା । ରାମାୟଣରେ ଗୋଟିଏ ବିଶିଷ୍ଟ ଘଟଣାକୁ ମୂଳ କରି ସେହି ମହାକାବ୍ୟ ରଚିତ ହୋଇଥିଲା; କିନ୍ତୁ ମହାଭାରତ ତାହା ନୁହେଁ । ଏହି ନାମରୁ ସୂଚିତ ହୁଏ ଯେ ତତ୍କାଳୀନ ଭାରତ ଏକ ବିରାଟ ସଂଗଠିତ ରାଜ୍ୟ ଥିଲା । ଏଣୁ କୌଣସି ବଂଶବିଶେଷଙ୍କ ନାମରେ ଏହା ନାମିତ ନହୋଇ "ମହାଭାରତ" ଆଖ୍ୟାରେ ପ୍ରକାଶ ପାଇଲା । ବୈଦିକଯୁଗରେ ଉତ୍ତର ଭାରତକୁ "ଆର୍ଯ୍ୟାବର୍ତ୍ତ" ଓ ଦକ୍ଷିଣ ଭାରତକୁ "ଦକ୍ଷିଣାପଥ" କୁହାଯାଉଥିଲା; କିନ୍ତୁ ଏହି ଆର୍ଯ୍ୟାବର୍ତ୍ତ ଓ ଦକ୍ଷିଣାପଥର ଯେତେବେଳେ ରାଜନୈତିକ, ସାମାଜିକ ସଂମିଶ୍ରଣ ହେଲା ସେତେବେଳେ ଏ ଦେଶକୁ ଭାରତ କୁହାଗଲା । ଏହି ମହାଭାରତ ରଚନା ବେଳଠାରୁ ଭାରତରେ ଜାତୀୟ ସଂହତି ଦୃଢ଼ୀଭୂତ ହୋଇଥିଲା । ଭାରତବର୍ଷର ତତ୍କାଳୀନ ବିଭିନ୍ନ ରାଜ୍ୟମାନଙ୍କ ସଙ୍ଗେ ପରସ୍ପର ସମ୍ପର୍କ ଓ ନିଖିଳ ଭାରତୀୟ

# ମହାଭାରତ

ମହାଭାରତ କୃଷ୍ଣ ଦ୍ୱୈପାୟନ-ଦେବବ୍ୟାସକୃତ ମହାକାବ୍ୟ । ମହାଭାରତରେ ବେଦର ନିଗୂଢ଼ତତ୍ତ୍ୱ, ବେଦବେଦାଙ୍ଗ ଓ ଉପନିଷଦର ବ୍ୟାଖ୍ୟା, ଇତିହାସ ଓ ପୁରାଣର ପ୍ରକାଶ, ବର୍ତ୍ତମାନ, ଭୂତ, ଭବିଷ୍ୟତ, ଏହି ତିନିକାଳର ନିରୂପଣ; ଜରା, ମୃତ୍ୟୁ, ଭୟ, ବ୍ୟାଧି, ଭାବ ଓ ଅଭାବର ନିର୍ଣ୍ଣୟ; ବିବିଧ ଧର୍ମର ଓ ବିବିଧ ଆଶ୍ରମର ଲକ୍ଷଣ; ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ, ଶୂଦ୍ର—ଏହି ଚତୁର୍ବର୍ଗର ନାନା ପୁରାଣୋକ୍ତ ଆଚାର ବିଧି, ତପସ୍ୟା, ବ୍ରହ୍ମଚର୍ଯ୍ୟ, ପୃଥିବୀ, ଚନ୍ଦ୍ର, ସୂର୍ଯ୍ୟ, ଗ୍ରହ, ନକ୍ଷତ୍ର, ତାରା ଓ ଯୁଗ ପ୍ରମାଣ; ଋଗ୍‌ବେଦ, ଯଜୁର୍ବେଦ, ସାମବେଦ, ଆତ୍ମତତ୍ତ୍ୱ ନିରୂପଣ ନ୍ୟାୟ-ଶିକ୍ଷା, ଚିକିତ୍ସା; ଦାନଧର୍ମ, ପାଶୁପତଧର୍ମ ଏବଂ ଯେ ଯେଉଁ କାରଣରୁ ଦିବ୍ୟ ବା ମାନବ ଯୋନିରେ ଜନ୍ମ ଗ୍ରହଣ କରିଅଛନ୍ତି ତା'ର ବିବରଣ, ପବିତ୍ର ତୀର୍ଥ, ଦେଶ, ନଦୀ, ପର୍ବତ, ବନ, ସମୁଦ୍ର, ଦିବ୍ୟପୁରୀ, ଦୁର୍ଗ, ସେନାର ବ୍ୟୂହ ରଚନାଦି କୌଶଳ ଏହି ମହାଭାରତ ପଞ୍ଚମ ବେଦ ନାମରେ ପ୍ରସିଦ୍ଧ । ମହାଭାରତ ଅଷ୍ଟାଦଶ ପର୍ବରେ ସମାପ୍ତ । ପୁଣି ଏହି ଅଷ୍ଟାଦଶ ପର୍ବର ମଧ୍ୟରେ ଏକଶତ ପର୍ବାଧ୍ୟାୟ ଅଛି । ମହାଭାରତରେ ଏକଲକ୍ଷ ଶ୍ଳୋକ ଅଛି । ପୃଥିବୀ ମଧ୍ୟରେ ମହାଭାରତ ସର୍ବାପେକ୍ଷା ବୃହତ୍ ମହାକାବ୍ୟ ।

ଯେତେବେଳେ ଆର୍ଯ୍ୟମାନେ ଭାରତକୁ ଆସି ବିଭିନ୍ନ ଅଂଶରେ ବସତି ସ୍ଥାପନ କରି ସାରିବାପରେ ଏକ ମହାଭାରତୀୟ

ଜାତିରୂପେ ନିଜ ସଂଗଠନକୁ ଦୃଢ଼ୀଭୂତ କରୁଥିଲେ ସେହି ସମୟର ଘଟଣାବଳୀକୁ ମୂଳ କରି ମହାଭାରତ ରଚିତ ହୋଇଥିଲା । ପଣ୍ଡିତ ଜବାହରଲାଲ ନେହେରୁ ମହାଭାରତ ସମ୍ବନ୍ଧରେ ତାଙ୍କ ରଚିତ "ଭାରତର ଆବିଷ୍କାର" ନାମକ ପୁସ୍ତକରେ ଲେଖିଅଛନ୍ତି ଯେ "ପୃଥିବୀରେ ଆଜି ପର୍ଯ୍ୟନ୍ତ ଏତେ ବଡ଼ ବିରାଟ ପୁସ୍ତକ ରଚିତ ହୋଇ ନାହିଁ । ପରମ୍ପରାରୁ ଗଢ଼ିଆସୁଥିବା ଧର୍ମ ଭାବ, କାହାଣୀ ଓ ପୂର୍ବ କାଳର ରାଜନୈତିକ, ସାମାଜିକ ଅନୁଷ୍ଠାନମାନଙ୍କର କ୍ରମବିକାଶ ଏଥିରେ ଲିପିବଦ୍ଧ ଅଛି ।" ଏହି ସମୟରେ ବୈଦେଶିକମାନେ ମଧ୍ୟ ଭାରତରେ ପ୍ରବେଶ କରି ତାଙ୍କ ପ୍ରଥା ଓ ସଂସ୍କୃତିକୁ ଏ ଦେଶରେ ପ୍ରବେଶ କରାଇଥିଲେ । ଏହା ଫଳରେ ବେଦଧର୍ମର କେତେକ ଅବଶ୍ୟକୀୟ ପରିବର୍ତ୍ତନ ମଧ୍ୟ ଘଟିଥିଲା । ରାମାୟଣରେ ଗୋଟିଏ ବିଶିଷ୍ଟ ଘଟଣାକୁ ମୂଳ କରି ସେହି ମହାକାବ୍ୟ ରଚିତ ହୋଇଥିଲା; କିନ୍ତୁ ମହାଭାରତ ତାହା ନୁହେଁ । ଏହି ନାମରୁ ସୂଚିତ ହୁଏ ଯେ ତତ୍କାଳୀନ ଭାରତ ଏକ ବିରାଟ ସଂଗଠିତ ରାଜ୍ୟ ଥିଲା । ଏଣୁ କୌଣସି ବ୍ୟକ୍ତିବିଶେଷଙ୍କ ନାମରେ ଏହା ନାମିତ ନହୋଇ "ମହାଭାରତ" ଆଖ୍ୟାରେ ପ୍ରକାଶ ପାଇଲା । ବୈଦିକଯୁଗରେ ଉତ୍ତର ଭାରତକୁ "ଆର୍ଯ୍ୟାବର୍ତ୍ତ" ଓ ଦକ୍ଷିଣ ଭାରତକୁ "ଦକ୍ଷିଣାପଥ" କୁହାଯାଉଥିଲା; କିନ୍ତୁ ଏହି ଆର୍ଯ୍ୟାବର୍ତ୍ତ ଓ ଦକ୍ଷିଣାପଥର ଯେତେବେଳେ ରାଜନୈତିକ, ସାମାଜିକ ସଂମିଶ୍ରଣ ହେଲା ସେତେବେଳେ ଏ ଦେଶକୁ ଭାରତ କୁହାଗଲା । ଏହି ମହାଭାରତ ରଚନା ବେଳଠାରୁ ଭାରତରେ ଜାତୀୟ ସଂହତି ଦୃଢ଼ୀଭୂତ ହୋଇଥିଲା । ଭାରତବର୍ଷର ତତ୍କାଳୀନ ବିଭିନ୍ନ ରାଜ୍ୟମାନଙ୍କ ସଙ୍ଗେ ପରସ୍ପର ସମ୍ପର୍କ ଓ ନିଖିଳ ଭାରତୀୟ

ରାଜନୈତିକ ସଂଗଠନର ଚିତ୍ର ଏଥିରେ ଦିଆଅଛି । ଭାରତର ବିଭିନ୍ନ ଅଂଶର ବିଭିନ୍ନତା ମଧ୍ୟରେ ଏକ ଜାତୀୟ ଐକ୍ୟଭାବ ପ୍ରାଞ୍ଜଳଭାବରେ ପରିସ୍ଫୁଟ ଅଛି । ମହର୍ଷି କୃଷ୍ଣ-ଦ୍ୱୈପାୟନ ବେଦବ୍ୟାସ ଏହାର ରଚୟିତା । ଭାରତର ବିଶିଷ୍ଟ ରାଷ୍ଟ୍ରନୀତିଜ୍ଞ ଶ୍ରୀ ରାଜଗୋପାଳାଚାରୀ ତାଙ୍କ ପ୍ରଣୀତ 'ମହାଭାରତ'ର ମୁଖବନ୍ଧରେ ଲେଖିଛନ୍ତି ଯେ 'ମହାଭାରତ କେବଳ ଭାରତ ବର୍ଷର ନୁହେଁ, ଏହା ସମଗ୍ର ଜଗତପାଇଁ ଆଧ୍ୟାତ୍ମିକ ଶକ୍ତିର ଏକ ପ୍ରଧାନ ଉତ୍ସ । ଏଥିରେ ଯେଉଁ ଚରିତ୍ରମାନଙ୍କର ଅଦ୍ୱିତୀୟ ବର୍ଣ୍ଣନା ଅଛି, ତହିଁରୁ ପରବର୍ତ୍ତୀ ଗ୍ରନ୍ଥକାରମାନେ ଉପାଦାନପାଇଁ ପ୍ରାଚୀନ ଭାରତୀୟ ସଭ୍ୟତା ଓ ସଂସ୍କୃତିର ବ୍ୟାଖ୍ୟା କରିଅଛନ୍ତି । ସେ ସଭ୍ୟତା ଓ ସଂସ୍କୃତି ପୃଥିବୀ ଆଗରେ ଏକ ଆଦର୍ଶଭାବେ ଚିରକାଳ ରହିବ । ସେ କାଳର ଧର୍ମନୀତି ଓ ଯୁଦ୍ଧନୀତିରୁ ଜଣାଯାଏ ଯେ ଭାରତ ସଭ୍ୟତାର ଦିଗରେ କି ଶୀର୍ଷସ୍ଥାନ ଅଧିକାର କରିଅଛି । ଏଥିରେ ବର୍ଣ୍ଣିତ ଧର୍ମନୀତିଗୁଡ଼ିକୁ ଶ୍ରୀକୃଷ୍ଣ ତୁଣ୍ଡରେ ଅର୍ଜୁନଙ୍କୁ କହି ଅଛନ୍ତି । ଏହା ଶ୍ରୀମଦ୍ ଭଗବତ ଗୀତା ନାମରେ ଅଭିହିତ ।

କେବଳ କୁରୁ ପାଣ୍ଡବଙ୍କ ମଧ୍ୟରେ ରାଜ୍ୟ ଅଧିକାର-ପାଇଁ ଯେ ଏକ ଯୁଦ୍ଧ ହୋଇଥିଲା ଓ ସେଥିରେ ପାଣ୍ଡବମାନେ କୌରବମାନଙ୍କୁ ନିହତ କରି ସାମ୍ରାଜ୍ୟ ଭୋଗ କଲେ ଏତିକି କହିଲେ 'ମହାଭାରତ'ର ପ୍ରକୃତ ବର୍ଣ୍ଣନା ହେଲା ନାହିଁ । ମହା ମହା ରଥୀମାନେ ମହା ମହା ଗୁଣର ଅଧିକାରୀ ହୋଇ ନାନା ସଂଘର୍ଷ ମଧ୍ୟରେ ଏକ ମୂଳନୀତିକୁ ମନ୍ଥନ କରି କପରି ମହାଭାରତୀୟ ଜାତୀୟ ଜୀବନ ଗଢ଼ି ରାଜନୈତିକ ସାମାଜିକ ଓ ଆଧ୍ୟାତ୍ମିକ କ୍ଷେତ୍ରରେ ମାନବ ସମାଜର ମଙ୍ଗଳପାଇଁ ଯେଉଁ ଆଦର୍ଶ ଦେଖାଇ ଯାଇଛନ୍ତି ତାହା ଆମ୍ଭମାନଙ୍କର ସର୍ବଶ୍ରେଷ୍ଠ ସମ୍ପଦ । ସର୍ବଗୁଣ-

ସମ୍ମାନ ବୀର ଭୀଷ୍ମ, ମହାପୂଜ୍ୟ ଦ୍ରୋଣ, ଗର୍ବୀ କିନ୍ତୁ ସାହସିକ କର୍ଣ୍ଣ, ଅଭିମାନୀ କିନ୍ତୁ ବିପଦରେ ଧୈର୍ଯ୍ୟଶାଳୀ ଦୁର୍ଯ୍ୟୋଧନ, ଉଚ୍ଚ ଆତ୍ମାବାନ୍ ପାଣ୍ଡବମାନେ ଯେଉଁମାନଙ୍କର ଦେବଭାବିଳ ଶକ୍ତି ଥିଲା ଓ ଯେଉଁମାନଙ୍କର ବିପଦ ସହ୍ୟ କରିବାକୁ ଧୈର୍ଯ୍ୟଥିଲା ସେମାନେ; ସବୁଠାରୁ ଅଭାଗିନୀ ସାମ୍ରାଜ୍ଞୀ ଦ୍ରୌପଦୀ, ବୀର ପ୍ରସବିନୀ ମାତା କୁନ୍ତୀ, କୁପୁତ୍ରଙ୍କ ମାତା କିନ୍ତୁ ସ୍ୱାମୀର ଅନୁଗତା ସହଧର୍ମିଣୀ ଗାନ୍ଧାରୀ, ଏହିସବୁ ଅବିନଶ୍ୱର ଚରିତ୍ରମାନଙ୍କର ବର୍ଣ୍ଣନା ମହାଭାରତରେ ଅଛି । ସର୍ବଶେଷରେ ଶ୍ରୀକୃଷ୍ଣଙ୍କର ଦେବତ୍ୱ ଓ ମହତ୍ ଉଦ୍ଦେଶ୍ୟ ଏହି ମହାପୁରାଣର ଛତ୍ରେ ଛତ୍ରେ ଜାଜ୍ୱଲ୍ୟମାନ ଓ ତାଙ୍କର ଗୀତ ବାଣୀ ମାନବ ସମାଜର ଚିରକାଳପାଇଁ ପ୍ରଦର୍ଶିତ ସତ୍‌ମାର୍ଗ ହୋଇ ରହିବ ।

---

# ରାମାୟଣ ଓ ମହାଭାରତର ତୁଳନା

ଏ ଦୁଇଟି ଭାରତ ତଥା ସମଗ୍ର ପୃଥିବୀର ମହାକାବ୍ୟ ଓ ଓ ଆଦିଗ୍ରନ୍ଥ । ରାମାୟଣ ମହାଭାରତଠାରୁ ପ୍ରାଚୀନତର । ଯେତେବେଳେ ଆର୍ଯ୍ୟମାନେ ପ୍ରଥମେ ଗଙ୍ଗା-ଯମୁନା ଉପତ୍ୟକାରେ ବସତି ସ୍ଥାପନ କଲେ ସେତେବେଳେ ଦ୍ରାବିଡ଼ ରାକ୍ଷସମାନେ ଆର୍ଯ୍ୟମାନଙ୍କ ପ୍ରବେଶରେ କ୍ଷୁବ୍‌ଧ ହୋଇ ସେମାନଙ୍କ ପ୍ରତି ନାନାଦି ଅତ୍ୟାଚାର କରୁଥିଲେ । ସେତେବେଳେ ଉତ୍ତର-ଭାରତରେ ଅଳ୍ପ କେତେକ ଆର୍ଯ୍ୟ ରାଜ୍ୟ ଥିଲା ଓ ଦାକ୍ଷିଣାତ୍ୟରେ ଅନାର୍ଯ୍ୟ ଓ ଦ୍ରାବିଡ଼ମାନେ ପ୍ରବଳଥିଲେ । ମହାଭାରତ ବେଳକୁ ସମଗ୍ର ଭାରତ ଆର୍ଯ୍ୟ ପ୍ରଭାବକୁ ଆସିଥିଲା ଓ ବିଭିନ୍ନ ସ୍ୱାଧୀନ ରାଜ୍ୟମାନ ଗଢ଼ାଯାଇ ଶାସନ ସଂଗଠିତ ହୋଇ ଆସୁଥିଲା ।

ରାମାୟଣର ସାରକଥା ହେଲା ଏହି ଯେ ଉତ୍ତର-ଭାରତସ୍ଥ ଅଯୋଧ୍ୟାର ରାଜପୁତ୍ର କେତେକ ଅନାର୍ଯ୍ୟ ଗୋଷ୍ଠୀଙ୍କ ସଙ୍ଗେ ମିତ୍ରତା ସ୍ଥାପନ କରି ଆର୍ଯ୍ୟଋଷିମାନଙ୍କ ଆଶୀର୍ବାଦରେ ଦକ୍ଷିଣକୁ ଭେଦକରି ଲଙ୍କାର ଦ୍ରାବିଡ଼ମାନଙ୍କୁ ପରାଜୟ କରି ଆର୍ଯ୍ୟମାନଙ୍କୁ ଦ୍ରାବିଡ଼ଙ୍କ ଦୌରାତ୍ମ୍ୟରୁ ରକ୍ଷା କଲେ ଓ ମୁନିଋଷିମାନେ ନିରାପଦରେ ଓ ନିର୍ଭୟରେ ଆର୍ଯ୍ୟ ସଂସ୍କୃତି ଓ ସଭ୍ୟତା ସମଗ୍ର ଦେଶରେ ବିସ୍ତାର କଲେ ।

ମହାଭାରତର ସାରକଥା ହେଲା ଏହିଯେ ଆର୍ଯ୍ୟମାନଙ୍କ ମଧ୍ୟରେ ରାଜ୍ୟାଧିକାର ଓ ସୁଶାସନପାଇଁ ଗୋଷ୍ଠୀ ବିବାଦ ହେଲା । ତହିଁରେ ଭାରତର ବିଭିନ୍ନ ରାଜ୍ୟମାନେ ଭିନ୍ନ ଭିନ୍ନ ପକ୍ଷ ଅବଲମ୍ବନ କଲେ ଓ ଏକ ଗୋଷ୍ଠୀ ଅନ୍ୟକୁ ପରାସ୍ତ କରି ସମଗ୍ର ଭାରତରେ ରାଜଚକ୍ରବର୍ତ୍ତୀ ହେଲେ । ବାଲ୍ମୀକି ରାମାୟଣ ଓ ବ୍ୟାସଦେବ ମହାଭାରତ ପ୍ରଣୟନ କଲେ । ରାମାୟଣରେ ରାମଚନ୍ଦ୍ରଙ୍କୁ ଓ ମହା-ଭାରତରେ ଶ୍ରୀକୃଷ୍ଣଙ୍କୁ ଭଗବାନଙ୍କ ଅବତାର ରୂପେ ବର୍ଣ୍ଣନା କରା ଯାଇଅଛି । ରାମାୟଣରେ ରାମ ରାବଣଙ୍କ ଯୁଦ୍ଧ ଓ ମହାଭାରତରେ କୁରୁପାଣ୍ଡବଙ୍କ ଯୁଦ୍ଧ ବର୍ଣ୍ଣିତ ଅଛି । ସତ୍‌ମାର୍ଗ ସଙ୍ଗେ ଅସତ୍ ମାର୍ଗର ସର୍ବଦା ସଂଘର୍ଷ ଚାଲିଅଛି । ପୁରାଣକାରମାନେ ବର୍ଣ୍ଣି ଯାଇଛନ୍ତି ଯେ ସତ୍‌ମାର୍ଗ ଅସତ୍ ମାର୍ଗକୁ ପରାଜୟ କରେ । ପାପରୁ କ୍ଷୟ ଓ ପୁଣ୍ୟରୁ ଜୟ ଏ ବିଷୟର ତଥ୍ୟ ଓ ବିବରଣ ଏ ମହାକାବ୍ୟ-ମାନଙ୍କରେ ପ୍ରାଞ୍ଜଳଭାବରେ ଦେଇ ପୁରାଣକାରମାନେ ସତ୍ ମାର୍ଗର ବାଟ ଫିଟାଇଛନ୍ତି । ରାମାୟଣରେ ରାମଚନ୍ଦ୍ର ଅବତାର ରୂପେ ଜନ୍ମି ମାନବ ସମାଜ ଆଗରେ ଏକ ଆଦର୍ଶ ଚରିତ୍ର ସ୍ଥାପି-ଯାଇଛନ୍ତି । ଦଶରଥ ଓ କୌଶଲ୍ୟାଙ୍କ ସନ୍ତାନବାତ୍ସଲ୍ୟ ରାମଚନ୍ଦ୍ରଙ୍କ ପିତୃଭକ୍ତି ଲକ୍ଷ୍ମଣ ଭରତଙ୍କ ଭ୍ରାତୃଭକ୍ତି ଓ ପ୍ରେମ, ସୁଗ୍ରୀବ ଓ

ଜଟାୟୁଙ୍କ ମିତ୍ରତା, ହନୁମାନଙ୍କ ପ୍ରଭୁଭକ୍ତି, ରାମଚନ୍ଦ୍ରଙ୍କ ପ୍ରଜାରଞ୍ଜନ, ସୀତାଙ୍କର ଅଲୌକିକ ପାତିବ୍ରତ୍ୟ ପୃଥିବୀରେ ଆଦର୍ଶ ହୋଇ-ରହିଅଛି । ମହାଭାରତରେ ଶ୍ରୀକୃଷ୍ଣ ଅବତାରରୂପେ ଜନ୍ମି ସମଗ୍ର ଭାରତର ରାଜନୈତିକ ସଂଗଠନକୁ ପ୍ରେରଣା ଦେଇ ସତ୍‌ମାର୍ଗ ପନ୍ଥୀ ପାଣ୍ଡବମାନଙ୍କଦ୍ୱାରା ଏ ଅସତ୍ ମାର୍ଗ ପନ୍ଥୀ କୌରବ-ମାନଙ୍କର ଧ୍ୱଂସ ସାଧନ କରି ପୃଥିବୀରେ ଶାନ୍ତି ଅଣାଇଛନ୍ତି । ଭୀଷ୍ମଙ୍କ ପ୍ରତିଜ୍ଞା, ଯୁଧିଷ୍ଠିରଙ୍କ ଆଦର୍ଶ ଧର୍ମଶୀଳ ସ୍ୱଭାବ, ଅର୍ଜୁନଙ୍କ ଆଦର୍ଶ ବୀରତ୍ୱ, କୁନ୍ତୀଙ୍କ ସହନଶୀଳତା, ଭୀମଙ୍କର ବଳ, ଧୃତରାଷ୍ଟ୍ର-ଙ୍କର ଦ୍ୱିଧା, ଦୁର୍ଯ୍ୟୋଧନଙ୍କର ଗର୍ବ, ହିଂସା, ଈର୍ଷା ଏସବୁ ତହିଁର ପ୍ରଧାନ ବିଷୟ ।

ରାମାୟଣରେ ରାବଣ ତା'ର ମୃତ୍ୟୁବେଳେ ରାମଚନ୍ଦ୍ରଙ୍କୁ କେତେକ ରାଜନୀତି ତଥ୍ୟ ବର୍ଣ୍ଣନା କରିଥିଲେ ଓ ଭୀଷ୍ମ ତାଙ୍କ ମୃତ୍ୟୁବେଳେ ଯୁଧିଷ୍ଠିରଙ୍କୁ ନୀତି ବାଣୀ ଦେଇଥିଲେ । ରାମାୟଣରେ ରାମଚନ୍ଦ୍ର ତାଙ୍କର ଆଦର୍ଶ ଚରିତ୍ର କାର୍ଯ୍ୟରେ ଦେଖାଇ ଦେଇ ଯାଇଥିଲେ । ଶ୍ରୀକୃଷ୍ଣ ଆଦର୍ଶ ଜୀବନ ଦେଖାଇ ଦେଇ ନୀତିବାଣୀ ଦେଇ ଯାଇଥିଲେ । ଶ୍ରୀକୃଷ୍ଣ ସମାଜ ସଂଗଠନ, ରାଜ୍ୟ ସୁଶାସନ ସମ୍ପର୍କରେ କହିବାକୁ ଯାଇ ଅର୍ଜୁନଙ୍କୁ ଯେଉଁ ଧର୍ମନୀତି କହି ଯାଇଥିଲେ ତାହା ଶ୍ରୀମତ୍ ଭଗବତ୍‌ଗୀତା ନାମରେ ପରିଚିତ । ଏହା ପୃଥିବୀର ସର୍ବଶ୍ରେଷ୍ଠ ଗ୍ରନ୍ଥ । ଆଦର୍ଶ ସାମାଜିକ, ରାଜନୈତିକ ଓ ଆଧ୍ୟାତ୍ମିକ ଜୀବନ ଗଢ଼ିବାପାଇଁ ଏହା ଅଭିପ୍ରେତ । ଏହା ଶ୍ରୀକୃଷ୍ଣଙ୍କ ମୁଖ ନିସୃତ ବାଣୀ । ଯେତେବେଳେ ସାମାଜିକ ଜୀବନ ଜଟିଳ ହୋଇ ପଡିଥିଲା ଓ ରାଜ୍ୟ ରାଜ୍ୟ ମଧ୍ୟରେ ପରସ୍ପର ବିବାଦ ଚାଲିଥିଲା ଏବଂ ସମଗ୍ର ଭାରତରେ ଅନ୍ତର୍ବିବାଦ ଘଟିଥିଲା, ସେହି ସମୟରେ ମାନବ ସମାଜର ସଂଗଠନ, ରାଜ୍ୟର ସୁଶାସନ, ପାର୍ଥିବ

ଜୀବନର ସୁଖ, ପରକାଳରେ ମୋକ୍ଷ ବା ମୁକ୍ତି ଓ ଆଧ୍ୟାତ୍ମିକ ଜୀବନର ଉତ୍କର୍ଷ ଏବଂ ସମଗ୍ର ବିଶ୍ୱରେ ଶାନ୍ତି ଓ ସୁଖ ଦୃଷ୍ଟିରୁ ଭଗବାନ ଶ୍ରୀକୃଷ୍ଣ ଏହି ନୀତି ବାଣୀମାନ ଦେଇ ଅଛନ୍ତି । ମୋଟ ଉପରେ ଏହି ଦୁଇଗ୍ରନ୍ଥର ପ୍ରଭାବ ଆଦିମ କାଳରୁ ଭାରତୀୟ ସମାଜକୁ ସତ୍‌ପଥ ମାର୍ଗକୁ ଟାଣି ଆଣିବାକୁ ବାଟ ଦେଖାଇଛି ଓ ଆଧୁନିକ ଭାରତ ସେହିଭାବରେ ଉଦ୍‌ବୁଦ୍ଧ ।

---

# ଶ୍ରୀ ଗୀତା

ଶ୍ରୀମତ୍ ଭଗବତ୍‌ଗୀତା ମାନବ ସମାଜର ସର୍ବଶ୍ରେଷ୍ଠ ଧର୍ମଗ୍ରନ୍ଥ । ଗୀତା ଭାରତୀୟ ବୈଦିକ ଧର୍ମର ମନୀଷୀ ବ୍ୟାସ-ଦେବଙ୍କ ସ୍ୱରଚିତ ଧର୍ମଗ୍ରନ୍ଥ ହେଲେହେଁ ଏହା ବିଶ୍ୱର ସକଳଧର୍ମ ସମ୍ପ୍ରଦାୟ ଓ ସମସ୍ତ ଭାଷାଭାଷୀଙ୍କର ନୀତି-ଗର୍ଭିକ ଶାସ୍ତ୍ର । ଜର୍ମାନ୍ ପଣ୍ଡିତ ଉଇଲ୍‌ହମଭନ୍ ଯଥାର୍ଥରେ କହିଛନ୍ତି, ଗୀତାପର ସୁଲଳିତ, ସତ୍ୟ ଓ ସୁଗଭୀର ପଦ୍ୟଗ୍ରନ୍ଥ ସମ୍ଭବତଃ ପୃଥିବୀର ଅନ୍ୟ କୌଣସି ଭାଷାରେ ନାହିଁ । **ପୃଥିବୀର ପ୍ରସିଦ୍ଧ ଛଅଶହି ଭାଷାରେ ଆଜି ପର୍ଯ୍ୟନ୍ତ ଗୀତାର ପଚାଶି ହଜାର ସଂସ୍କରଣ ହୋଇଛି ।**

ଜର୍ମାନ୍, ଫରାସୀ ଓ ଇଂରାଜୀ ପ୍ରଭୃତି ଇଉରୋପର ପ୍ରଧାନ ପ୍ରଧାନ ଭାଷାରେ ଗୀତାର ସୁନ୍ଦର ଅନୁବାଦ ବିଦ୍ୟମାନ୍ । ମହାତ୍ମାଗାନ୍ଧୀଙ୍କ ଭାଷାରେ "ଗୀତା ମନୁଷ୍ୟର ପାରମାର୍ଥିକ ଜନନୀ । ମୋର ଗର୍ଭଧାରିଣୀ ମା'ର ଦେହାନ୍ତେ ଗୀତା ସେ ସ୍ଥାନ ଅଧିକାର କରିଅଛି । ଗୀତାଧର୍ମର ଅନୁଶୀଳନରେ ମାନବଜୀବନ ଶାନ୍ତି ଧାମରେ ପରିଣତ ହେବ । ଗୀତାର ଗୋଟିଏ ଗୋଟିଏ ଶ୍ଳୋକ

ବ୍ୟାଖ୍ୟାନ କଲେ, ଗୋଟିଏ ଗୋଟିଏ ଶାସ୍ତ୍ର ହୋଇପାରେ । ଗୀତାର ମୌଳିକତ୍ୱ ଭାବର ଗଭୀରତା ଅଭିନବତ୍ୱ ଦାର୍ଶନିକତାର ଉଚ୍ଚତା ବଳିଷ୍ଠ ଯୁକ୍ତି ଓ ବ୍ୟାଖ୍ୟା-କୋମଳ ଅପୂର୍ବ ଓ ଅସାଧାରଣ । ଗୀତା ଇହ ଓ ପରଲୋକର ସତ୍ୟ ଉଦ୍‌ଘାଟନ କରେ । ଗୀତା ଈଶ୍ୱର ଲାଭର ଦୁର୍ଗମପଥରେ ଏକମାତ୍ର ସଙ୍ଗୀ ଓ ସମ୍ପଦ ।

ଶାକ୍ତ, ବୈଷ୍ଣବ, ବୌଦ୍ଧ, ବ୍ରାହ୍ମ, ଖ୍ରୀଷ୍ଟିଆନ୍, ମୁସଲମାନ ପ୍ରଭୃତି ବିଭିନ୍ନ ସମ୍ପ୍ରଦାୟ ନିଜ ନିଜ ସଂପ୍ରଦାୟର ଧର୍ମ ଓ ମତ ଠିକ୍ ରଖି ମଧ୍ୟ ଗୀତାର ଧର୍ମଗ୍ରହଣ କରିପାରନ୍ତି, ଗୀତା ଜୀବନ୍ତ ଧର୍ମଶାସ୍ତ୍ର । ତା'ର ଉପଦେଶ ଜୀବନ୍ତ । ଗୀତାପରି ବିଶ୍ୱବ୍ୟାପକ ଧର୍ମ ଅନ୍ୟ କୌଣସି ସମ୍ପ୍ରଦାୟ ମଧ୍ୟରେ ନାହିଁ । ଗୀତା **ସମସ୍ତ ବେଦ ଓ ବେଦାନ୍ତ ଶାସ୍ତ୍ରର ସାର । ଗୀତା ସ୍ୱୟଂ ଭଗବାନଙ୍କର ଶ୍ରୀମୁଖ ନିସୃତ ଅମୃତମୟୀ ବାଣୀ ।**

**ମୋଟ ଉପରେ କହିବାକୁ ଗଲେ ପୃଥିବୀର ସମସ୍ତ ଧର୍ମଶାସ୍ତ୍ର ଯଦି ଲୋପ ପାଇଯାଏ ଏବଂ ଏକମାତ୍ର ଗୀତା ରହେ ତା'ହେଲେ କୌଣସି ସମ୍ପ୍ରଦାୟ ଧର୍ମର ଅଭାବ ଅନୁଭବ କରିବେ ନାହିଁ ।**

---

# ବେଦ

ମନୁ ସଂହିତାରେ ବର୍ଣ୍ଣିତ ଅଛି ଯେ ବେଦ ଚାରି ପ୍ରକାର । ଋକ୍, ଯଜୁ, ସାମ ଓ ଅଥର୍ବ —ଋଷିମାନଙ୍କ ଆସ୍ୟାରେ ସ୍ୱୟଂ ଈଶ୍ୱର ଏହି ଚାରି ବେଦ ବ୍ୟକ୍ତ କରିଅଛନ୍ତି ।

ବେଦ ଭାରତୀୟ ସଭ୍ୟତାର ମୂଳଭିତ୍ତି । ଆମ ଦେଶର ପ୍ରାଚୀନ ସାଂସ୍କୃତିକଧାରା ଓ ସଭ୍ୟତା ଯାହା ଚାଲିଯାଉଛି ବା ଚାଲିଅଛି, ତାହାର ଜନନୀ ହେଲା ବେଦ । ଆମ ଦେଶରେ ପାଞ୍ଚହଜାର ବର୍ଷତଳେ ବେଦ ରଚିତ ହୋଇଥିଲା । ଆମ ପୁରାଣରେ ଲେଖାଅଛି ଯେ ବେଦର ପ୍ରେରଣାଦାତା ସ୍ୱୟଂ ବ୍ରହ୍ମା ଓ ସେ ଚତୁର୍ମୁଖରେ ବେଦ ଗାଇଥିବାରୁ ବେଦ ଚାରୋଟି ରଚିତ ହେଲା । ବିଶ୍ୱାମିତ୍ର ଓ କଣ୍ୱମୁନି ଏଥିରୁ ଅଧିକାଂଶ ରଚନା କରିଥିଲେ ।

ଭାରତ ବର୍ଷରେ ଆମ ସାମାଜିକ କ୍ରିୟାକାଣ୍ଡ ଓ କର୍ମକର୍ମାଣି ପୂଜାପାର୍ବଣ ଓ ବିବାହ ଉପନୟନ, କର୍ଣ୍ଣବେଧ ପ୍ରଭୃତି ସବୁ କ୍ରିୟା ସଂସ୍କାରଗୁଡ଼ିକ ବେଦର ବିଧିରେ ସମାପନ ହୁଏ ! ପୃଥିବୀରେ କୌଣସି ଜାତିର ପୂର୍ବପୁରୁଷ ଓ ପୂର୍ବନାରୀମାନେ ଆମର ପୂର୍ବଜ ଓ ପୂର୍ବଜାମାନଙ୍କ ଭଳି ଏ ପ୍ରକାର ଗ୍ରନ୍ଥ ରଚନା କରିନାହାନ୍ତି । ଏତେ ବଡ଼ ବିଶାଳ ଭାରତୀୟ ସଂସ୍କୃତି, ସାହିତ୍ୟ, ସଭ୍ୟତା ସବୁ ବେଦରୁ ବାହାରିଥିବାରୁ ବେଦ ବିଶ୍ୱସଭ୍ୟତାର ପ୍ରତୀକ ହୋଇ ପାରିଛି । ପଣ୍ଡିତ ଜବାହରଲାଲ୍ ନେହେରୁ କହିଛନ୍ତି ଯେ "ଋକ୍-ବେଦ ପୃଥିବୀର ଆଦିଗ୍ରନ୍ଥ । ଏଥିରେ ପୌତ୍ତଳିକତାବାଦ ନାହିଁ; କି ଦେବତାମାନଙ୍କ ମନ୍ଦିର କଥା ନାହିଁ । ପ୍ରାଚୀନ ଆର୍ଯ୍ୟମାନେ ଦେବ ଦେବୀଙ୍କ ବିଶ୍ୱାସ କରି ଆନନ୍ଦରେ ଜୀବନ ଉପଭୋଗ କରୁଥିଲେ ବୋଲି ତାହାର ବର୍ଣ୍ଣନା ଅଛି । ବିଶ୍ୱକବି ରବୀନ୍ଦ୍ରନାଥ ଠାକୁର ଲେଖିଛନ୍ତି :—

"ଆର୍ଯ୍ୟମାନେ ଭାରତରେ ପ୍ରଥମେ ପ୍ରବେଶ କରି ପୃଥିବୀରେ ପ୍ରକୃତିର ଆଶ୍ଚର୍ଯ୍ୟ ଘଟଣାମାନ ଦେଖି ଭକ୍ତି ଓ ଭୟ ସହିତ ତାକୁ ଭଗବାନଙ୍କ ଲୀଳା ବୋଲି ବିଶ୍ୱାସ କରିଥିଲେ ଓ ମୁନିଋଷିମାନେ ସେହି ଭାବକୁ, ସୂକ୍ତ, ସ୍ତୋତ୍ର, ମନ୍ତ୍ର ଓ ସଙ୍ଗୀତ ଆକାରରେ ଜନ

ସମାଜସମକ୍ଷରେ ଉପସ୍ଥାପିତ କରିଥିଲେ । ସଭ୍ୟତାର ପ୍ରଥମ ପ୍ରଭାତ ବେଳେ ମୁନିଋଷିମାନେ ଉଚ୍ଚତମ କଳ୍ପନା-ରାଜ୍ୟରେ ବିଚରଣ କରି ଐଶୀଶକ୍ତି ଉପରି ପ୍ରକୃତିକୁ ଚାଳନ କରୁଥିଲା ଓ ଲୋକେ ଉପରି ସେମାନଙ୍କର ସରଳ ବିଶ୍ୱାସରେ ଭଗବତ୍ ସତ୍ତାକୁ ମୂଳାଧାର ରୂପେ ରଖି ସାହସର ସହିତ ଆନନ୍ଦମୟ ଜୀବନ ଯାପନ କରୁଥିଲେ ସେହିସବୁ ବିବରଣୀ ବେଦରେ ଉଲ୍ଲେଖ କରି ଯାଇଅଛନ୍ତି ଓ ଆଦର୍ଶ ଜୀବନର ଧାରା ଗଢିଯାଇ ଅଛନ୍ତି ।

"ବେଦ' ଶବ୍ଦର ଅର୍ଥ ହେଉଛି 'ଜ୍ଞାନ'; ଅର୍ଥାତ୍ ଯାହା ଜାଣିବା ଉଚିତ । ଚାରି ବେଦ ଲେଖି ସାରିବାପରେ ବେଦାନ୍ତ ରଚିତ ହୋଇଥିଲା; ତାହାକୁ ଉପନିଷଦ୍ କୁହାଯାଏ । ଏଥିରେ ସୃଷ୍ଟିତତ୍ତ୍ୱର ଚର୍ଚ୍ଚା ଓ ବିଶ୍ଳେଷଣ ହୋଇଅଛି । ଯେତେବେଳେ ମୁନିଋଷିମାନେ ଚିନ୍ତାରାଜ୍ୟରେ ପ୍ରବେଶକରି ଆଧ୍ୟାତ୍ମିକ ସ୍ତର ଖୋଜି ବସିଲେ ସେତେବେଳେ ସେମାନେ ବେଦର ବ୍ୟାଖ୍ୟା କଲେ ଓ ଆତ୍ମା କ'ଣ, କେଉଁଠୁ ଆସିଛି କେଉଁଠିକି ଯିବ ଓ ଏହାର ଉଦ୍ଦେଶ୍ୟ କ'ଣ ଏ ବିଷୟ ମାନ ପରିସ୍ଫୁଟ ହେଲା ।

---

# ମନୁସଂହିତା

ମନୁ ସଙ୍କଳିତ ସଂହିତା, ମନୁପ୍ରଣୀତ ସ୍ମୃତି ଶାସ୍ତ୍ର ବା ମାନବ ଧର୍ମଶାସ୍ତ୍ର ।

ମନୁସଂହିତାରେ ସତ୍ୟଯୁଗର ଧର୍ମ ବ୍ୟକ୍ତ ହୋଇଛି । ମନୁ-ସଂହିତାରେ ବାରଗୋଟି ଅଧ୍ୟାୟରେ ଅଢ଼େଇ ହଜାରରୁ କିଛି ଅଧିକ ଶ୍ଳୋକ ଅଛି । ବେଦ ହେଉଛି, ଭାରତୀୟ ସଂସ୍କୃତିର

ଆଧ୍ୟାତ୍ମିକ ମର୍ଜ୍ଜି ଓ ଉପନିଷଦ୍‌ରେ ଶୀର୍ଷତମ ଜ୍ଞାନ ଓ ଅନୁଭୂତିର ପ୍ରକାଶ ପାଇଅଛି; କିନ୍ତୁ ବ୍ୟକ୍ତିଗତ ଓ ଗୋଷ୍ଠୀଗତ ଜୀବନରେ ସାମାଜିକ, ନୈତିକ ଓ ରାଜନୈତିକ ଦୃଷ୍ଟିଦିଗରୁ ଆଦର୍ଶ ନିୟମାବଳୀ ମନୁସଂହିତାରେ ଧାରାବାହିକଭାବରେ ଲିପିବଦ୍ଧ ଅଛି । ଏହା ମାନବ ସମାଜପାଇଁ ସମଗ୍ର ବିଶ୍ୱରେ ସର୍ବପ୍ରଥମ ସଂହିତା ବା ଯାହା ଆଜିକାଲି ଆଇନ୍ ନାମରେ ଅଭିହିତ । ସୁପ୍ରସିଦ୍ଧ ମାର୍କିନ୍ ଦେଶୀୟ ଲେଖକ ଥୋରୋ ଏକ ପ୍ରସଙ୍ଗରେ ଲେଖିଛନ୍ତି ଯେ, 'ମନୁସ୍ମୃତି' ସର୍ବପ୍ରଥମ ପ୍ରାମାଣିକ ଗ୍ରନ୍ଥ । ଏହା ସୃଷ୍ଟିର ଆଦ୍ୟକାଳରୁ ବ୍ରହ୍ମାଙ୍କ ଦାୟାଦ ମନୁଙ୍କଦ୍ୱାରା ପ୍ରଣୀତ ହୋଇଥିଲା ବୋଲି ହିନ୍ଦୁମାନେ ବିଶ୍ୱାସ କରନ୍ତି । ମୋ ଜାଣିବାରେ ଏହା ଅପେକ୍ଷା ଅଧିକ ମହତ୍ତ୍ୱପୂର୍ଣ୍ଣ କୌଣସି ପ୍ରାଚୀନ ବହି ନାହିଁ । ଜଣାପଡ଼େ କୌଣସି ପ୍ରାଚ୍ୟ ଗିରିଶୃଙ୍ଗରେ ସୃଷ୍ଟିର ପ୍ରାକୃତିକ ପ୍ରଶାନ୍ତିରେ ଏହା ଉଚ୍ଚାରିତ ହୋଇଥିଲା । ନୂର୍ବଘାଟ, ପଶ୍ଚିମଘାଟ, ପର୍ବତଶ୍ରେଣୀର ମାଳଭୂମିକୁ ଏହା ଛନ୍ଦ ପଢ଼ୁ ପଢ଼ୁ ଉନ୍ମୁକ୍ତ ହୋଇଯିବ । ମରୁଭୂମିର ପବନ ପରି ଏହାର ଛନ୍ଦ, ଟଙ୍ଗୀର ଜୁଆର ପରି ଏହାର ଗତି ଓ ହିମାଳୟ ପର୍ବତପରି ସମାଲୋଚନାର ସୀମାତୀତ । ଏହାକୁ ପଢ଼ିବାକୁ ଆରମ୍ଭ କଲାବେଳେ ବାକ୍ୟଗୁଡ଼ିକ ସହଜସାଧ୍ୟ ଓ କୁସୁମ-କଳିକା ପରି ପ୍ରଥମରେ ପ୍ରାୟ ଅର୍ଥହୀନ ବୋଧ ହେଲେ ହେଁ, ତହିଁ ମଧ୍ୟରୁ ବେଳେବେଳେ ଯେଉଁ ଦୁର୍ଲଭ ଜ୍ଞାନର ଉତ୍ସ ବାହାରେ ତାହା ଆମକୁ ଅବାକ୍ କରିଦିଏ । ଏଥିରେ ଥିବା ଜ୍ଞାନ ଶ୍ୱେତମୃତ୍ତିକା ପରି ସୁମାର୍ଜିତ । ସତେ ଯେପରି ମହାସାଗରର ଅତଳ ତଳେ ସନ୍ନିବେଶିତ । ତାହା ନିର୍ମଳ ଓ ପ୍ରସ୍ତରଭୂତ ବସ୍ତୁ-

ପର ନିର୍ଣ୍ଣ ସତ୍ୟ ଓ ସତେ ଯେପରି ସହସ୍ର ସହସ୍ର ବର୍ଷ ଧରି ପଞ୍ଚଭୌତିକ ପ୍ରକୃତିରେ ଅନାବୃତ ରହିଥିଲା । ଏଥିରେ ବିଜ୍ଞାନ ସମ୍ମତ ସତ୍ୟ ନିହିତ ଅଛି । ଏଥିରେ ଭାରତୀୟ ଦାର୍ଶନିକ ଚିନ୍ତା-ଧାରା ପରିସ୍ଫୁଟ ହୋଇଛି । ପ୍ରାଚୀନ ଇହୁଦୀ ସମ୍ପ୍ରଦାୟପାଇଁ ମୋଜେସ୍ ତାଙ୍କ ସଂହିତା ପ୍ରଣୟନ କରିଥିଲେ ଯାହାର ସାରାଂଶ ହେଉଛି "Ten commandments" ବା ବାଇବେଲର ଦଶ ଆଜ୍ଞା ଓ ଖ୍ରୀଷ୍ଟପୂର୍ବ ଦୁଇହଜାର ବର୍ଷ ପୂର୍ବେ ବାଇବେଲର ସମ୍ରାଟ୍ ହାମୁରବୀ ଏହି ଅନୁରୂପ ଏକ ସଂହିତା ପ୍ରଣୟନ କରିଥିଲେ; ମାତ୍ର ମନୁସ୍ମୃତି ତୁଳନାରେ ଏହା ସବୁ ଅତି କ୍ଷୁଦ୍ର ଓ ଅତି ନଗଣ୍ୟ । ମନୁସଂହିତାରେ ଯେଉଁ ରାଜନୀତି, ଧର୍ମ-ନୀତି, ସମାଜନୀତି ଓ ଗାର୍ହସ୍ଥ୍ୟ ନୀତି ବର୍ଣ୍ଣିତ ହୋଇଛି ତାହାର ଆଦର୍ଶରେ ଆଜିକାଲିର ଦାର୍ଶନିକମାନେ ନୂତନ ତଥ୍ୟ ପ୍ରକାଶ କରୁଛନ୍ତି ।

---

## ବ୍ରହ୍ମାଣ୍ଡର ରହସ୍ୟ

ସମୁଦ୍ର କୂଳରେ ବାଲି ଗଣିଲେ ସରିବ
ବିଶ୍ୱ ଜଗତ କଳନା କେ କରି ପାରିବ ।
ସେହିପରି ବ୍ରହ୍ମା ବିଷ୍ଣୁ ଶିବଙ୍କ ଗଣନା
କେହି କରି ନ ପାରିବେ ଅଟେ ମହାମନା ।
ପାତାଳ ଭୁବନଠାରୁ ବ୍ରହ୍ମ ଲୋକଯାଏ
ସମସ୍ତ ଲୋକ ମିଶିଣ ବ୍ରହ୍ମାଣ୍ଡ ପଦବାଚ୍ୟଏ ।
ବ୍ରହ୍ମାଣ୍ଡ ରହସ୍ୟ କଥା ନଜେ ସନାତନ
ଶ୍ରୀକୃଷ୍ଣ ତ ନ ଜାଣନ୍ତି ଜାଣିବ କେ ଆନ ।

କମଳା ପରାୟ ଗୋଲ ପୃଥିବୀ ମଣ୍ଡଳ
ବେଢ଼ିଅଛି କରି ତାକୁ ରହିଲେ ସକଳ ।
ମେରୁ ପର୍ବତର ଆଠ ଶୃଙ୍ଗରେ ଆଠଟି
ନଗର ସର୍ଜନା କଲେ ପୁଣି ପରମେଷ୍ଠି ।
ସେ ଆଠ ନଗରେ ଅଷ୍ଟ ଲୋକପାଳଙ୍କର
ବସତି ହୋଇଲା ଜାଣ ଆହେ ମୁନିବର ।
ତାହାର ମୂଳରେ କରି ଗୋଟିଏ ନଗରୀ
ବାସପାଇଁ ଅନନ୍ତଙ୍କୁ ଦେଲେ କ୍ଷୁଣଧାରୀ ।
ଊର୍ଦ୍ଧ୍ୱରେ ସପତ ସ୍ୱର୍ଗ ସରଜନା କଲେ
ସେମାନଙ୍କ ନାମ ଏବେ କହୁଅଛୁ ଭଲେ ।
ଭୂର୍ଲୋକ ଯେ ଭୁବର୍ଲୋକ ସ୍ୱର୍ଲୋକ ଆବର
ମହର୍ଲୋକ, ଜନଲୋକ, ତପଲୋକ ସାର ।
ସତ୍ୟଲୋକ ସହିତରେ ସାତଗୋଟି ସ୍ୱର୍ଗ ।
ବାସ କରନ୍ତି ତହିଁରେ ସାଧୁ ସନ୍ଥ ବର୍ଗ ।
ଶୃଙ୍ଗ ଶିଖେ ବ୍ରହ୍ମଲୋକ କଲେକ ନିର୍ମାଣ
ସେ ସ୍ଥାନରେ ଜରା ମୃତ୍ୟୁ ନ ବାଧଇ ଜାଣ ।
ତାହାର ଉପରେ ସରଜିଲେ ଧ୍ରୁବଲୋକ
ସମସ୍ତ ଲୋକରୁ ସେହୁ ଶୋଭାରେ ଅଧିକ ।
ତା’ ତଳରେ ସପ୍ତସଂଖ୍ୟା ପାତାଳ ସର୍ଜିଲେ
ସ୍ୱର୍ଗ ଅତିରିକ୍ତ ଭୋଗ ତହିଁ ରଖାଇଲେ ।
ସେହି ସବୁ ପାତାଳର ନାମ ଅଟେ ଏହି
ଅତଳ, ବିତଳ, ପୁଣି ସୁତଳ ବୋଲାଇ ।
ତଳାତଳ, ମହାତଳ, ପାତାଳ ଆବର
ରସାତଳ ଏହିପରି ସାତଗୋଟି ପୁର ।

କ୍ରମେ କ୍ରମେ ଅଧୋଦେଶେ କରଣ ନିର୍ମିତ
ସର୍ଜନା କାର୍ଯ୍ୟରୁ ବ୍ରହ୍ମା ହୋଇବେ ବିରତ ।
ଏହିରୂପେ ସପ୍ତଦ୍ୱୀପା ସପ୍ତସ୍ୱର୍ଗ ପୁଣି
ସପତ ପାତାଳ ତୁଲେ ଅଶେଷ ଧରଣୀ ।
ସରଜନା କରି ଧାତା ବ୍ରହ୍ମାଣ୍ଡ ଈଶ୍ୱର
ବୋଲାଇଲେ ଅହେ ଶୌନିକ ମୁନୀଶ୍ୱର ।

**ପୁଣି ବିପ୍ର ସୁଜନଙ୍କ କଥା ଏକ ଶୁଣ**
**ଏହି ଯେ ବ୍ରହ୍ମାଣ୍ଡ କଥା କରିଲୁ ବର୍ଣ୍ଣନ ।**
**ଅସଂଖ୍ୟ ବ୍ରହ୍ମାଣ୍ଡ ଅଛି ଏହି ପରକାର**
**କୃତ୍ରିମ ଅଟଇ ତାହା କହିଦେଲୁ ସାର ।**
**ପ୍ରତି ଲୋମକୂପ ମଧ୍ୟେ ମହା ବିଷ୍ଣୁଙ୍କର**
**ଏହିରୂପେ ସ୍ଥିତ ଏକ ଏକ ବ୍ରହ୍ମାଣ୍ଡର ।**
**ପ୍ରତି ବ୍ରହ୍ମାଣ୍ଡରେ ଛନ୍ତି ଯେତେ ଦିଗପାଳ**
**ବ୍ରହ୍ମା ବିଷ୍ଣୁ ମହେଶ୍ୱର ଆଦି କରି ଠୁଳ ।**

ନିଜ ନିଜ କାର୍ଯ୍ୟ ସର୍ବେ କରନ୍ତି ସମ୍ପନ୍ନ
ଦେବତା ମନୁଷ୍ୟ ଛନ୍ତି ଅନ୍ୟ ଜନ୍ତୁଗଣ ।
କୃଷ୍ଣଙ୍କ ମାୟାରେ ସର୍ବେ ହୋଇଣ ମୋହିତ
ବିବିଧ ଆକାରେ ଏଥେଁ ଛନ୍ତି ଅବସ୍ଥିତ ।
ଅଗଣ୍ୟ ଅଟଇ ଯେଣୁ ଏ ବିଶ୍ୱ ସଂସାର
ଗଣିବାକୁ ସାଧ କେବେଁ ନାହିଁ ଦେବଙ୍କର ।
ସ୍ୱୟଂ ବିଧି ବିଷ୍ଣୁ କିମ୍ବା ମହେଶ୍ୱରଙ୍କର
ସଂଖ୍ୟା କରିବାକୁ ଶକ୍ତି ନାହିଁଟି କାହାର ।

ଏକମାତ୍ର ପରଂବ୍ରହ୍ମ କୃଷ୍ଣ ନିରଞ୍ଜନ
ବିଶ୍ୱସଂଖ୍ୟା କରିବାକୁ ଅଟନ୍ତି ଭାଜନ ।
ଏ ବିଶ୍ୱସଂସାରେ ପୁଣି ବ୍ରହ୍ମାଣ୍ଡ ମଧ୍ୟସ୍ଥ
ଜୀବ ଜନ୍ତୁ ଆଦିକରି ଯାହା ଅବସ୍ଥିତ ।
ଏସବୁ କୃତ୍ରିମ ଅଟେ ଅହେ ତପୋଧନ
ସ୍ୱପ୍ନପରି ବିନଶ୍ୱର ଶାସ୍ତ୍ରର ବଚନ ।
ଗୋଲକ ବୈକୁଣ୍ଠପୁରୀ ପୁଣି ଶିବଲୋକ
ଏ ତିନି ନିତ୍ୟ ଅଟନ୍ତି ଶୁଣ ଆମ୍ଭ ବାକ୍ୟ ।
ଏହି ତିନିଙ୍କର ନାଶ କେବେହେଁ ନୁହଇ
ବ୍ରହ୍ମାଙ୍କର ଅଧିକାର ଏଠାରେ ନ ଥାଇ ।
ସଂସାରର ବାହ୍ୟଭୂତ ଏହି ଲୋକ ତ୍ରୟ
କହିଲୁଁ ତୁମ୍ଭଙ୍କୁ ଶୁଣି ଅହେ ମହୋଦୟ ।

—ବ୍ରହ୍ମବୈବର୍ତ୍ତ ପୁରାଣ

---

# ବିଶ୍ୱର ବିସ୍ମୟ

( ଆଧୁନିକ ବୈଜ୍ଞାନିକମାନଙ୍କ ମତରେ )

ସମୁଦ୍ରଜଳ ଉପରେ ଯେପରି ଠାଏ ଠାଏ ଫେଣ ଖଣ୍ଡ ଖଣ୍ଡ ହୋଇ ଭାସି ବୁଲୁଥାଏ, ସେହିପରି ମହାଶୂନ୍ୟ ଗର୍ଭରେ ଅସଂଖ୍ୟ ପୁଞ୍ଜୀଭୂତ ବସ୍ତୁ ଖଣ୍ଡ ଖଣ୍ଡ ରହିଥାନ୍ତି । ଏଗୁଡ଼ିକୁ ନୀହାରିକା କୁହାଯାଏ । ଏଗୁଡ଼ିକର ସୃଷ୍ଟି କିପରି ହେଲା ତା' ଏ ପର୍ଯ୍ୟନ୍ତ ରହସ୍ୟାବୃତ ହୋଇ ରହିଅଛି ?

**ଆହୁରି ଆଶ୍ଚର୍ଯ୍ୟର କଥା ଏହି ଯେ ଆମ ସର୍ଯ୍ୟପରି ଦଶହଜାର କୋଟି ସୂର୍ଯ୍ୟ ଗୋଟିଏ ଗୋଟିଏ** ନୀହାରିକାରେ ବିଦ୍ୟମାନ ।

ଅନ୍ଧକାର ରାତ୍ରିରେ ଆକାଶକୁ ଅନାଇଲେ ଆମେ ଅସଂଖ୍ୟ ତାରକା ଦେଖିବାକୁ ପାଉଁ । ତାରକାଗୁଡ଼ିକ ଆମକୁ ସିନା ଅସଂଖ୍ୟ ଦେଖାଯାନ୍ତି, କିନ୍ତୁ ପ୍ରକୃତରେ ବୈଜ୍ଞାନିକମାନେ ସେ-ଗୁଡ଼ିକୁ ଗଣି ଏଗୁଡ଼ିକର ସଂଖ୍ୟା ନିର୍ଣ୍ଣୟ କରିଛନ୍ତି । ଏମାନଙ୍କ ସଂଖ୍ୟା ଏତେ ବେଶି ଯେ ସହଜରେ ଆମ ବିଶ୍ୱାସ ଆସିବ ନାହିଁ । ଅନ୍ଧକାର ରାତ୍ରିର ଆକାଶରେ ଆମକୁ ଯେଉଁ ତାରା ଅସଂଖ୍ୟ ଦେଖା-ଯାନ୍ତି, ସେଗୁଡ଼ିକର ସଂଖ୍ୟା ପ୍ରକୃତରେ ତିନି ହଜାରରୁ ଅଧିକ ନୁହେଁ । ଆମେ ଏକ ସଙ୍ଗରେ ଏହି ଏକ ଆକାଶରେ ପ୍ରାୟ ଅଧେ ଦେଖିବାକୁ ପାଇବୁ । ସାରା ଆକାଶରେ ଆମ ଆଖିକୁ ଦିଶୁଥିବା ତାରାଗୁଡ଼ିକର ସଂଖ୍ୟା ଛ ହଜାରରୁ ଅଧିକ ନୁହେଁ । ଏହି ତାରାଗୁଡ଼ିକୁ ନେଇ ଆମେ ଗୋଟିଏ ନୀହାରିକାରେ ରହୁଛୁଁ । ଏହି ନୀହାରିକାଟି ମଧ୍ୟ ଖୁବ୍ ବଡ଼ । ଏହାର ନାମ ହେଉଛି ଛାୟାପଥ ନୀହାରିକା ଅନ୍ଧକାର ରାତ୍ରିରେ ଆମେ ଉତ୍ତର ଦକ୍ଷିଣ ହୋଇ ଯେଉଁ ଆଲୋକ ପଥ ଆକାଶରେ ଦେଖିବାକୁ ପାଉଁ, ତାକୁ କହନ୍ତି ଛାୟାପଥ । ପୂର୍ବେ ଏହି ଛାୟାପଥକୁ ଲୋକେ ଦେବତାମାନଙ୍କର ଯିବା ଆସିବା ପଥ ବୋଲି ଭାବୁଥିଲେ । କିନ୍ତୁ ଆଜକୁ ତିନିଶହ ବର୍ଷତଳେ ମନୀଷୀ ଗାଲିଲିଓ ଏହାକୁ ଦୂରବୀକ୍ଷଣରେ ପରୀକ୍ଷା କରି ଅସଂଖ୍ୟ ତାରକା-ସମ୍ବଳିତ ଯୋଗୁଁ ଏଭଳି ଆଲୋକିତ ବୋଲି ଦର୍ଶାଇଥିଲେ । ଏହି ଛାୟାପଥ ନୀହାରିକା ହେଲା ଆମ ନୀହାରିକା । ଏହାର ଆକାର ଅତି ବିରାଟ । ଏହି ନୀହାରିକାର ଗୋଟିଏ

ମୁଣ୍ଡରୁ ଅରମୁଣ୍ଡକୁ ଯିବାପାଇଁ ଆଲୋକକୁ ଛପନ ବର୍ଷରୁ ଅଧିକ ଲାଗିଯିବ । ଏହି ନୀହାରିକାରେ ଥିବା ତାରାଗୁଡ଼ିକର ସଂଖ୍ୟା ଦଶହଜାର କୋଟି ପାଖାପାଖି ।

ଆମେ ଆକାଶରେ ଯେଉଁ କ୍ଷୁଦ୍ର କ୍ଷୁଦ୍ର ତାରକା ଦେଖୁଁ, ସେଗୁଡ଼ିକ ପ୍ରକୃତରେ ଗୋଟିଏ ଗୋଟିଏ ସୂର୍ଯ୍ୟ । କେତେକ ଆକାରରେ ଆମ ସୂର୍ଯ୍ୟଠାରୁ ଢେର ବଡ଼ । ସେମାନେ ଆମଠାରୁ ଢେର ଦୂରରେ ରହିଥିବାରୁ ଆକାରରେ ଆମକୁ ଛୋଟ ଦେଖା-ଯାନ୍ତି । ଗୋଟିଏ ଗୋଟିଏ ତାରକା ଏତେ ବଡ଼ ଅଛନ୍ତି ଯେ ସେମାନେ ଯଦି ଆମ ସୂର୍ଯ୍ୟ ଯେଉଁଠି ଅଛି ସେଠିଥାନ୍ତେ, ତେବେ ସେମାନଙ୍କ ଉତ୍ତାପରେ ପୃଥିବୀ ଓ ଏହାର ଜୀବଜଗତ ଆଖି ପିଛୁଳାକେ ବାଷ୍ପ ହୋଇ କେଉଁଆଡ଼େ ଉଡ଼ିଯାଆନ୍ତେ ।

**ଆମ୍ଭମାନଙ୍କ ପୃଥିବୀପରି ତେର ଲକ୍ଷ ପୃଥିବୀ ଏକାଠି କରିଲେ ଯେତେ ବଡ଼ ହେବ ଏ ସୂର୍ଯ୍ୟର ଆକାର ସେତେ ।**

ଆମ୍ଭେମାନେ ଗୋଟିଏ ସୂର୍ଯ୍ୟ ଅଛି ବୋଲି ଜାଣୁ; କିନ୍ତୁ ମହାଶୂନ୍ୟରେ ଅସଂଖ୍ୟ ସୂର୍ଯ୍ୟ ଆମ କଥା ଛଳରେ କୁହାଯାଇଛି ଏବଂ ଏହିସବୁ ସୂର୍ଯ୍ୟ ପ୍ରତ୍ୟେକଙ୍କର ନିଜ ନିଜର ସୌର ଜଗତ ଅଛି ।

ପ୍ରତ୍ୟେକ ସୌର ଜଗତରେ ଏକାଧିକ ଗ୍ରହ, ଉପଗ୍ରହ, ଲଞ୍ଜାତାରା ଓ ଧୂମକେତୁ ଥିବାର ସମ୍ଭାବନା । ଆମ ସୌର ଜଗତର ପୃଥିବୀ ପୃଷ୍ଠରେ ଯେପରି ପ୍ରାଣିଜଗତ, ମଣିଷ ଆଦି ଅଛନ୍ତି, ସେହିଭଳି ଉପର୍ଯ୍ୟୁକ୍ତ କୋଟି କୋଟି ସୌର ଜଗତରେ ଅସଂଖ୍ୟ ଗ୍ରହ, ଉପଗ୍ରହ, ପ୍ରାଣିଜଗତ—ଏପରିକି ମଣିଷ ଥିବା ମଧ୍ୟ ସମ୍ଭବ । କିଏ କହିପାରିବ ସେସବୁ ଗ୍ରହରେ ଥିବା ମଣିଷମାନେ

ହୁଏତ ଆମ ଭଳି ବା ଆମଠାରୁ ଅଧିକ ସଭ୍ୟ ଓ ବିଜ୍ଞାନରେ ଅଧିକ ଉନ୍ନତ ନ ଥିବେ । ସେହିସବୁ ବିଷୟ ଜାଣିବାପାଇଁ ବୈଜ୍ଞାନିକମାନେ ଆଜିକାଲି ମହାକାଶ ଅଭିଯାନ ଦିଗରେ ଚେଷ୍ଟା ଚଳାଇଛନ୍ତି ।

ସୂର୍ଯ୍ୟର ପରମାୟୁ—ବୈଜ୍ଞାନିକମାନଙ୍କର ମତରେ ଆମ ସୂର୍ଯ୍ୟର ବୟସ ଛଅଶହ କୋଟି ବର୍ଷ ।

## ପୃଥିବୀ କଅଣ ?

ପୃଥିବୀ ଗୋଟିଏ ଗୋଲକାର ଜିନିଷ । କମଳା ଲେମ୍ବୁ ଯେପରି ତଳ ଉପର ପାଖରୁ ଟିକିଏ ଚେପ୍‌ଟା ହୋଇଥାଏ, ପୃଥିବୀ ସେହିପରି ଉତ୍ତର ଦକ୍ଷିଣ ହୋଇ ଅଳ୍ପ ଚେପ୍‌ଟା । ପୃଥିବୀର ଉପରୁ ତଳକୁ କଣାକରି ଯଦି ଖଣ୍ଡିଏ କାଠି ଏମୁଣ୍ଡରୁ ସେ ମୁଣ୍ଡକୁ ପୂରାଇବାକୁ ହୁଏ, ତେବେ ସେ କାଠିର ଲମ୍ବ ହେବ, ସାତହଜାର ନଅଶହ ମାଇଲ । ଏଥିରେ ପୃଥିବୀର ବିରାଟତ୍ୱ ସହଜରେ ଅନୁମେୟ ।

**ଅତି ବିସ୍ମୟର କଥା ଯେ, ପୃଥିବୀ କାହା ଉପରେ ଠିଆ ହୋଇନାହିଁ, କେବଳ ଶୂନ୍ୟରେ ଘୂରି ବୁଲୁଛି । କୋଟି କୋଟି ବର୍ଷ ହେଲାଣି ସେ ଖସି ନପଡ଼ି ସେହିପରି ଘୂରି ଘୂରି ବୁଲୁଚି । ପୃଥିବୀ ସୂର୍ଯ୍ୟର ଚାରିପଟେ ଘୂରୁଛି । ସେ ଘଣ୍ଟାକୁ ପ୍ରାୟ ଛଅଷଠିହଜାର ମାଇଲ ବେଗରେ ଗତି କରୁଅଛି । ପୃଥିବୀର ମାଟିଅଂଶ ବା ସ୍ଥଳଭାଗ ହେଉଛି ପାଞ୍ଚକୋଟି ପଞ୍ଚସ୍ତରି ଲକ୍ଷ ଦଶହଜାର ବର୍ଗ**

ମାଇଲ । ପାଣି ଅଂଶ ହେଉଛି, ତେରକୋଟି ଚଉରାନବେ ଲକ୍ଷ, ଚାଳିଶ ହଜାର ବର୍ଗ ମାଇଲ ।

ଆକାଶରେ ବହୁ ସଂଖ୍ୟକ ଧୂମକେତୁ ଅଛନ୍ତି ।

ଗୋଟିଏ ବୃହତ୍ତମ ଧୂମକେତୁର ମସ୍ତକର ବ୍ୟାସର ପରିମାଣ ଅଢ଼େଇଲକ୍ଷ ମାଇଲ ଓ ତାହାର ପୁଚ୍ଛର ଦୈର୍ଘ୍ୟ ପ୍ରାୟ ସାଢ଼େ ୫୦ର କୋଟି ମାଇଲ । ଏହା ସୂର୍ଯ୍ୟ ନିକଟବର୍ତ୍ତୀ ଥିଲାବେଳେ ପ୍ରାୟ ଘଣ୍ଟାକେ ବାର ଲକ୍ଷରୁ ଊର୍ଦ୍ଧ୍ୱ ମାଇଲ ବେଗରେ ଗତି କରେ; କିନ୍ତୁ ଦୂରକୁ ଗତିକଲେ ଘଣ୍ଟାକୁ ପ୍ରାୟ ଆଠ ମାଇଲ ବେଗରେ ଗତିକରେ । ଏହି ବିଶିଷ୍ଟ ଧୂମ-କେତୁଟି ଥରେ ସୂର୍ଯ୍ୟ ପ୍ରଦକ୍ଷିଣ କରିବାକୁ ନଅହଜାର ବର୍ଷ ନିଏ ।

## ବୃହତ୍ତମ ନକ୍ଷତ୍ର

ଏ ପର୍ଯ୍ୟନ୍ତ ଜଣାଥିଲା ଯେ 'ଅରିଗା' ନକ୍ଷତ୍ରପୁଞ୍ଜର 'ଏପ୍‌ସିଲୋନ୍' ସବୁଠାରୁ ବଡ଼ ନକ୍ଷତ୍ର । ତାହାର ବ୍ୟାସ ସୂର୍ଯ୍ୟର ବ୍ୟାସର ତିନି ହଜାର ଗୁଣ । ଆୟତନରେ ସବୁ ନକ୍ଷତ୍ର ସମାନ ନୁହନ୍ତି । ଆୟତନରେ ଆର୍ଦ୍ରା ନକ୍ଷତ୍ରର ବ୍ୟାସ କୋଡ଼ିଏକୋଟି ମାଇଲ । 'ଅନ୍ତାରସ' ନକ୍ଷତ୍ରର ଆୟତନ ଏହାର ଦୁଇଗୁଣ, ଅର୍ଥାତ୍ ଚାଳିଶ କୋଟି ମାଇଲ ।

କିନ୍ତୁ 'ହରକୁଲେସ୍' ନକ୍ଷତ୍ରପୁଞ୍ଜର 'ଆଲଫା' ନକ୍ଷତ୍ର ଉପର୍ଯ୍ୟୁକ୍ତ 'ଏପସିଲୋନ୍' ଠାରୁ ବହୁ ଗୁଣରେ ବଡ଼ । ଅଳ୍ପଦିନ ହେଲା ନିର୍ଦ୍ଧାରିତ ହୋଇଛି ଯେ, 'ଆଲଫା'ର ବ୍ୟାସ

ସୂର୍ଯ୍ୟ ର ବ୍ୟାସର ଦୁଇଲକ୍ଷ ଗୁଣ ହେବ ଓ ଏହା ପୃଥିବୀ -ଠାରୁ ବହୁ ଦୂରରେ ଅବସ୍ଥିତ । ସୂର୍ଯ୍ୟଙ୍କଠାରୁ ଆସୁଥିବା ଆଲୋକ ଆଠ ମିନିଟ ଅଠର ସେକେଣ୍ଡରେ ପୃଥିବୀ ପୃଷ୍ଠରେ ପହଞ୍ଚେ । କିନ୍ତୁ ଉକ୍ତ ନକ୍ଷତ୍ରରୁ ଆଲୋକ ଆସି ପୃଥିବୀରେ ପହଞ୍ଚିବାପାଇଁ ବାରଶହ ବର୍ଷ ଲାଗିଯାଏ । ତେଣୁ ଏହାର ପୃଥିବୀଠାରୁ ଦୂରତ୍ୱ ସହଜରେ ଅନୁମେୟ ।

'ଆର୍ଦ୍ରା' ନକ୍ଷତ୍ରର ଆଲୋକ ପୃଥିବୀକୁ ଆସିବାକୁ ୧୯୦ ବର୍ଷ ଲାଗେ ।

ପୃଥିବୀର ସବୁଠାରୁ ଦୂରରେ ଥିବା ନୀହାରିକା ହେଉଛି 'ଆଣ୍ଡ୍ରୋମେଡ଼ା' ନୀହାରିକା । ଏହାର କିରଣ ଏକ ସେକେଣ୍ଡରେ ଏକ ଲକ୍ଷ ଛୟାଅଶି ହଜାର ମାଇଲ ବେଗରେ ଗତିକରି ପୃଥିବୀକୁ ଆସେ ଏବଂ ପନ୍ଦର ଲକ୍ଷ ବର୍ଷରେ ପୃଥିବୀରେ ପହଞ୍ଚେ ।

ମନୁଷ୍ୟ ନିର୍ମିତ ରକେଟ୍‌ର ସର୍ବଶ୍ରେଷ୍ଠ ଗତି ଏକ ଘଣ୍ଟାକୁ ପଚିଶ ହଜାର ମାଇଲ ଗଲାବେଳେ ନୀହାରିକା ଏକ ସେକେଣ୍ଡକୁ ଅଠତିରିଶ ହଜାର ମାଇଲରୁ ପଞ୍ଚସ୍ତରୀ ହଜାର ମାଇଲ ବେଗରେ ଗତି କରୁଛନ୍ତି ।

ଏହି ଗତିରେ ପୃଥିବୀରୁ ଯାତ୍ରାକଲେ ଅତି କମ୍‌ରେ ନିକଟତମ ଗ୍ରହ ଶୁକ୍ରରେ ପହଞ୍ଚିବାକୁ ଏକ ମାସ ତିନି ଦିନ ଲାଗିବ ।

କିନ୍ତୁ ନିକଟତମ ତାରକାରେ ପହଞ୍ଚିବାକୁ ଶହେ କୋଡ଼ିଏ ହଜାର ବର୍ଷ ଲାଗି ଲାଗିବ ।

**ପୂର୍ଣ୍ଣଚନ୍ଦ୍ରଠାରୁ ଆମେ ଯେତେ ଆଲୋକ ପାଉଁ ସୂର୍ଯ୍ୟଠାରୁ ତାର ଛଅଲକ୍ଷ ଗୁଣ ଅଧିକ ଆଲୋକ ପାଉଁ ।**

**ଆଶ୍ଚର୍ଯ୍ୟର କଥା ଏହି ଯେ ଆମ ଆକାଶର ଦ୍ୱିତୀୟ ଉଜ୍ଜ୍ୱଳତମ ତାରକା ଅଗସ୍ତି ନକ୍ଷତ୍ରର ଆଲୁଅ ଅଶି ହଜାର ସୂର୍ଯ୍ୟ ଆଲୁଅ ସଙ୍ଗେ ସମାନ । ସମୁଦାୟ ସୌର ରଶ୍ମିର ଦୁଇ ଶହ କୋଟି ଭାଗରୁ ଏକ ଭାଗ ପୃଥିବୀ ଉପରେ ପଡ଼େ ।**

ପ୍ରତି ପଚାଶହଜାର ବର୍ଷରେ ପୃଥିବୀର ଦିନ ଏକସେକେଣ୍ଡ ହିସାବରେ ବଢ଼ୁଛି ।

ଆମ ବୈଜ୍ଞାନିକମାନେ ବିଶ୍ୱର ଯେଉଁ କଳ୍ପନା କରିଛନ୍ତି ତାହା ଅତି ବିରାଟ । ଆମେ ଯଦି ଆଲୋକ ବେଗରେ ଗତି କରୁଁ, ତେବେ ବିଶ୍ୱ ଘୂରିପାଖରେ ଘୂରି ଆସିବାପାଇଁ ଆମକୁ ୫ ହଜାର କୋଟି ବର୍ଷରୁ କମ୍ ଲାଗିବ ନାହିଁ । ଏହି ବିଶ୍ୱର ଆକାର ପୁଣି ଦିନକୁ ଦିନ ବଢ଼ି ଚାଲିଛି । ବିରାଟ ମହାଶୂନ୍ୟ ମଧ୍ୟରେ ମନେହୁଏ ସତେ ଯେପରି 'ବିଶ୍ୱ' ଗୋଟିଏ ବେଲୁନ ପରି ଫୁଲି ରହିଛି, କିନ୍ତୁ ନୀହାରିକାମାନଙ୍କର ଗତିର ଶେଷ କେଉଁଠି ? ମହାଶୂନ୍ୟ ଗର୍ଭରେ କ'ଣ ଏଗୁଡ଼ିକ ଅନନ୍ତକାଳ ଯାଏ ଗତି କରୁଥିବେ ? ଏହାର ଉତ୍ତର ଏପର୍ଯ୍ୟନ୍ତ ବିଜ୍ଞାନ ପାଇନାହିଁ ।"

ହେ ଅନନ୍ତ ମହାପ୍ରଭୋ । କେ ପାରିବ ବର୍ଣ୍ଣି
ତୋର ମହିମାର କଥା, ଅପାର ଅଗମ୍ୟ,
ତତ୍ତ୍ୱର ଅତୀତ, ବିଭୋ । କି ବୁଝିବି ମୁହିଁ
ଜ୍ଞାନ ବୁଦ୍ଧି ପରାଜିତ ତୋ ତତ୍ତ୍ୱ ଚିନ୍ତାରେ ।

ତୋହର ମହିମା ଗୁଣେ ଦ୍ୱିଲୋକ ଭୂଲୋକ
କୋଟି ବିଶ୍ୱ, କୋଟି ସୂର୍ଯ୍ୟ, କୋଟି ଚନ୍ଦ୍ର, ତାରା,
ଅଗଣିତ ଜୀବସଣି ସ୍ତବ୍ଧ ବିସ୍ମୟେ
ସେ ମହିମା, କ୍ଷୁଦ୍ର ମୁହିଁ, କେମନ୍ତେ ବୁଝିବି ?
ମୋହର ଏ କ୍ଷୁଦ୍ର ଆତ୍ମା ବିସ୍ମୟେ ସ୍ତବ୍ଧ
ଭୟେ ଅବସନ୍ନ ଧ୍ୟାଇ ସେ ମହିମା ତତ୍ତ୍ୱ,
ଆକୁଳେ ଲୋଡ଼ଇ ଆଶ୍ରା ତୋ ଅନନ୍ତ କୋଡ଼େ ।

—ଭକ୍ତକବି ମଧୁସୂଦନ

---

# ଭଗବାନ ଶବ୍ଦର ଅର୍ଥ କଅଣ

ଭଗବାନ ଶବ୍ଦର ଅର୍ଥ—ଷଡ଼େଶ୍ବର୍ଯ୍ୟଶାଳୀ ଷଡୈଶ୍ବର୍ଯ୍ୟ ଯଥା—"ପରିପୂର୍ଣ୍ଣ ପ୍ରଭୁତ୍ୱ, ପରିପୂର୍ଣ୍ଣ ବୀର୍ଯ୍ୟ, ପରିପୂର୍ଣ୍ଣ ଯଶ,ପରିପୂର୍ଣ୍ଣ ଶ୍ରୀ, ପରିପୂର୍ଣ୍ଣ ଜ୍ଞାନ ଏବଂ ପରିପୂର୍ଣ୍ଣ ବୈରାଗ୍ୟ ।

ଏହି ଛଅଗୋଟି ପଦାର୍ଥକୁ ଷଡୈଶ୍ବର୍ଯ୍ୟ କୁହାଯାଏ ଏବଂ ଏହାକୁ 'ଭଗ' ନାମରେ ଅଭିହିତ କରାହୁଏ । ଏହି 'ଭଗ' ଯାହାଙ୍କର ଭୂତ, ଭବିଷ୍ୟତ, ବର୍ତ୍ତମାନ ତିକାଳରେହିଁ ବିଦ୍ୟମାନ ସେ ହେଉଛନ୍ତି ଭଗବାନ୍ ।

ଏହି ଛଅଗୋଟି ଐଶ୍ବର୍ଯ୍ୟ ଏକମାତ୍ର ସୃଷ୍ଟି, ସ୍ଥିତି, ପ୍ରଳୟକର୍ତ୍ତା ପରାତ୍ପର ଅଖିଳ ବ୍ରହ୍ମାଣ୍ଡେଶ୍ୱରଙ୍କ ବ୍ୟତୀତ ଅନ୍ୟ କାହାର ଥାଇ ନ ପାରେ । ଏହାକୁହିଁ ଉପାସନା କରି ପାରିଲେ ଜୀବ ମାୟାବନ୍ଧନରୁ ମୁକ୍ତ ହୋଇ ଅଭୟପ୍ରାପ୍ତ ହୋଇପାରେ ।

—ଭାଗବତ—

# ଈଶ୍ୱରଙ୍କର ବିଭିନ୍ନ ନାମର ପରିକ୍ରମ

ଯେ ପରମାତ୍ମା ପରମେଶ୍ୱର ସମସ୍ତ ଜଗତ ନିର୍ମାଣ କରିଛନ୍ତି ସେ ବ୍ରହ୍ମା, ସେ ସର୍ବତ୍ର ବ୍ୟାପକ ହେବାରୁ ତାହାଙ୍କ ନାମ ବିଷ୍ଣୁ, ଦୁଷ୍ଟମାନଙ୍କୁ ଦଣ୍ଡ ଦେଇ ସେମାନଙ୍କୁ କନ୍ଦାଇବାରୁ ତାହାଙ୍କ ନାମ ରୁଦ୍ର, ମଙ୍ଗଳମୟ ପୁଣି ସମସ୍ତଙ୍କ କଲ୍ୟାଣକାରୀ ହେବାରୁ ତାହାଙ୍କ ନାମ ଶିବ, ସର୍ବଦା ଅବିନଶ୍ୱର ହେବା ହେତୁ ସେ ଅକ୍ଷର, ସ୍ୱୟଂ ପ୍ରକାଶମାନ ଥିବାରୁ ସ୍ୱରାଟ୍, ପ୍ରଳୟ ସମୟରେ ସମସ୍ତଙ୍କର କାଳ ଏବଂ କାଳର କାଳ ହେବାରୁ ତାହାଙ୍କ ନାମ କାଳାଗ୍ନି, ପୁଣି ପ୍ରାଣୀ ଓ ବସ୍ତୁର ବର୍ଦ୍ଧକ ଓ ସୁଖ କାରକ ହେବା ହେତୁ ତାହାଙ୍କ ନାମ ଚନ୍ଦ୍ରମା ।

ଓଁ ଇନ୍ଦ୍ରଂ ମିତ୍ରଂ ବରୁଣମଗ୍ନି ମାହୁ ରଥୋ
ଦିବ୍ୟାସ୍ସ ସୁପର୍ଣ୍ଣୋ ଗରୁତ୍ମାନ୍
ଏକଂ ସଦ୍ୱିପ୍ରା ବହୁଧା ବଦନ୍ତ୍ୟଗ୍ନିଂ ଯମଂ
ମାତରିଶ୍ୱାନ ମାହୁଃ । ଋଗ୍ ।

ପରମେଶ୍ୱର ଏକ ଅଦ୍ୱିତୀୟ ଅଟନ୍ତି, ଅଥଚ ଇନ୍ଦ୍ରାଦି ବିଭିନ୍ନ ନାମରେ ବିଦିତ ହୁଅନ୍ତି । ସମସ୍ତ ଜ୍ୟୋତିର୍ମୟ ପଦାର୍ଥରେ ବ୍ୟାପକ ଏବଂ ସକଳ ଜ୍ୟୋତିର ମୂଳାଧାର ହେବାରୁ ତାହାଙ୍କ ନାମ ଦିବ୍ୟ, ସୃଷ୍ଟିର ସଂରକ୍ଷକ, ପାଳକ ଏବଂ ପୂର୍ଣ୍ଣକର୍ମୀ ହେବାରୁ ତାହାଙ୍କ ନାମ ସୁପର୍ଣ୍ଣା, ସ୍ୱଭାବରେ ବୃହତ୍ ଅର୍ଥାତ୍ ମହାନ୍ ଆତ୍ମା ହେବାରୁ ଗରୁତ୍ମାନ୍, ବାୟୁ ପରି ଅନନ୍ତ ବଳବାନ୍ ହେବାରୁ ତାହାର ନାମ ମାତରିଶ୍ୱା; କିନ୍ତୁ ପରମେଶ୍ୱର ଛଡ଼ା

ଅନ୍ୟାନ୍ୟ ବ୍ୟକ୍ତି ବା ବସ୍ତୁର ମଧ୍ୟ ବିଶିଷ୍ଟ ଆଦି , ନାମ ଅଛି ।
ଅତଏବ ସେହି ସବୁ ନାମ ପରମେଶ୍ୱରଙ୍କର ବା ଅନ୍ୟ କୌଣସି
ବସ୍ତୁର, ପ୍ରସଙ୍ଗ ଭେଦରୁ ଜାଣିବାକୁ ହେବ ।

---

# ସମସ୍ତ ବିଭୂତି ମୂଳ ଭଗବାନ

( ଭଗବାନ କେଉଁଠାରେ ଓ କାହା ଭିତରେ ଥାଆନ୍ତି )

ସବୁ ପ୍ରାଣୀଙ୍କ ଭିତରେ ପରମାତ୍ମା ରୂପେ ମୁଁ ରହିଅଛି ।

ଦ୍ୱାଦଶ ଆଦିତ୍ୟଙ୍କ ମଧ୍ୟରେ ମୁଁ ବିଷ୍ଣୁ
ଗ୍ରହ ଉପଗ୍ରହମାନଙ୍କ ମଧ୍ୟରେ ମୁଁ ସୂର୍ଯ୍ୟ
ନକ୍ଷତ୍ରମାନଙ୍କ ମଧ୍ୟରେ ମୁଁ ଚନ୍ଦ୍ର
ଅଣଚାଶ ପବନ ମଧ୍ୟରେ ମୁଁ ମରୀଚି
ଦେବତାମାନଙ୍କ ମଧ୍ୟରେ ମୁଁ ଇନ୍ଦ୍ର
ଏଗାର ରୁଦ୍ରଙ୍କ ମଧ୍ୟରେ ମୁଁ ଶଙ୍କର
ଦେବର୍ଷିମାନଙ୍କ ମଧ୍ୟରେ ମୁଁ ନାରଦ
ଋଷିମାନଙ୍କ ମଧ୍ୟରେ ମୁଁ ଭୃଗୁ
ମୁନିମାନଙ୍କ ମଧ୍ୟରେ ମୁଁ ବେଦବ୍ୟାସ
ସିଦ୍ଧମାନଙ୍କ ମଧ୍ୟରେ ମୁଁ କପିଳ
ଗନ୍ଧର୍ବମାନଙ୍କ ମଧ୍ୟରେ ମୁଁ ଚିତ୍ରରଥ
ନାରୀମାନଙ୍କ ମଧ୍ୟରେ ମୁଁ କୀର୍ତ୍ତି,
ଶ୍ରୀ, ବାକ୍, ସ୍ମୃତି, ମେଧା, ଧୃତି ଓ
କ୍ଷମା ଏହି ସପ୍ତ ମାତୃଦେବୀ ।

ଦୈତ୍ୟମାନଙ୍କ ମଧ୍ୟରେ ମୁଁ ପ୍ରହ୍ଲାଦ
ପାଣ୍ଡବମାନଙ୍କ ମଧ୍ୟରେ ମୁଁ ଧନଞ୍ଜୟ
କବିମାନଙ୍କ ମଧ୍ୟରେ ମୁଁ ଶୁକ୍ରାଚାର୍ଯ୍ୟ
ଠକମାନଙ୍କ ମଧ୍ୟରେ ମୁଁ ଜୁଆଖେଳ,
ଜେତାମାନଙ୍କର ଜୟ,
ବ୍ୟବସାୟୀମାନଙ୍କ ମଧ୍ୟରେ ବ୍ୟବସାୟ ଓ
ସାତ୍ତ୍ୱିକମାନଙ୍କ ମଧ୍ୟରେ ସତ୍ତ୍ୱ ଅଟେ ।
ସମସ୍ତ ଗ୍ରହମାନଙ୍କ ମଧ୍ୟରେ ମୁଁ ବୃହସ୍ପତି
କୋଟିଏ ଧନବାନ୍ ମଧ୍ୟରେ କୁବେର
ମନୁଷ୍ୟମାନଙ୍କ ମଧ୍ୟରେ ମୁଁ ରାଜା
ରାଜାମାନଙ୍କ ମଧ୍ୟରେ ମୁଁ ମନୁ
ସବୁ ପ୍ରାଣୀଙ୍କ ଜନ୍ମର କାରଣ ହୋଇଥିବାରୁ ମୁଁ କନ୍ଦର୍ପ
ସବୁପ୍ରାଣୀଙ୍କ ସଂହାର କରିବାରେ ମୁଁ ମୃତ୍ୟୁ
ଇନ୍ଦ୍ରିୟମାନଙ୍କ ମଧ୍ୟରେ ମୁଁ ମନ
ତେଜସ୍ୱୀମାନଙ୍କର ମୁଁ ତେଜ
ଯଜ୍ଞମାନଙ୍କ ମଧ୍ୟରେ ମୁଁ ଜପଯଜ୍ଞ
ଅସ୍ତ୍ରମାନଙ୍କ ମଧ୍ୟରେ ମୁଁ ବଜ୍ର
ଅସ୍ତ୍ରଧାରୀମାନଙ୍କ ମଧ୍ୟରେ ମୁଁ ରାମ
ସେନାପତିମାନଙ୍କ ମଧ୍ୟରେ ମୁଁ କାର୍ତ୍ତିକେୟ
ଅଷ୍ଟବସୁ ମଧ୍ୟରେ ମୁଁ ଅଗ୍ନି
ଜଳାଶୟ ମଧ୍ୟରେ ମୁଁ ସମୁଦ୍ର
ନଦୀମାନଙ୍କ ମଧ୍ୟରେ ମୁଁ ଗଙ୍ଗା
ପର୍ବତମାନଙ୍କ ମଧ୍ୟରେ ମୁଁ ହିମାଳୟ
ତରୁଲତାଙ୍କ ମଧ୍ୟରେ ମୁଁ ଅଶ୍ୱତ୍ଥ

ସମସ୍ତ ଫଳମାନଙ୍କ ମଧ୍ୟରେ ମୁଁ ଧାନ୍ୟ
ମାସମାନଙ୍କ ମଧ୍ୟରେ ମୁଁ ମାର୍ଗଶିର
ଋତୁମାନଙ୍କ ମଧ୍ୟରେ ମୁଁ ବସନ୍ତ
ଗାଭିମାନଙ୍କ ମଧ୍ୟରେ ମୁଁ କାମଧେନୁ
ହସ୍ତୀମାନଙ୍କ ମଧ୍ୟରେ ମୁଁ ଐରାବତ
( ସମୁଦ୍ର ମନ୍ଥନବେଳେ ଯେଉଁ
ଉଚ୍ଚୈଶ୍ରବା ଅଶ୍ୱ ବାହାରିଥିଲା )
ଅଶ୍ୱମାନଙ୍କ ମଧ୍ୟରେ ମୁଁ ସେହି ଉଚ୍ଚୈଶ୍ରବା
ପଶୁମାନଙ୍କ ମଧ୍ୟରେ ମୁଁ ସିଂହ
ପକ୍ଷିମାନଙ୍କ ମଧ୍ୟରେ ମୁଁ ଗରୁଡ଼
ସର୍ପମାନଙ୍କ ମଧ୍ୟରେ ମୁଁ ବାସୁକି
ନାଗମାନଙ୍କ ମଧ୍ୟରେ ମୁଁ ଅନନ୍ତ
ଜଳଚରମାନଙ୍କର ରାଜା ମୁଁ ବରୁଣ
ମାଛମାନଙ୍କ ମଧ୍ୟରେ ମୁଁ ମକର ।

---

## ସମସ୍ତ ପଦାର୍ଥର କାରଣ ସ୍ୱରୂପ ଭଗବାନଙ୍କର ବ୍ୟାପକତା

"ସମସ୍ତ ସୃଷ୍ଟି ମୋଠାରୁ । ସେସବୁ ମୋର ମାୟାରୂପୀ ଅଙ୍ଗ ପ୍ରତ୍ୟଙ୍ଗ ମାତ୍ର । ହେ କୁନ୍ତୀନନ୍ଦନ ! ମୁଁ ଜଳରେ ରସ, ଚନ୍ଦ୍ର ଓ ସୂର୍ଯ୍ୟଙ୍କଠାରେ ପ୍ରଭା, ସବୁ ବେଦରେ ପ୍ରଣବ, ଆକାଶରେ ଶବ୍ଦ ଏବଂ ମନୁଷ୍ୟ-ମାନଙ୍କ ଭିତରେ ପୌରୁଷ ବା କର୍ମ ରୂପରେ

**ବିଦ୍ୟମାନ ଅଛି । ଆହୁରି ମଧ୍ୟ ମୁଁ ପୃଥିବୀରେ ପବିତ୍ର ଗନ୍ଧ, ଅଗ୍ନିରେ ତେଜ, ସର୍ବଭୂତରେ ଜୀବନ ଓ ତପସ୍ୱୀମାନଙ୍କ ମଧ୍ୟରେ ତପସ୍ୟା ରୂପରେ ଜଡ଼ିତ ହୋଇ ରହିଅଛି । ହେ ପାର୍ଥ । ମୁଁ ସମସ୍ତ ଭୂତ ପ୍ରାଣୀଙ୍କର ସନାତନ ବା ସର୍ବପ୍ରଥମ ବୀଜ ଅଟେ । ମୁଁ ବୁଦ୍ଧିମାନଙ୍କର ବୁଦ୍ଧି, ତେଜସ୍ୱୀମାନଙ୍କର ତେଜ, ବଳବାନ୍ ବ୍ୟକ୍ତିଙ୍କର ସ୍ୱଧର୍ମ ରକ୍ଷାପାଇଁ ଉପଯୋଗୀ ବଳ ମୁଁ ଅଟେ ।"**

—ଗୀତା

---

## ଈଶ୍ୱରଙ୍କ ନାମ

ସର୍ବଦା ଈଶ୍ୱରଙ୍କ ନାମ, ଗୁଣ ଗାନକରିବ ଏବଂ ସତ୍‌ସଙ୍ଗ କରିବ । ଭକ୍ତ ବା ସାଧୁ ଏମାନଙ୍କ ପାଖକୁ ମଝିରେ ମଝିରେ ଯିବା ଭଲ । ମଝି ମଝିରେ ନିର୍ଜନକୁ ଯାଇ ତାଙ୍କ ଚିନ୍ତା କରିବା ବଡ଼ ଦରକାର । ନିର୍ଜନ ବାସ ନ ହେଲେ ଈଶ୍ୱରଙ୍କଠାରେ ମନ ରଖିବା ବଡ଼ କଠିନ ।

କଚ୍ଛପ ପାଣିରେ ଏଣେତେଣେ ବୁଲୁଥାଏ, କିନ୍ତୁ ତାହାର ମନ ତାହାର ଶାବକମାନଙ୍କ ନିକଟରେ ଥାଏ । ସଂସାରରେ ସମସ୍ତ କର୍ମ କରିବ, କିନ୍ତୁ ଈଶ୍ୱରଙ୍କଠାରେ ମନ ରଖିଥିବ ।

ସଂସାର କରୁଛ ଏଥିରେ ଦୋଷ ନାହିଁ, ତେବେ ଈଶ୍ୱରଙ୍କ ଆଡ଼କୁ ମନ ଦେବାକୁ ହେବ, ତାହା ନ ହେଲେ ଚଳିବ ନାହିଁ । ଏକ ହାତରେ କର୍ମ କର, ଅନ୍ୟ ଏକ ହାତରେ ଈଶ୍ୱରଙ୍କୁ ଧରିଥାଅ । କର୍ମ ଶେଷ ହେଲେ ଦୁଇ ହାତରେ ଈଶ୍ୱରଙ୍କୁ ଧରିବ ।

ଭଗବାନଙ୍କ ନାମ ନେଲେ ମନୁଷ୍ୟର ଦେହ ମନ ସବୁ ଶୁଦ୍ଧ ହୋଇଯାଏ ।

ଈଶ୍ୱରଙ୍କ ନାମର ଭାରି ମାହାତ୍ମ୍ୟ । ଶୀଘ୍ର ଫଳ ଫଳି ନ ପାରେ, କିନ୍ତୁ ଯେତେବେଳେ ହେଉ ଫଳିବ ହିଁ ଫଳିବ ।

—ଶ୍ରୀରାମକୃଷ୍ଣ ଉପଦେଶାମୃତ—

## ଈଶ୍ୱର ପ୍ରେମ

ଈଶ୍ୱରଙ୍କଠାରେ ପୂରା ମନ ଦିଅ । ତାହାଙ୍କର ପ୍ରେମ ସାଗରରେ ଝାସଦିଅ, ବୁଡ଼ିଯାଅ । ଏ ସମୁଦ୍ରରେ ବୁଡ଼ ପକାଇଲେ ମରିବାର ଭୟ ନାହିଁ । ଏ ପରା ଅମୃତ ସାଗର । ମନୁଷ୍ୟ ଏ ସାଗରରେ ବୁଡ଼ିଲେ ଅମର ହୁଏ । ଈଶ୍ୱରଙ୍କପାଇଁ ପାଗଳ ହେଲେ, ମନୁଷ୍ୟର ମସ୍ତିଷ୍କ ଖରାପ ହୁଏ ନାହିଁ ।

## ବିଭିନ୍ନ କ୍ଷେତ୍ରରେ ନାମ ସ୍ମରଣ

ବିଷ୍ଣୁଙ୍କର ଷୋଳନାମ କର ହେ ଶ୍ରବଣ,
ସର୍ବପାପହାରୀ ମହାପୁଣ୍ୟପ୍ରଦ ଜାଣ ।
ଔଷଧ ସେବନକାଳେ ଶ୍ରୀବିଷ୍ଣୁ ସ୍ମରିବ,
ଭୋଜନକାଳରେ ଜନାର୍ଦ୍ଦନ ଉଚ୍ଚାରିବ ।
ଶୟନକାଳରେ ପଦ୍ମନାଭଙ୍କୁ ଭଜିବ,
ବିବାହେ ଶ୍ରୀ ପ୍ରଜାପତି ନାମ ସୁମରିବ ।
ଯୁଦ୍ଧେ ଚକ୍ରଧର ପ୍ରବାସରେ ତ୍ରିବିକ୍ରମ,
ମୃତ୍ୟୁକାଳେ ଉଚ୍ଚାରିବ ନାରାୟଣ ନାମ ।
ପ୍ରିୟଜନ ସମାଗମେ ଶ୍ରୀଧର ସ୍ମରଣ,
ଦୁଃସ୍ୱପ୍ନେ ଗୋବିନ୍ଦ ନାମ ମୁଖେ ଉଚ୍ଚାରଣ ।

ବିପଦେ ମଧୁସୂଦନ ନାମକୁ ରଟିବ,
ବନ ମଧ୍ୟେ ନରସିଂହ ନାମ ଉଚ୍ଚାରିବ ।
ଅଗ୍ନି ମଧ୍ୟେ ସୁମରିବ ଜଳଶାୟୀ ନାମ,
ଜଳ ମଧ୍ୟରେ ବରାହ କରିବ ସ୍ମରଣ ।
ପର୍ବତେ ରଘୁନନ୍ଦନ ଶ୍ରୀରାମ ରାଘବ,
ଯାତ୍ରାକାଳେ ଉଚ୍ଚାରିବ ଶ୍ରୀବାମନ ଦେବ ।
ସକଳ କାର୍ଯ୍ୟେ ସ୍ମରିବ ମାଧବ ମାଧବ,
ଏ ନାମ ସ୍ମରଣେ ଭବ ବାଧା ଭୟ ଯିବ ।
ଏହି ଯେ ଷୋଡ଼ଶ ନାମ ପରମ ପାବନ,
ପ୍ରତିଦିନ ପ୍ରାତଃକାଳେ ଉଠି ଯେଉଁ ଜନ ।
ବିଷ୍ଣୁଙ୍କର ଏ ନାମକୁ ଉଚ୍ଚାରଣ କରେ,
ସର୍ବ ପାପ ଧ୍ୱଂସ ହୋଇ ପୁଣ୍ୟ ମିଳେ ବାରେ ।

—ବୃହତ୍ ବ୍ରହ୍ମପୁରାଣ—

---

## ନାମ ମାହାତ୍ମ୍ୟ

ନାମହିଁ ପରମ ତୀର୍ଥ, ନାମହିଁ ପୁଣ୍ୟ ତୀର୍ଥ, ନାମହିଁ ପରମ ଦେବ, ନାମହିଁ ପରମ ତପସ୍ୟା, ନାମହିଁ ପରମ ଦାନ, ନାମହିଁ ପରମ ଧର୍ମ, ନାମହିଁ ପରମ ଭକ୍ତ, ନାମହିଁ ପରମ ଗତି, କେବଳ 'ନାମ' ମୁକ୍ତି ଦେଇପାରେ ।

କଳିଯୁଗରେ ନାମରୂପରେ ଭଗବାନ ଅଛିଅଛନ୍ତି । ସାଧୁମାନଙ୍କର ଉଦ୍ଧାର, ଦୁଷ୍ଟ ପାପିଷ୍ଠମାନଙ୍କର ବିନାଶ ଏବଂ ଧର୍ମରକ୍ଷା କରିବାକୁ ଭଗବାନ ନାମରୂପେ ଅବତାର ଗ୍ରହଣ କରିଅଛନ୍ତି

ଭଗବାନ କହୁଅଛନ୍ତି, "ନାମ ମୁଁ, ମୁହିଁ ନାମ ।" ନାମ ଆଉ ଭଗବାନ ଏକ, ଅଲଗା ନୁହନ୍ତି । ନାମ କରିବା ଆଉ ଭଗବାନଙ୍କ ସଙ୍ଗେ ରହିବା ଏକ କଥା । ନାମ କୀର୍ତ୍ତିନହିଁ ପରମ ଜ୍ଞାନ, ପରମ-ତତ୍ତ୍ୱ ଓ ପରମ ତପସ୍ୟା । ଏ କଳିଯୁଗରେ ନାମକୀର୍ତ୍ତିନ ଈଶ୍ୱର-ପ୍ରେମ ଲାଭର ଏକମାତ୍ର ଉପାୟ ।

ଅତିବଡ଼ ମହାପାପୀ, କାମ, କ୍ରୋଧ, ଲୋଭ, ମୋହ ପ୍ରଭୃତିରେ ଆକୁଳଚିତ୍ତ ମାନବ ଯଦି ଶ୍ରୀ ଭଗବାନଙ୍କର ନାମ କୀର୍ତ୍ତିନ କରେ ତାହାହେଲେ ସେ ବ୍ୟକ୍ତି ମଧ୍ୟ ଭଗବାନଙ୍କ କୃପାଲାଭ କରିବାରେ ସମର୍ଥ ହୁଏ ।

ଯେ କୌଣସି ପ୍ରକାରେ ଶୁଦ୍ଧଭାବରେ ବା ଅଶୁଦ୍ଧଭାବରେ, ଜ୍ଞାତସାରରେ ବା ଅଜ୍ଞାତସାରରେ, ଯତ୍ନସହକାରେ ବା ଅଯତ୍ନ-ସହକାରେ ଭଗବାନଙ୍କର ନାମ କୀର୍ତ୍ତିନ କଲେ ନିଶ୍ଚୟ ବାଞ୍ଛିତ ଫଳ ମିଳେ । ବୁଦ୍ଧି ଓ ତର୍କଦ୍ୱାରା ଈଶ୍ୱରଙ୍କର ନାମର ମହିମା ପ୍ରତିଷ୍ଠା କରାଯାଇ ପାରେ ନାହିଁ । ଭକ୍ତି, ଶ୍ରଦ୍ଧା ଓ ଅବିଶ୍ରାନ୍ତ ନାମ ଗାନଦ୍ୱାରା କେବଳ ଏହାର ଅନୁଭୂତି ବା ଉପଲବ୍ଧି କରାଯାଏ । ପ୍ରତ୍ୟେକ ନାମ ଅସଂଖ୍ୟ ଶକ୍ତିରେ ପରିପୂର୍ଣ୍ଣ । ନାମର ଶକ୍ତି ବର୍ଣ୍ଣନା-ତୀତ । ଏହାର ମହିମା ଭାଷାତୀତ । ଈଶ୍ୱରଙ୍କ ନାମର ଗୁରୁତ୍ୱ ଓ ସ୍ୱାଭାବିକ ଶକ୍ତିର ଗଭୀରତା କଳ୍ପନାତୀତ ।

ନାମ କର, ନାମ କର । ଉଠିଲେ, ବସିଲେ, ଖାଇଲେ, ଶୋଇଲେ, ସୁଖରେ, ଦୁଃଖରେ, ଅଭାବରେ, ସ୍ୱାଚ୍ଛନ୍ଦ୍ୟରେ, ହେଳାରେ, ଶ୍ରଦ୍ଧାରେ, ଭକ୍ତିରେ, ଅଭକ୍ତିରେ,ସ୍ୱଜନରେ, ବିଜନରେ ସପନରେ, ଜାଗରଣରେ (ଚେତାରେ) ଭଗବାନଙ୍କର ନାମ କର ।



# ନାମ ମାହାତ୍ମ୍ୟ

ହରେକୃଷ୍ଣ ହରେକୃଷ୍ଣ କୃଷ୍ଣ କୃଷ୍ଣ ହରେ ହରେ
ହରେ ରାମ ହରେ ରାମ ରାମ ରାମ ହରେ ହରେ ।
ନାମ ବ୍ରହ୍ମ ନାମ ବ୍ରହ୍ମ ନାମ ବ୍ରହ୍ମ ସାର
କଳିଯୁଗେ ନାମ ବିନୁ ନାହିଁ ପ୍ରତିକାର ।
ନାମଟି ପରମବ୍ରହ୍ମ ନିତ୍ୟ ନିରଞ୍ଜନ
ନାମଟି ପରମବ୍ରହ୍ମ କଳୁଷଗଞ୍ଜନ ।
ନାମଟି ପରମ ତପ ଅଖିଳ ସଂସାରେ
ନାମଟି ପରମବନ୍ଧୁ ଜୀବନ ଦଶାରେ ।
ନାମଟି ଜଗତେ ଅଟେ ଏକମାତ୍ର ଗତି
କୃଷ୍ଣନାମ ରସାମୃତ ଅମୂଲ୍ୟ ସମ୍ପତ୍ତି ।
ନାମ ବ୍ରହ୍ମ ନାମ ବ୍ରହ୍ମ ସର୍ବଶାସ୍ତ୍ର କହେ
ନାମ ବ୍ରହ୍ମ ଆଶ୍ରାକଲେ, ପାତକ ନ ରହେ ।
ନାମବ୍ରହ୍ମ ନାମବ୍ରହ୍ମ ନାମବ୍ରହ୍ମ ସାର
ନାମବିନୁ କଳିକାଳେ ନାହିଁ ପ୍ରତିକାର ।
ଯୁଗେ ଯୁଗେ ହରିନାମ ଅଟେ ସର୍ବଶ୍ରେଷ୍ଠ
କଳିଯୁଗେ କୃଷ୍ଣନାମ ସବୁଠୁଁ ଗରିଷ୍ଠ ।
ସର୍ବ କାମନା ପୂରଣ କରେ କୃଷ୍ଣନାମ
ଏକମାତ୍ର କୃଷ୍ଣନାମ ମହା ମୋକ୍ଷଧାମ ।
ଅନନ୍ତ ଅସୀମ କୃଷ୍ଣ ନାମର ମହିମା
ଅନ୍ତ କରି ନ ପାରନ୍ତି ଶେଷ ହର ବ୍ରହ୍ମା ।
କଳିଯୁଗରେ ସୁଲଭ ମାନବମାନଙ୍କୁ
କୃଷ୍ଣନାମ ଉଦ୍ଧରଇ ଘୋର ପାପ ପଙ୍କୁ ।

ଅଶାନ୍ତ ପ୍ରାଣରେ ଶାନ୍ତ ଦିଏ କୃଷ୍ଣନାମ
ଦାରୁଣ ବିଷୟ ବିଷ ହୁଅଇ ହରଣ ।
କୃଷ୍ଣଙ୍କ ଅପେକ୍ଷା କୃଷ୍ଣନାମ ଧନ ବଡ଼
ଏଣୁ କୃଷ୍ଣନାମ ଗାଅ ଚିତ୍ତେ କରି ଦୃଢ଼ ।
କୃଷ୍ଣନାମ କୀର୍ତ୍ତନେ ପାଇବ କୃଷ୍ଣ ଦେହ
ଶ୍ରୀମୁଖ ବାକ୍ୟଟି ଏହା ନ ମଣ ସଂଶୟ ।
କୋଟିଯଜ୍ଞ କରି ଦାନ ଦେଇ ଶୁଦ୍ଧଚିତ୍ତେ
କୋଟିଶାସ୍ତ୍ର ଶାଖା ବେଦ ପଢୁଥାଇ ନିତ୍ୟେ ।
କୋଟି ବାରବ୍ରତ କୋଟିଗ୍ରନ୍ଥ ପଢ଼େ ଯେହୁ
ନାମ କୀର୍ତ୍ତନକୁ ପାର୍ଥ ତୁଲ୍ୟ ନୋହେ ସେହୁ ।
କୋଟି ଅଯୋମୁଖୀ କୋଟି ତୁରଙ୍ଗମ କନ୍ୟା
କୋଟି ମେରୁତୁଲ୍ୟ କରି ଦାନ ଦେଇ ସୁନା ।
କୋଟି ଜଳକୀର୍ତ୍ତି କୋଟି ଦେଉଳ ଯେ କର୍ମ
ନାମ କୀର୍ତ୍ତନକୁ ପାର୍ଥ କେହୁ ନୋହେ ସମ ।
ତେଣୁକରି ଅର୍ଜ୍ଜୁନ ମୁଁ କହୁଅଛୁ ତୋତେ
ନାମକୁ ଭଜନ କରି ଲୟକର ମୋତେ ।
ମୋହ ନାମ ଭଜିଲେ ଆନକୁ ନାହିଁ ଡର
ଚିତ୍ତ ଶୁଦ୍ଧକରି ହୃଦପଦ୍ମେ ଲୟ କର ।
ଏ ମୋହର ନାମ ପାର୍ଥ ଅଛହିଁ ଗହନ
ସରସ୍ୱତୀ ଲେଖିବାକୁ ଦିନେ କଲେ ମନ ।
ଅଷ୍ଟଗିରି ଫାଡ଼ିଣ ସେ ଚୂର୍ଣ୍ଣ କଲେ ଧୂଳି
ସପତ ସମୁଦ୍ର ପାଣି ସଙ୍ଗେ ତେଣ ଗୋଳି ।
କାଳକରି କରେ ସେ ଧଇଲେ ଦେବ ଜେମା
କଳ୍ପତରୁ ହସ୍ତକୁ ଲେଖନ କଲେ ବାମା ।

ନବଖଣ୍ଡ ପୃଥ୍ୱୀ ପଦ୍ମ କଲେକ ବିବର୍ତ୍ତି ।
ନାମର ମହିମା କହୁଁ ନ ପାରିଲେ ଲେଖି ॥
ଏ ମୋର ନାମରେ ପାର୍ଥ ମନ ଯାର ପଶେ
ସପତ ବ୍ରହ୍ମାଣ୍ଡ ତାକୁ ରେଣୁପ୍ରାୟେ ଦିଶେ ॥
ସୂର୍ଯ୍ୟକୁ ଦେଖଇ ସେ ଦୀପକ ଅଗ୍ନି ପ୍ରାୟେ
କାମଦେବ ଦିଶେ ଯେହ୍ନେ ମର୍କଟ ଗୋଷ୍ଠୀଏ ॥
ଦରିଦ୍ର ପରାୟେ ତାକୁ ଦିଶଇ କୁବେର ।
ରଙ୍କପ୍ରାୟେ ମଣଇ ଯେ ସ୍ୱର୍ଗ ସୁନାସୀର
ନାସିକା ନିଃଶ୍ୱାସ ପାର୍ଥ ବହଇ ଯେମନ୍ତ ।
ଅଣଗୁଣ ପବନକୁ ମଣଇ ତେମନ୍ତ ॥
ସପତ ସମୁଦ୍ର ପାଣି ଗୋପାପରି ଦିଶେ ।
କଳ୍ପତରୁକୁ ମଣଇ ଗବଗଛ କିସେ ॥
ମେରୁକୁ ଦେଖଇ ସେହୁ ଶିଳପୁଆ ତୁଲ୍ୟ ।
ଚନ୍ଦ୍ରମାକୁ କରଇ ଦର୍ପଣ ସଙ୍ଗେ ତୁଲ ॥
ମର୍ତ୍ତ୍ୟପୁର ଲୋକଙ୍କୁ ସେ ନ ଗଣଇ ସିନା ।
ଗଗନକୁ ବୋଲଇ ପିମ୍ପୁଡ଼ି ଗଡ଼ି କନା ॥
ଦେବଗୁରୁ ବୃହସ୍ପତି ନୀଚପ୍ରାୟେ ଦିଶେ ।
ଯେଉଁ ପ୍ରାଣୀ ମଣି ତାର ହୃଦରେ ନ ପଶେ ॥
ବରୁଣ ରାଜାକୁ ସେ ମଣଇ ଜଳପୋକ ।
ଆଉ ତାହା ଦୃଷ୍ଟିକୁ ଦିଶିବ କେଉଁ ଲୋକ ॥
ମୋହ ନାମବ୍ରହ୍ମ ତେଜେ ପାରିବ କେ ପଶି
ଏଡ଼େ ଏଡ଼େ ପଦାର୍ଥ ଯେ ଏଡ଼େ ତୁଚ୍ଛ ଦିଶି ॥
ଏ କଥା ନଜାଣି ହାଦେ ତୀର୍ଥ ଯାନ୍ତି ବୁଲି
ମାୟା ମୋହେ ପଡ଼ିକରି ମରୁଥାନ୍ତି ଭୁଲି ॥

ଯେସନେ ଜାହ୍ନବୀ ଗଙ୍ଗା ଦ୍ୱାରେ ବିତପନ
ସେ ଜଳକୁ ଅଜ୍ଞ କେହି ନ ଦିଅନ୍ତି ମନ ।।
ଉତ୍ତମ ପବିତ୍ର ଜଳ ତାହା ଦ୍ୟନ୍ତି ଛାଡ଼ି ।
ବାରଅଡ଼େ କୂପ ଖୋଳି ମରୁଥାନ୍ତି ବୁଡ଼ି ।।
ତୁ ବୋଇଲୁ ତୁମ୍ଭଙ୍କୁ କେମନ୍ତେ ଭେଟ ପାଇ
ସେ କଥା ଅର୍ଜୁନ ତୋତେ ଦେଇଥିବା କହି ।।
ମନରେ ଭାବିଲା ଲୋକ ମୋତେ ପାଇ ଭେଟ
ଅଭାବକୁ ଦୃଶ୍ୟ ନୁହେଁ ଭାବକୁ ନିକଟ ।।
ନାମର ପ୍ରତାପେ ହନୁ ସିନ୍ଧୁ ଡେଇଁଗଲା
ନାମର ପ୍ରଭାବେ ସୋଲ ବୁଡ଼େ ଭାସେ ଶିଳା ।
ନାମବ୍ରହ୍ମ ଅନେକର ଶେଷଦେବ ଜାଣ ।
ସପ୍ତଦ୍ୱୀପା ମହୀ ବହି ଅଛନ୍ତି ମାଥେଣ ।
ନାମବ୍ରହ୍ମ ଅର୍ଜିତରେ ଧ୍ରୁବନାମେ ବାଳ
ଦିବ୍ୟଲୋକ ପ୍ରାପ୍ତହେଲା ସେ ଧ୍ରୁବମଣ୍ଡଳ ।
ନାମବ୍ରହ୍ମ ଅନେକର ବାଳକ ପ୍ରହ୍ଲାଦ
ପ୍ରହ୍ଲାଦ ମୁକୁଳି ଲଭିଲା ସେ ଇନ୍ଦ୍ରପଦ ।
ନାମବ୍ରହ୍ମ ଅନେକର ଶ୍ରୀନାରଦ ଯତି
ସଦାନନ୍ଦେ ବୀଣାବାଦ୍ୟେ ନିପୂର ଭ୍ରମନ୍ତି ।
ନାମବ୍ରହ୍ମ ଅନେକର ଯେ ଗୁରୁ ସନକ
ବ୍ରହ୍ମଋଷି ହୋଇ ସଦା ଭ୍ରମନ୍ତି ନିଲୋକ ।
ନାମବ୍ରହ୍ମ ଅନେକର ବିନତା-ନନ୍ଦନ
ଯୁଗେ ଯୁଗେ ହୋଇଅଛି ଶ୍ରୀକୃଷ୍ଣ ବାହନ ।
ନାମବ୍ରହ୍ମ ଅନେକର ଖଣ୍ଟି ରତ୍ନାକର
ବାଲ୍ମୀକି ନାମେଣ ଯେ ହେଲା ମୁନିବର ।

ନାମବ୍ରହ୍ମ ଅଶ୍ରେକରେ ମୃଗୁଣୀ ତରିଲ
ନାମବ୍ରହ୍ମ ଅଶ୍ରେକରେ ଗଜ ନିସ୍ତରିଲ ।
ନାମବ୍ରହ୍ମ ଅଶ୍ରେକରେ ଏହିପରି କେତେ
ବୈକୁଣ୍ଠକୁ ଯାଇଛନ୍ତି ଚଳି ଦେହ ଅନ୍ତେ ।
ନାମବ୍ରହ୍ମଠାରେ ନାହିଁ ଶୌଚ ଅଶଉଚ
ସର୍ବ ଅବସ୍ଥାରେ ସେ ପବିତ୍ର ମନେ ପାଞ୍ଚ ।
କଳିଯୁଗେ ଏକମାତ୍ର ନାମ ବ୍ରହ୍ମ ସାର
ନାମବ୍ରହ୍ମ ବିନେ ନାହିଁ ଅନ୍ୟ ପ୍ରତିକାର ।
କଳିଯୁଗେ ଯେବା ହରି ନାମ ସୁମରନ୍ତି
କି ଅବା ଅନ୍ୟ ପ୍ରାଣୀଙ୍କି ସ୍ମରଣ କରାନ୍ତି ।
ମାନବ ମଧ୍ୟରେ ସେହି ମହା ଭାଗ୍ୟବାନ୍
ଧନ୍ୟ ତାହାଙ୍କ ଜନମ ଜୀବନହିଁ ଧନ୍ୟ ।
ନାମବ୍ରହ୍ମ ନାମବ୍ରହ୍ମ ନାମବ୍ରହ୍ମ ସାର
କଳିଯୁଗେ ନାମ ବିନୁ ନାହିଁ ପ୍ରତିକାର ।
ଶ୍ରୀହରି ନାମ ସ୍ମରଣ ମାତ୍ରେ ମାନବର
ଅଶେଷ କଷ୍ଟ ଅବିଳମ୍ବେ ହୁଏ ଦୂର ।



ତାହାଙ୍କ (ଈଶ୍ବରଙ୍କ) ନାମ ନେଲେ ସବୁ ପାପ କଟିଯାଏ । କାମ, କ୍ରୋଧ, ଶରୀର-ସୁଖ-ଇଚ୍ଛା, ଏସବୁ ପଳାଇଯାଏ । ବ୍ୟାକୁଳ ହୋଇ ପ୍ରାର୍ଥନା କର, ଯଦ୍ଦ୍ବାରା ତାହାଙ୍କ ନାମରେ ରୁଚି ହୁଏ । ସେହି ମନୋବାଞ୍ଛା ପୂର୍ଣ୍ଣ କରିବେ ।

[ ତାହାଙ୍କ ନାମ ନେଲେ ଯେ ସବୁ ପାପ କଟିଯାଏ—ଏହା କେବଳ କହିବା କଥା ନୁହେ—ସମ୍ପୂର୍ଣ୍ଣ ସତ୍ୟକଥା । ଈଶ୍ବରଙ୍କ ନାମ ଅନୁରାଗରେ ଉଚ୍ଚାରଣ କରୁଥିଲେ, ତହିଁରୁ ଏକପ୍ରକାର

ମାଧୁର୍ଯ୍ୟ ତାହାରେ ଏବଂ ଉତ୍ତରୋତ୍ତର ସେହି ନାମ କରିବାକୁ ମନ ବଳେ । ଅବଶେଷରେ ମନ ସେଥିରେ ଏପରି ଭାବରେ ମତ୍ତ ହୋଇଯାଏ ଯେ, ଅନ୍ୟ ଭାବନା ଭାବିବାକୁ ସମୟ ମିଳେ ନାହିଁ । ସୁତରାଂ ତଦ୍ଦ୍ୱାରା ଆଉ ପାପକାର୍ଯ୍ୟ ସମ୍ଭବେ ନାହିଁ । ପୁଣି ପୂର୍ବରୁ ଯେଉଁ ପାପରାଶି ସଞ୍ଚିତ ଥାଏ, ତାହା ମଧ୍ୟ ପୁଣ୍ୟକାର୍ଯ୍ୟର ଆଧିକ୍ୟ ଯୋଗୁଁ ଦିନକୁଦିନ କ୍ଷୟପ୍ରାପ୍ତ ହେଉଥାଏ । ପାପାର୍ଜନ କରିବା—ଯେପରିକି ପରଠାରୁ ଧାର ଆଣିବା ଏବଂ ପୁଣ୍ୟାର୍ଜନ କରିବା ଯେପରି ସଞ୍ଚୟ କରିବା ବୁଝାଯାଏ । ସୁତରାଂ ନାମମାହାତ୍ମ୍ୟ ପ୍ରଭାବରେ ଏତେ ପ୍ରେମଧନ ସଞ୍ଚିତ ହୋଇପଡ଼େ ଯେ, ତହିଁରେ ପାପ ପରିଶୋଧ ଯାଇ ଆହୁରି ବଳିପଡ଼େ ଏବଂ ମାନବ ସର୍ବପାପରୁ ମୁକ୍ତହୋଇ ଆନନ୍ଦରେ ଦିନାତିପାତ କରେ । ]

ସେହି ଚୈତନ୍ୟ ମହାପ୍ରଭୁ କହି ଯାଇଛନ୍ତି "ଏକ କୃଷ୍ଣ ନାମେ ଯତ ପାପ ହରେ, ଜୀବେର ସାଧ୍ୟ ନାହିଁ ତତ ପାପ କରେ ।" ପର ପରିଚ୍ଛେଦରେ ବୁଝାଇ ଦିଆହୋଇଛି ଯେ, ମନୁଷ୍ୟ ସୀମା ଟପି ପାପ କାର୍ଯ୍ୟ କରି ପାରିବ ନାହିଁ ବୋଲି, ଏଠାରେ ମହାପ୍ରଭୁ କହୁଛନ୍ତି—ଥରେ କୃଷ୍ଣ ନାମ ଉଚ୍ଚାରଣରେ ଯେତେ ପାପରୁ ମୁକ୍ତ ମିଳିଯାଏ, କୌଣସି ଜୀବର ସାଧ୍ୟ ନାହିଁ ଯେ ସେ ତାହାର ଜୀବନ କାଳ ମଧ୍ୟରେ ଏତେ ପାପ କରି ପାରିବ । ନାମର ମାହାତ୍ମ୍ୟ ବାକ୍ୟ ମନ ଅଗୋଚର । ଜ୍ଞାତସାରରେ ବା ଅଜ୍ଞାତସାରରେ ହରିନାମ ବା କୃଷ୍ଣନାମ ସମସ୍ତେତ ଉଚ୍ଚାରଣ କରୁଛନ୍ତି । ତାହାହେଲେ ତ ନର୍କ କୁଣ୍ଡପାକ କେଉଁ ଦିନରୁ ପୋତା ସରନ୍ତାଣି, ପାପିହୋଇ ଜଣେ କେହି ରହନ୍ତେ ନାହିଁ ? କଥା କ'ଣ ? ତାହା ନୁହେଁ—ସେ ପ୍ରକାର କୃଷ୍ଣନାମ ଉଚ୍ଚାରଣ ସହଜ କଥା ନୁହେଁ । ସେ ପ୍ରକାର ନାମ ଉଚ୍ଚାରଣରେ ଭକ୍ତି,

କଣ୍ଠ ଇତ୍ୟାଦି କିଛି ଲାଗିବ ନାହିଁ । ମନେ ମନେ ଉଚ୍ଚାରଣ କରିବା ମଧ୍ୟ ନୁହେଁ । ବାକ୍ ସଂଯମ କରି ଶୁଷୁମ୍ନା ଦ୍ୱାର ଖୋଲାଇ ପାରିଲେ ଅର୍ଥାତ ମେରୁଦଣ୍ଡ ମଧ୍ୟସ୍ଥିତ ଶୁଷୁମ୍ନା ନାଡ଼ି ବାଟେ ପ୍ରାଣ ବାୟୁକୁ ଚାଳିତ କଲେ ସେ ପ୍ରକାର ନାମ ଉଚ୍ଚାରଣ ଅନାହତରୁ ହୋଇ ପାରେ, ନଚେତ ନାହିଁ । ଶୁକପକ୍ଷୀ ମଧ୍ୟ ରାମ ରାମ କହୁଥାଏ, କିନ୍ତୁ ବିଲେଇ ଧରିଲା ବେଳକୁ ଯେଉଁ କେଁ, କେଁ ସେହି କେଁ କହେ; ରାମନାମ ତୁଣ୍ଡକୁ ଆସେ ନାହିଁ । ସେଥିସକାଶେ ନାମ ଯଜ୍ଞରେ ଦୀକ୍ଷିତ ହେବା ପ୍ରଥା ସନାତନ ଧର୍ମରୁ ମୁନି ଋଷିମାନେ ଖଞ୍ଜି ଦେଇ ଯାଇଛନ୍ତି । ସେ ନାମ ଯଜ୍ଞ କିପରି ?

ଶ୍ରୀମଦ୍ ଭଗବତ ଗୀତାରେ ଶ୍ରୀକୃଷ୍ଣ କହିଲେ "ଯଜ୍ଞାନାଂ ଜପ ଯଜ୍ଞୋସ୍ମି" । ଅର୍ଥାତ୍ ଯଜ୍ଞମାନଙ୍କ ମଧ୍ୟରେ ଜପ ଯଜ୍ଞ ହେଉଛି ଶ୍ରେଷ୍ଠ ।

ବଦ୍ଧଜୀବ—ସଂସାରୀ ଜୀବ ହରିକଥା ସମ୍ମୁଖରେ ହେଲେ ସେଠାରୁ ଖସିଯାଏ ଏବଂ କହେ—ହରିକଥା ମରିବା-ବେଳେ ହେବ, ବର୍ତ୍ତମାନ କାହିଁକି ? ଯଦି ସେ ତୀର୍ଥ କରିବାକୁ ଯାଏ, ନିଜେ ଈଶ୍ୱରଚିନ୍ତା କରିବାର ଅବସର ପାଏ ନାହିଁ, କେବଳ ନିଜ ପରିବାରିଙ୍କର ପେଡ଼ି ପୋଟଳି ବୋହି ବୋହି ତା'ର ପ୍ରାଣ ଯାଏ; ଠାକୁର ମନ୍ଦିରକୁ ଯାଇ ପିଲାକୁ ଚରଣାମୃତ ଖୁଆଇବା ଏବଂ ଗଡ଼ାଗଡ଼ି ଦିଆଇବାରେ ବ୍ୟସ୍ତ । ବଦ୍ଧଜୀବ ନିଜର ଏବଂ ନିଜ ପରିବାରର ପେଟ ସକାଶେ ଦାସତ୍ୱ କରେ ଏବଂ ମିଥ୍ୟା କଥା, ପ୍ରବଞ୍ଚନା, ତୋଷାମଦ କରି ଧନ ଅର୍ଜନ କରେ । ଯେଉଁମାନେ ଈଶ୍ୱରଚିନ୍ତା କରନ୍ତି, ଈଶ୍ୱରଙ୍କ ଧ୍ୟାନରେ ମଗ୍ନ ହୁଅନ୍ତି, ବଦ୍ଧଜୀବ ସେମାନଙ୍କୁ ପାଗଳ ବୋଲି ହସି ଉଡ଼ାଇ ଦିଅନ୍ତି ।

[ ବାସ୍ତବିକ ସଂସାରୀର ହରିନାମ ଜପ—ଶୁକପକ୍ଷୀ ହରିନାମ ଜପ ତୁଲ୍ୟ । ଯାହାର ଶ୍ରୀଭଗବାନ୍ଙ୍କ ନାମରେ ଅନୁରାଗ ନାହିଁ, ଯେ ନାମ କରିବା ସମୟରେ ଦେହୀ ମହାଜନ କଥା ଭାବେ, ଯାହାର ନାମ କରିବା କେବଳ ବାହ୍ୟ କାର୍ଯ୍ୟ ମାତ୍ର, ଶମନ ତାହା ପକ୍ଷରେ ପକ୍ଷୀର ମାର୍ଜାରବତ୍ । ]

---

## ସଂକୀର୍ତ୍ତନ ଯୋଗ

ବିଶ୍ୱାସ ଓ ଭକ୍ତି ସହିତ ଈଶ୍ୱରଙ୍କ ନାମ ଗାନକୁ ସଂକୀର୍ତ୍ତନ ବୋଲାଯାଏ । ସଂକୀର୍ତ୍ତନ ସମୟରେ ଅନୁଭବ କର ଯେ ଭଗବାନ ବା ଇଷ୍ଟଦେବ ତୁମ୍ଭର ହୃଦ ସିଂହାସନରେ ଉପବେଶନ କରି ଅଛନ୍ତି । ତାଙ୍କର ପ୍ରତ୍ୟେକ ନାମ ଐଶ୍ୱରିକ ଶକ୍ତି ପୂର୍ଣ୍ଣ । ହରିନାମ ଜପ ଅପେକ୍ଷା ଉଚ୍ଚ କୀର୍ତ୍ତନ ଶତଗୁଣରେ ଫଳପ୍ରଦ ।

ଖୋଲ କରତାଳ ସହ ଈଶ୍ୱର ସମ୍ବନ୍ଧୀୟ ସଙ୍ଗୀତକୁ ସାଧାରଣତଃ କୀର୍ତ୍ତନ ବୋଲାଯାଏ । ଭାବ, ପ୍ରେମ ଓ ଶ୍ରଦ୍ଧାର ସହିତ ଭଗବାନଙ୍କର ନାମ-ଗାନକୁ ମଧ୍ୟ କୀର୍ତ୍ତନ କହନ୍ତି । ସଂକୀର୍ତ୍ତନରେ ଏକସ୍ଥାନରେ ଲୋକମାନେ, ଏକତ୍ର ହୋଇ ଈଶ୍ୱରଙ୍କ ନାମକୁ ଏକତ୍ର ଗାନ କରନ୍ତି । ସଂକୀର୍ତ୍ତନ ନବଧା ଭକ୍ତିର ଏକ ଅଙ୍ଗ । ସଂକୀର୍ତ୍ତନ ସମୟରେ ଅନୁଭବ କର ଯେ ଭଗବାନ ତୁମର ହୃଦ ସିଂହାସନରେ ଉପବେଶନ କରିଅଛନ୍ତି । ତାଙ୍କର ପ୍ରତ୍ୟେକ ନାମ ଐଶ୍ୱରିକ ଶକ୍ତିପୂର୍ଣ୍ଣ ।

ବହୁ ଲୋକ ଏକତ୍ର ହୋଇ ସଂକୀର୍ତ୍ତନ କଲେ ଏକ ବୃହତ୍ ଆଧ୍ୟାତ୍ମିକ ଧାର ବା ମହାଶକ୍ତିର ସୃଷ୍ଟି ହୁଏ । ଏହା ଭକ୍ତିର

ହୃଦୟକୁ ପବିତ୍ର କରେ । ଏହି ଶକ୍ତିଶାଳୀ ତରଙ୍ଗ ବହୁଦୂର ପର୍ଯ୍ୟନ୍ତ ସ୍ପର୍ଶକରେ । ଏହା ସମସ୍ତଙ୍କ ମନରେ ଉନ୍ନତ ଭାବ, ଶାନ୍ତି ଓ ଶକ୍ତି ସଞ୍ଚାର କରେ ଓ ସୁଖ, ଶାନ୍ତି, ସାମ୍ୟର ଦୂତରୂପେ କାର୍ଯ୍ୟ କରେ । କେବଳ ସଂକୀର୍ତ୍ତନଦ୍ୱାରା ଭଗବତ-ଅନୁଭୂତି ଲାଭ କରାଯାଇପାରେ । କଳିଯୁଗରେ ଈଶ୍ୱରାନୁଭୂତି ଲାଭର ଏହା ଅତ୍ୟନ୍ତ ସହଜ ପନ୍ଥା ।

ବ୍ରହ୍ମା ନାରଦ ମୁନିଙ୍କୁ କହୁଛନ୍ତି, "ଯେ ବ୍ୟକ୍ତି ଈଶ୍ୱରଙ୍କ ନାମ ସଂକୀର୍ତ୍ତନ କରନ୍ତି ଏବଂ ଯେ ଭକ୍ତିଭାବରେ ତାହା ଶ୍ରବଣ କରନ୍ତି, ଏହି ଉଭୟ ବ୍ୟକ୍ତି ସେମାନଙ୍କ ସପ୍ତକୁଳସହ ପବିତ୍ର ହୋଇଥାନ୍ତି ।

"ହେ ବତ୍ସ ! ଯେଉଁଠାରେ ସେହି ଈଶ୍ୱର ନାମ ଓ ଈଶ୍ୱରଙ୍କ ଗୁଣ କୀର୍ତ୍ତନ ହୁଏ, ସେହି ସ୍ଥାନରେ ସମସ୍ତ ତୀର୍ଥ, ସମୁଦାୟ ପୁଣ୍ୟ ଓ ମଙ୍ଗଳ ସର୍ବଦା ବିରାଜିତ ଥାଏ ଏବଂ ଗରୁଡ଼ ଦେଖି ସର୍ପମାନେ ଯେପରି ଭୟବିହ୍ୱଳ ହୋଇ ଇତସ୍ତତଃ ପଳାୟନ କରନ୍ତି, ତଦ୍ରୂପ ସେହି କୀର୍ତ୍ତନ ଧ୍ୱନି ଶୁଣି ପାପସକଳ ଦୂରକୁ ପଳାୟନ କରନ୍ତି ।" ଭଗବାନ ନାରଦଙ୍କୁ କହୁଛନ୍ତି, "ହେ ନାରଦ ! ମୁଁ ବୈକୁଣ୍ଠରେ ବାସ କରେ ନାହିଁ, ଯୋଗୀମାନଙ୍କ ହୃଦୟରେ ବାସ କରେ ନାହିଁ; କିନ୍ତୁ ଯେଉଁଠାରେ ମୋ ଭକ୍ତମାନେ ମୋ ନାମ ଗାନକରନ୍ତି, ମୁଁ ଦେହଧାରଣପୂର୍ବକ ସେହିଠାରେ ଅବିର୍ଭୂତ ହୋଇଥାଏ ।

କୀର୍ତ୍ତନ ପାପ-ଚିନ୍ତା, ପାପ-ବାସନା, ପାପ-ପ୍ରବୃତ୍ତି ନାଶ କରି ହୃଦୟକୁ ପ୍ରେମ-ଭକ୍ତି ରସରେ ପରିପ୍ଲୁତ କରେ ଓ ଯଥାର୍ଥ ଭକ୍ତକୁ ଭଗବାନଙ୍କ ସାନ୍ନିଧ୍ୟକୁ ଅଣାଏ ।

ଅଖଣ୍ଡ କୀର୍ତ୍ତନ ଅତୀବ ଶକ୍ତିଶାଳୀ । ଏହା ହୃଦୟକୁ ପବିତ୍ର କରେ । ଅଖଣ୍ଡ କୀର୍ତ୍ତନ ତିନି ଘଣ୍ଟା, ଅହୋରାତ୍ର [୨୪ଘଣ୍ଟା], ତିନିଦିନ ବା ଏକ ସପ୍ତାହ ବ୍ୟାପି ଅହରହ ଗାନ କରିବ ।

—ସ୍ୱାମୀ ଶ୍ରୀ ଶିବାନନ୍ଦ ସରସ୍ୱତୀ

---

# ବିଷ୍ଣୁ

ବିଷ୍ଣୁ—ନାରାୟଣ, କୃଷ୍ଣ, ବିଷ୍ଣୁ

ବ୍ରହ୍ମାଦି ତ୍ରିମୂର୍ତ୍ତିର ଏକତମ ଏବଂ ସୃଷ୍ଟିର ପାଳକ । ପ୍ରଜାପତି କଶ୍ୟପଙ୍କ ଔରସରେ ଅଦିତୀଙ୍କ ଗର୍ଭରେ ବିଷ୍ଣୁ ଜନ୍ମଗ୍ରହଣ କରିଥିଲେ, ତାଙ୍କର ଦୁଇ ସ୍ତ୍ରୀ—ଲକ୍ଷ୍ମୀ ଓ ସରସ୍ୱତୀ ପୁରାଣରେ ବିଷ୍ଣୁଙ୍କର ଦଶଅବତାର କଥା ଲେଖାଅଛି । ଯଥା:—ମତ୍ସ୍ୟ, କୂର୍ମ, ବରାହ, ନୃସିଂହ, ବାମନ, ରାମ, ପରଶୁରାମ, ବଳରାମ, ବୁଦ୍ଧ ଓ କଳ୍କି ।

ବିଷ୍ଣୁ କ୍ଷୀରୋଦ ଶାୟୀ ।

ତାଙ୍କ ଶଯ୍ୟା ଅନନ୍ତ, ସ୍ତ୍ରୀ ଲକ୍ଷ୍ମୀ ଓ ସରସ୍ୱତୀ, ପୁତ୍ର କାମଦେବ ଧାମ—ବୈକୁଣ୍ଠ, ବାହାନ ଗରୁଡ଼ ।

ତାଙ୍କର ଶଙ୍ଖର ନାମ ପାଞ୍ଚଜନ୍ୟ, ଚକ୍ର ସୁଦର୍ଶନ, ମଣି-କୌସ୍ତୁଭ ।

ବିଷ୍ଣୁଙ୍କର ଚାରୋଟି ହସ୍ତ, ଏକହସ୍ତରେ ପାଞ୍ଚଜନ୍ୟ ଶଂଖ, ଦ୍ୱିତୀୟ ହସ୍ତରେ ସୁଦର୍ଶନ ଚକ୍ର, ତୃତୀୟ ହସ୍ତରେ ଗଦା ଏବଂ ଚତୁର୍ଥ ହସ୍ତରେ ପଦ୍ମ । ତାଙ୍କର ଧନୁର ନାମ ସାରଙ୍ଗ ଓ ଅସିର ନାମ ନନ୍ଦକ । ତାଙ୍କ ବକ୍ଷରେ କୌସ୍ତୁଭମଣି ବିଲମ୍ବିତ ଏବଂ

ଶ୍ରୀବତ୍ସ ନାମରେ ଏକ ଅଦ୍ଭୁତ ଚିହ୍ନ ଅଙ୍କିତ । ତାଙ୍କର ମଣିବନ୍ଧରେ ସ୍ୟମନ୍ତକ ମଣି ବିଦ୍ୟମାନ ।

ବିଷ୍ଣୁ ପରମାତ୍ମା ପୁରୁଷ, ଅବ୍ୟୟ, ଈଶ୍ୱର, ଅନାମୟ, ବିଶ୍ୱବ୍ୟାପୀ ପ୍ରଭୁ ।

ବିଷ୍ଣୁ ସୃଷ୍ଟିର ପାଳନକର୍ତ୍ତା । ଲୋକରକ୍ଷାପାଇଁ ଏ ନାନା ଅବତାରରେ ଆବିର୍ଭୂତ ହୁଅନ୍ତି । ଏ ଦେବତାମାନଙ୍କ ମଧ୍ୟରେ ଶ୍ରେଷ୍ଠ । ଇନ୍ଦ୍ରାଦି ଦେବତାମାନେ ବିପଦରେ ପଡ଼ିଲେ ବିଷ୍ଣୁଙ୍କ ଶରଣାପନ୍ନ ହୁଅନ୍ତି । ପୃଥିବୀର କଲ୍ୟାଣପାଇଁ ଦେବତାମାନଙ୍କୁ ସାହାଯ୍ୟ କରିବା ଓ ଅସୁରମାନଙ୍କୁ ବିନାଶ କରିବାପାଇଁ ଏ ଯୁଗେ ଯୁଗେ ଜନ୍ମଗ୍ରହଣ କରନ୍ତି ।

## ଜଗନ୍ନାଥ

ଜଗନ୍ନାଥ ଶବ୍ଦର ଅର୍ଥ— ଲୋକେ ଜଗତର ନାଥ ବୋଲି ବୁଝନ୍ତି, ମାତ୍ର "ଜଗନ୍ନାଥ" ଶବ୍ଦର ଅର୍ଥ, ଜଗତ-ରୂପ ପୁରୁଷ ହେଉଛି ଉପାସ୍ୟ ପୁରୁଷ । ଜଗନ୍ନାଥ ଧର୍ମର ମୂଳ ହେଉଛି ବିଶ୍ୱମୈତ୍ରୀ । ପୁରୀର ଜଗନ୍ନାଥ ଧାମ ବିଶ୍ୱମୈତ୍ରୀର ପରମ ପୀଠ ।

ଜଗନ୍ନାଥ ଏକ କାଷ୍ଠ ପାଷାଣର ମୂର୍ତ୍ତି ନୁହନ୍ତି । ସେ ଏକାଧାରରେ ଅକ୍ଷର, ଅଚଳ ପରମ ସତ୍ତା ଏବଂ ଶାଶ୍ୱତ ଚିନ୍ମୟ ଶକ୍ତି ।

ଅଧ୍ୟାପକ ଶ୍ରୀ ରତ୍ନାକର ପତିଙ୍କ ଭାଷାରେ—

ଏହି ଜଗନ୍ନାଥ ମନ୍ଦିରରେ ଦାର୍ଶନିକ ଭିତ୍ତିନେଇ ନାନାପ୍ରକାର ମତ ଦେଖିବାକୁ ମିଳେ । କିନ୍ତୁ ଏ ସମସ୍ତ ମତ ମଧ୍ୟରେ ଏହି ଏକ ସତ୍ୟ ନିହିତ ଯେ ଜଗନ୍ନାଥ ଧର୍ମ ସାମ୍ୟ ଓ ମୈତ୍ରୀ ଉପରେ ପ୍ରତିଷ୍ଠିତ । ଜାତି ଧର୍ମ ନିର୍ବିଶେଷରେ ମହାପ୍ରସାଦ ସେବନ ଏ ଧର୍ମର ବୈଶିଷ୍ଟ୍ୟ ଏବଂ ସେଥିପାଇଁ ବୌଦ୍ଧ, ଜୈନ, ଶୈବ୍ୟ

ପ୍ରଭୃତି ଯେତେ ଯେତେ ଧର୍ମ ଉତ୍କଳଖଣ୍ଡରେ ଖେଳିଯାଇଛି, ସେମାନଙ୍କର ସମନ୍ୱୟ ମଧ୍ୟ ଏଠାରେ ଦେଖିବାକୁ ମିଳେ । ଏହି ଧର୍ମ ବ୍ରାହ୍ମଣ୍ୟଧର୍ମ ଉପରେ ପ୍ରତିଷ୍ଠିତ ହେଲେହେଁ ବିଷ୍ଣୁଙ୍କୁ ବ୍ରହ୍ମଙ୍କର ପ୍ରକାଶରୂପେ ଧରି ଏହା ପ୍ରତିଷ୍ଠିତ ହୋଇଅଛି । ମାନବ ସକଳ ଦୁର୍ବଳତା ଓ ଦୁଃଖ କ୍ଲେଶରୁ ମୁକ୍ତ ହୋଇ କପର ପୁରୁଷୋତ୍ତମଙ୍କୁ ଲାଭ କରିବ ଏହାହିଁ ଏ ପୀଠରେ ପ୍ରତୀକରୂପରେ ପ୍ରଦର୍ଶିତ ହୋଇଅଛି । ଏହି ପ୍ରତୀକର ତାତ୍ପର୍ଯ୍ୟ ଏହି ଯେ, ଏ ବିଶ୍ୱ ବ୍ରହ୍ମାଣ୍ଡ ସର୍ବବ୍ୟାପୀ ସର୍ବାନ୍ତର୍ଯ୍ୟାମୀ ତଥା ସର୍ବଶକ୍ତିମାନ ସଚ୍ଚିଦାନନ୍ଦଙ୍କର ଅଧିଷ୍ଠାନ ସ୍ଥଳୀ ।

ଏହି ଧର୍ମର ପ୍ରତିଷ୍ଠାନିମିତ୍ତ, ଏହି ଧର୍ମରେ ଜନକଲ୍ୟାଣ ସମ୍ପାଦନ କରିବାନିମିତ୍ତ ଗଙ୍ଗବଂଶୀୟ ନୃପତିଗଣ ପୁରୀରେ ଜଗନ୍ନାଥଙ୍କ ପ୍ରକାଣ୍ଡ ଧର୍ମମନ୍ଦିର ଓ ତତ୍‌ସଂଲଗ୍ନ ଅନ୍ୟାନ୍ୟ ମନ୍ଦିରମାନ ନିର୍ମାଣ କରିଥିଲେ । ଚୈତନ୍ୟ ଓ ଅଚ୍ୟୁତାନନ୍ଦ ଏବଂ ଯଶୋବନ୍ତ ପ୍ରଭୃତି ପଞ୍ଚସଖାଙ୍କ ପ୍ରଭାବରେ ବୈଷ୍ଣବ ଧର୍ମର ପୀଠସ୍ଥଳୀରୂପେ ଜଗନ୍ନାଥ ଧାମ କେବଳ ଭାରତରେ ନୁହେଁ, ସମଗ୍ର ପୃଥିବୀରେ ମଧ୍ୟ ଖ୍ୟାତି ଲାଭ କରିଅଛି । ବିଭିନ୍ନ ଧର୍ମର ଲକ୍ଷ ଲକ୍ଷ ଅବଲମ୍ବୀ, ସକଳ ଧର୍ମର ସମନ୍ୱୟ କ୍ଷେତ୍ର ଏହି ଜଗନ୍ନାଥ ଧାମରେ ସମବେତ ହୋଇଥାନ୍ତି ।

ଜଗନ୍ନାଥ ଉତ୍କଳର ସଂସ୍କୃତି ଓ ଜାତିର ହୃତ୍‌ପିଣ୍ଡ । ଜଗନ୍ନାଥ ଓ ଉତ୍କଳ ଏ ଦୁଇଟି ଏକ ସୂତ୍ରରେ ଗ୍ରଥିତ । ଏହା ପରମ୍ପରାଠାରୁ ଅଭିନ୍ନ; ଜଗନ୍ନାଥଙ୍କ ବ୍ୟତୀତ ଓଡ଼ିଶା ଓ ଓଡ଼ିଆ ଜାତିର ପରମ୍ପରା, ସଂସ୍କୃତି, ସଭ୍ୟତା ଏପରି କି ଅସ୍ତିତ୍ୱ ବି ରହେ ନାହିଁ ।

ପୁରୀର ବଡ଼ ଦେଉଳଟି କେବଳ ବଡ଼ ନୁହେଁ ।
ଠାକୁର—ବଡ଼ ଠାକୁର, ପଣ୍ଡା—ବଡ଼ ପଣ୍ଡା,
ଦାଣ୍ଡ—ବଡ଼ ଦାଣ୍ଡ, ସମୁଦ୍ର—ମହୋଦଧି,
ପୁଷ୍କରଣୀ – ନରେନ୍ଦ୍ର, ବୃକ୍ଷ—କଳ୍ପବଟ,
ମଣ୍ଡପ – ମୁକ୍ତିମଣ୍ଡପ, ବଜାର—ଆନନ୍ଦ ବଜାର ଓ
ଲକ୍ଷ୍ମୀବଜାର, ଶ୍ମଶାନ—ସ୍ୱର୍ଗଦ୍ୱାର ।

ଉତ୍କଳମଣି କବି ଗୋପବନ୍ଧୁ ପୁରୀର ନୀଳାଚଳକୁ ବୈକୁଣ୍ଠ ଧାମ ଆଖ୍ୟା ଦେଇଥିଲେ ।—

"ଜଗତ-ସରସେ ଭାରତ କମଳ
ତା' ମଧ୍ୟେ କେଶର ପୁଣ୍ୟ ନୀଳାଚଳ ।"

ସ୍ୱର୍ଗତ ଐତିହାସିକ ପଣ୍ଡିତ କୃପାସିନ୍ଧୁଙ୍କ ମତରେ; ଅନଙ୍ଗ-ଭୀମଦେବଙ୍କ ଗୌରବମୟ ରାଜତ୍ୱକାଳ ମଧ୍ୟରେ ପୁରୀରେ ଜଗନ୍ନାଥ ମନ୍ଦିର ନିର୍ମାଣ ପ୍ରଧାନ ଘଟଣା ।

ଚୋଡ଼ଗଙ୍ଗ ଦେବ ଏହି ମନ୍ଦିର ନିର୍ମାଣ ଆରମ୍ଭ କରିଥିବାର କୁହାଯାଇଛି । ମାତ୍ର ତାଙ୍କ ପୁତ୍ର ପୌତ୍ରାଦମାନେ ତାହା ସମାପନ କରିବାରେ ମନୋଯୋଗ ଦେଇ ନ ଥିଲେ । ତାହା ସେପରି ଅନଙ୍ଗଭୀମ ଦେବଙ୍କ ରାଜତ୍ୱକୁ ଅପେକ୍ଷା କରି ରହିଥିଲା । ଅନଙ୍ଗଭୀମ ଦେବ ସିଂହାସନ ଆରୋହଣ କରିବା ସଙ୍ଗେ ସଙ୍ଗେ ରାଜତ୍ୱର ଦ୍ୱିତୀୟ ଅଙ୍କ ବା ପ୍ରଥମ ବର୍ଷରେ ମନ୍ଦିର ନିର୍ମାଣ ଆରମ୍ଭ କଲେ । ତାହାଙ୍କ ହିସାବରେ ବଡ଼ ଦେଉଳର ଉଚ୍ଚତା ୧୨୦ ହାତ । ଦେଉଳର ବାହାର ବେଢ଼ା ସମେତ ଜମିର ପରିମାଣ ୧୦ (ଦଶ) ଏକର । ବାହାର ବେଢ଼ାର ପୂର୍ବପାଖରେ ଯେଉଁ ବିଶାଳ ପାଚେରି ରହିଛି, ତାର ନାମ 'ମେଘନାଦ' ପାଚେରି । ଜଗନ୍ନାଥ ମହାପ୍ରଭୁଙ୍କ ରତ୍ନ ସିଂହାସନ ବଡ଼ ଦେଉଳ ଭିତରେ । ନୀଳକଣ୍ଠ ରାଜଗୁରୁ

ମହାପାତ୍ର ପରମହଂସ ବାଜପେୟୀଙ୍କ ଉପରେ ମନ୍ଦିର ନିର୍ମାଣ ଭାର ନ୍ୟସ୍ତ ଥିଲା । ମନ୍ଦିର ନିର୍ମାଣରେ ବାରଲକ୍ଷ ପଚାଶ ହଜାର ମାଢ଼ ସ୍ୱର୍ଣ୍ଣ ଏବଂ ଅଢ଼େଇ ଲକ୍ଷ ମାଢ଼ ସ୍ୱର୍ଣ୍ଣ ମୂଲ୍ୟର ରତ୍ନ ଆଦି ବ୍ୟୟ କରାଯାଇଥିଲା । ଅର୍ଥାତ୍ ସେ କାଳର ସାଢ଼େ ସାତକୋଟି ଟଙ୍କା ଓ ଆଜିକାଲି ହିସାବରେ ପ୍ରାୟ ଦୁଇଶହ କୋଟି ଟଙ୍କା କହିଲେ ଚଳେ । ପନ୍ଦର ବର୍ଷରେ ଅର୍ଥାତ୍ ୧୨୦୪ ଖ୍ରୀଷ୍ଟାବ୍ଦରେ ମନ୍ଦିର କାମ ଶେଷ ହେଲା । ମନ୍ଦିର ନିର୍ମାଣ ପରେ ସେହି ବାଜପେୟୀଙ୍କ ହସ୍ତରେ ମନ୍ଦିରର ସକଳ ଶାସନ ଓ ପରିଚାଳନା ଭାର ନ୍ୟସ୍ତକରାଯାଇଥିଲା ।

—ଉତ୍କଳ ଇତିହାସ—କୃପାସିନ୍ଧୁ ମିଶ୍ର

ଜଗନ୍ନାଥଙ୍କ ଗୃହଜମି (ଭୂସମ୍ପତ୍ତି) ଓ ସୁନା କେତେ ଥିଲା ତାହାର ହିସାବ ଶୁଣିଲେ ଆଶ୍ଚର୍ଯ୍ୟ ହେବାକୁ ହୁଏ । ଶ୍ରୀସଦାଶିବ ମିଶ୍ର (ପୁରୀ) ସମାଜ ପତ୍ରିକାରେ (୧୯୫୩) ଜୁଲାଇ ଏଗାର ତାରିଖ ପଞ୍ଚବିଂଶତିତମ ବାର୍ଷିକ ଶ୍ରାଦ୍ଧ ଦିବସ ଉଲ୍ଲେଖ କରିଅଛନ୍ତି, "କେଶରୀ ବଂଶ ଆଦ୍ୟରୁ ଅନଙ୍ଗଭୀମ ଦେବଙ୍କ ପର୍ଯ୍ୟନ୍ତ ପୂର୍ବ ରାଜଦତ୍ତ ଭୂସମ୍ପତ୍ତି ଅନଙ୍ଗଭୀମଙ୍କ ଦତ୍ତ ସମ୍ପତ୍ତି ସହ ୧୩୮୩୨ ବାଟି ୨ମାଣ ଅଠଗୁଣ୍ଠ (ତେର ହଜାର ଆଠଶହ ବତିଶବାଟି ଦୁଇମାଣ ଅଠଗୁଣ୍ଠ) ହୋଇଥିଲା । ରାଜା ଆଜ୍ଞା ଦେବାରୁ ପରମହଂସ ବାଜପେୟୀ ଜଗନ୍ନାଥଙ୍କ ଅଲଙ୍କାରପାଇଁ ଦୁଇଲକ୍ଷ ପଚାଶ ହଜାର ମାଢ଼ ସୁନା ଦେଇଥିଲେ ।

ମୋଟ ଉପରେ ମନ୍ଦିର ତିଆରି ଓ ଅଲଙ୍କାର ବାବଦରେ ମୋଟ ୧୫ (ପନ୍ଦର) ଲକ୍ଷ ମାଢ଼ ସୁନା ଦିଆଯାଇଥିଲା ।

ଓଡ଼ିଶାର ସ୍ୱାଧୀନତା ଲୋପହେବାପରେ ଭୋଇବଂଶୀୟ ରାଜାମାନଙ୍କ ସମୟରେ ମୁସଲମାନମାନେ ଧନରତ୍ନ ଲୋଭରେ

ତେବେ ଥରେ ମନ୍ଦିର ଲୁଣ୍ଠନ କରି କୋଟି କୋଟି ଟଙ୍କାର ଧନ ରତ୍ନ ଅପହରଣ କରି ନେଇ ଯାଇଥିଲେ ।

ମନ୍ଦିରର ଗୁପ୍ତ ସୁନା ଭଣ୍ଡାର ଯାହା କି ଇସ୍‌ମାଇଲ୍ ଗାଜି ଓ କଳାପାହାଡ଼ର ଲୁଣ୍ଠନ ହାତରୁ ରକ୍ଷା ପାଇଥିଲା ତାହା ଏହି ସମୟରେ କେଶୁଦାନ ମାରୁ ନାମକ ଜନୈକ ମୁସଲମାନ ଲୁଣ୍ଠନକାରୀ ଦ୍ୱାରା ବିତାଡ଼ିତ ହୋଇ ଲୁଣ୍ଠିତ ହୋଇଥିଲା । ସେ ତିନିକୋଟି ଟଙ୍କାର ଧନରତ୍ନ ଲୁଣ୍ଠନ କରି ନେଇଥିଲା । ଏହାପୂର୍ବରୁ ଇସମାଇଲ୍ ଗାଜି ଓ କଳାପାହାଡ଼ ଷୋଳକୋଟି ଟଙ୍କାର ଧନରତ୍ନ ମନ୍ଦିର ଭଣ୍ଡାର ମଧ୍ୟରୁ ଅପହରଣ କରିଥିଲେ । ମୁସଲମାନ ଲୁଣ୍ଠନକାରୀମାନଙ୍କର ବାରମ୍ବାର ଆକ୍ରମଣରୁ ଜଗନ୍ନାଥ ଧାମର ମହତ୍ତ୍ୱ ରକ୍ଷା କରିବାକୁ ଯାଇ ଭୋଇବଂଶୀୟ ରାଜାମାନେ ବହୁ ଧନ ପ୍ରାଣ ହରାଇ ସର୍ବସ୍ୱାନ୍ତ ହୋଇଥିଲେ ଓ ନିଜ ବଂଶ ମର୍ଯ୍ୟାଦାରେ ଜଳାଞ୍ଜଳି ଦେଇ ଅବ-ଶେଷରେ ବନପର୍ବତରେ ଆଶ୍ରୟ ନେଇଥିଲେ । ଏହି ସମୟରେ ଦାରୁବ୍ରହ୍ମ ମୂର୍ତ୍ତିମାନଙ୍କର ଦୁର୍ଦ୍ଦଶା କହିଲେ ନ ସରେ । ଅନେକ ସମୟରେ ମୂର୍ତ୍ତିମାନଙ୍କୁ ମନ୍ଦିରରୁ ସ୍ଥାନାନ୍ତରିତ କରି ରକ୍ଷା କରିବାର ସୁବିଧା ନ ଥିବାରୁ ବ୍ରାହ୍ମଣମାନଙ୍କୁ ବାହାର କରି ନେଇ ଲୁଚାଇ ରଖୁଥିଲେ । ମନ୍ଦିରରେ ଦାରୁବ୍ରହ୍ମମାନଙ୍କ ପୁନଃସ୍ଥାପନ କରିବାପରେ ଏତେ ଅଭାବ ଅସୁବିଧା ହେଉଥିଲା ଯେ ସମୟ ସମୟରେ ଅର୍ଦ୍ଧ ବର୍ଷ ବ୍ୟାପି ଚନ୍ଦନ ଭୋଗର କୌଣସି ବ୍ୟବସ୍ଥା କରାଯାଇପାରୁ ନଥିଲା । ଏପରି କି ସାମାନ୍ୟ ବଲ୍ଲଭ ଭୋଗ ମଧ୍ୟ ଯଥାସମୟରେ ଦିଆଯାଇ ପାରୁ ନ ଥିଲା ।

ଐତିହାସିକ ଡକ୍ଟର ମହତାବ କହନ୍ତି, "ଜଗନ୍ନାଥଙ୍କୁ ଉପାସନା କରି ଯେଉଁ ସନ୍ଥଜନମାନେ ମୁକ୍ତିଲାଭ କରିଛନ୍ତି ସେମାନଙ୍କ ମଧ୍ୟରେ ସବୁ ଶ୍ରେଣୀ ଓ ଜାତି, ହରିଜନ, ବ୍ରାହ୍ମଣ ଓ

ଅବ୍ରାହ୍ମଣ, ମୁସଲମାନଆଦି ସବୁ ସମ୍ପ୍ରଦାୟର ଲୋକ ଅଛନ୍ତି । କେତେକ ମୁସଲମାନ ମଧ୍ୟ ଜଗନ୍ନାଥଙ୍କର ଉପାସକ ହୋଇଥିଲେ ଏବଂ ଆଜି ସେମାନେ ସନ୍ଥଜନରୂପେ ପୂଜା ପାଉଅଛନ୍ତି । ଯବନ ହରି ଦାସ ଓ ସାଲବେଗ ଜଗନ୍ନାଥଙ୍କର ଦୁଇଜଣ ପ୍ରଧାନ ଭକ୍ତ-ରୂପେ ପରିଚିତ ହୋଇଥିଲେ ଏବଂ ସବୁଶ୍ରେଣୀ ଲୋକଙ୍କଦ୍ୱାରା ଆଜି ସେମାନେ ପୂଜିତ ହେଉଅଛନ୍ତି ।

× × × ×

ବର୍ତ୍ତମାନ ସୁଦ୍ଧା ଜଗନ୍ନାଥ କୌଣସି ଧର୍ମ ଆନ୍ଦୋଳନଦ୍ୱାରା ପ୍ରଭାବିତ ହେବାକୁ ଅସ୍ୱୀକାର କରି ନାହାନ୍ତି । ସକଳ ସମ୍ପ୍ରଦାୟର ଓ ପ୍ରତି ସମ୍ପ୍ରଦାୟର ବିଶ୍ୱାସଭାଜନ ହୋଇଥିବା ଏକମାତ୍ର ଦେବତାରୂପେ ସେ ଆଜି ପୂଜା ପାଉଛନ୍ତି । ଏହିଭାବରେ ଜଗନ୍ନାଥ ଭାରତର ସାଂସ୍କୃତିକ ଅଖଣ୍ଡତାର ଏକ ସଂକ୍ଷିପ୍ତ ସାରରେ ପରିଣତ ହୋଇଯାଇଛନ୍ତି । ଜାତିକୁ ମଧ୍ୟ ଏହାହିଁ ଜଗନ୍ନାଥଙ୍କର ଶିକ୍ଷା ।

ଏଇଥିପାଇଁ ଜଗନ୍ନାଥଙ୍କ ମହତ୍ତ୍ୱ ବର୍ଣ୍ଣନା କରି କବି ଗୋପବନ୍ଧୁ ଗାଇଅଛନ୍ତି —

ନାହିଁ ଜାତିଭେଦ ନାହିଁ ଧର୍ମଭେଦ
ସାମ୍ୟ ମୈତ୍ରୀ ମନ୍ତ୍ର ଗାଏ ଯାର ବେଦ
କେ କରିବ ଭବେ
ଦେବତା ମାନବେ
ନୀଳାଚଳେ ତା'ର ପ୍ରବେଶ ନିଷେଧ ।

ଐତିହାସିକ କୃପାସିନ୍ଧୁ ମିଶ୍ର ପୁଣି କହିଛନ୍ତି ଯେ, "ଜଗନ୍ନାଥଙ୍କର ପ୍ରତିଷ୍ଠା ଯେ କାରଣରୁ ହେଉଥିବା ଯେ ସମୟରେ ହେଉ, ଉତ୍କଳ ଯୁଗେ ଯୁଗେ ଜଗନ୍ନାଥଙ୍କ ଯୋଗେ ସମଗ୍ର ହିନ୍ଦୁ ଜଗତରେ ପ୍ରଧାନ ତୀର୍ଥ ବୋଲି ଆଦର ପାଇଆସୁଅଛି, ଏବଂ ହିନ୍ଦୁ

ଧର୍ମର ସାମ୍ୟ ଓ ମୈତ୍ରୀଭାବ ଜଗତରେ ବିଖ୍ୟାତ କରୁଛି । ତାହାହିଁ ଉତ୍କଳ ଇତିହାସରେ ପ୍ରଧାନ ଗୌରବର ଘଟଣା । କୋଟି କୋଟି ହିନ୍ଦୁ, ନରନାରୀ ଜଗନ୍ନାଥଙ୍କ ଦର୍ଶନ ନିମନ୍ତେ ପ୍ରତିବର୍ଷ ଉତ୍କଳକୁ ଆସି ଧନ୍ୟ ହେଉଛନ୍ତି । ମହାଭାରତ ଯୁଗରେ ଉତ୍କଳ ପତିତାଦେଶ ଥିଲା । ମାତ୍ର ଜଗନ୍ନାଥଙ୍କ ନିମନ୍ତେ ଉତ୍କଳ ସମଗ୍ର ହିନ୍ଦୁ ଜଗତରେ ପ୍ରଧାନ ପୁଣ୍ୟ କ୍ଷେତ୍ରରୂପେ ଗଣ୍ୟ ହୋଇଆସୁଛି । ହିନ୍ଦୁଧର୍ମର ସକଳ ସାରସତ୍ତ୍ୱ, ସକଳ ମାହାତ୍ମ୍ୟ ଜଗନ୍ନାଥରେ ଯେପରି ପୁଞ୍ଜୀଭୂତ ସେପରି ଜଗନ୍ନାଥ ଉତ୍କଳ ଇତିହାସର ସ୍ୱର୍ଣ୍ଣମଣି ।

ଏହି ବିଷୟକୁ ଲକ୍ଷ୍ୟ କରି ଯଥାର୍ଥରେ ଉତ୍କଳମଣି ଗୋପବନ୍ଧୁ ଗାଇଅଛନ୍ତି—

ଏହି ଯେ ଉତ୍କଳ ପୁଣ୍ୟ ଦେବସ୍ଥଳୀ
ହୋଇଛନ୍ତି ଠୁଳ ଯହିଁ ତୀର୍ଥାବଳୀ ।
ତା ମଧ୍ୟେ ବିରାଜେ ପୁଣ୍ୟ ନୀଳାଚଳ
ଭାରତର ଧର୍ମ-ହୃଦ-ଶତଦଳ ।
ଏବେ ନୀଳାଚଳେ ବିଜେ ଜଗନ୍ନାଥ
ତେବେ କିମ୍ପା କହ ଉତ୍କଳ ଅନାଥ ।

---

# ମହାପ୍ରସାଦର ମାହାତ୍ମ୍ୟ

ମହାପ୍ରସାଦ ଅର୍ଥ ଦେବତାଙ୍କ ନିବେଦିତ ଦ୍ରବ୍ୟ, ନୈବେଦ୍ୟ, ବିଷ୍ଣୁଙ୍କ ପାଦୋଦକ, ନିର୍ମାଲ୍ୟ ଓ ନୈବେଦ୍ୟ । ବେଦବିହିତ ଯଜ୍ଞରେ ଯେଉଁ ଅନ୍ନ ପାକ ହୋଇ ବ୍ରହ୍ମାର୍ପିତ ହୋଇଥାଏ, ସେହି ବ୍ରହ୍ମାର୍ପିତ ଅନ୍ନହିଁ ମହାପ୍ରସାଦ । ପୁରୀ ଶ୍ରୀକ୍ଷେତ୍ରରେ ଅବଢ଼-

ମାନ କାଳରୁ ପ୍ରତ୍ୟେହ ପାକଶାଳାରେ ବେଦୋକ୍ତ ମନ୍ତ୍ରରେ ବୈଷ୍ଣବାଗ୍ନିକୁ ଆବାହନ କରି ହୋମ କରାହୁଏ । ପୁଣି ସେହି ଅଗ୍ନି ଦ୍ୱାରା ବ୍ରହ୍ମାର୍ପଣପାଇଁ ଲକ୍ଷ୍ମୀଙ୍କ ସନ୍ନିଧାନରେ ଅନ୍ନ ବ୍ୟଞ୍ଜନାଦି ଶୁଦ୍ଧଭାବରେ ପାକକରାଯାଇଥାଏ । ତାହା ଜଗନ୍ନାଥଙ୍କପାଖରେ ଭୋଗଲାଗି ସାରିଲେ 'ମହାପ୍ରସାଦ' ହୁଏ । ଭାରତବର୍ଷରେ କେବଳ ପୁରୀ ଜଗନ୍ନାଥଙ୍କ ଅନ୍ନ ଭୋଗକୁ ଲୋକେ 'ମହାପ୍ରସାଦ' ରୂପେ ଛୁଆଁ, ଅଛୁଆଁ, 'ଶଙ୍କୁଡ଼ି ଓ ଅଇଁଠା ବାରଣ ନ ରଖି ଖାଇଥାଆନ୍ତି । 'ମହାପ୍ରସାଦ' ପରି ପବିତ୍ର ବସ୍ତୁ ପୃଥିବୀ ମଧ୍ୟରେ ଆଉ କିଛି ନାହିଁ—ଯେହେତୁ ସାକ୍ଷାତ ଲକ୍ଷ୍ମୀଙ୍କ ସାନ୍ନିଧ୍ୟ ହେତୁ ସେ ସମସ୍ତ ପବିତ୍ର ହୋଇଥାଆନ୍ତି ।

ଅଧ୍ୟାପକ ରତ୍ନାକର ପତିଙ୍କ ଭାଷାରେ, "ପୁରୀର ମହାପ୍ରସାଦ ପାଚକ ବା ସୂପକାର ହେଉଛନ୍ତି ସୂର୍ଯ୍ୟଦେବ । ସେଥିପାଇଁ ସେ ସବିତା ରୂପରେ ବିଦ୍ୟମାନ ରହି ଜଗତର ଯାବତୀୟ ଖାଦ୍ୟ-ସାମଗ୍ରୀ ପକ୍ୱ କରି ଖାଦ୍ୟୋପଯୋଗୀ କରୁଅଛନ୍ତି । ସେ ନାରି-କେଳର କଠିନ ଆବରଣ ଭେଦ କରି ତନ୍ମଧ୍ୟସ୍ଥ ରସକୁ ଅମୃତା-ୟମାନ କରୁଅଛନ୍ତି । ସେ ଏହିପରି ଅନ୍ୟାନ୍ୟ ଫଳ ମଧ୍ୟରେ ବିରାଜମାନ ହୋଇ ସ୍ୱୀୟ ଉତ୍ତାପରେ ସେଗୁଡ଼ିକୁ ସୁମଧୁର ଖାଦ୍ୟରେ ପରିଣତ କରୁଅଛନ୍ତି । ସେ ବୈଶ୍ୱାନର ରୂପରେ ସ୍ୱପକ୍ୱ ଖାଦ୍ୟ ଦ୍ରବ୍ୟ ପ୍ରସ୍ତୁତ କରୁଅଛନ୍ତି । ଜଗତର ନାଥଙ୍କ ପ୍ରସାଦ ଏହିପରି ଅହରହ ପ୍ରସ୍ତୁତ ହେବାରେ ଲାଗିଅଛି—ଯେପରି, ଏହାର ପ୍ରତୀକ ପୁରୀଧାମରେ ସମସ୍ତେ ମହାପ୍ରସାଦ ନ୍ୟୂନାଧିକ ପରିମାଣରେ, ଏପରି କି କିଛି ନ ହେଲେ ଖପରା ଗୃଠି ସେବନ କରନ୍ତି । ସେହିପରି ଜଗନ୍ନାଥଙ୍କ ଏ ବିଶ୍ୱମନ୍ଦିରରେ କେହି ଉପବାସ ନ ରହି ଯେନ କେନ ପ୍ରକାରେଣ ଏହି ଧାମରୁ ଖାଦ୍ୟ ସଂଗ୍ରହ

ପୂର୍ବକ ଉଦର ପୂରଣ କରୁଅଛନ୍ତି । ଏହି ଅନନ୍ତ ବିଶ୍ୱମନ୍ଦିରରେ ଅନନ୍ତ ବ୍ରହ୍ମଶକ୍ତି ବିଦ୍ୟମାନ ରହି ଜାତି ଧର୍ମ ନିର୍ବିଶେଷରେ ସମସ୍ତ ଜୀବଙ୍କର ଅବସ୍ଥିତି ଓ ବିକାଶ ନିମିତ୍ତ ସର୍ବବିଧ ଉପାଦାନ ସଞ୍ଚିତ କରି ରଖିଅଛନ୍ତି । ସେଥିପାଇଁ ତ ତାଙ୍କର ନାମ 'ଜଗନ୍ନାଥ' ।

ଏହାକୁ ଜାତିଧର୍ମ ନିର୍ବିଶେଷରେ ଅଗ୍ରଣ୍ଡାଳ କୁଳୀନ ବ୍ରାହ୍ମଣ ଓ ବୈଷ୍ଣବମାନେ ବିନା ଆପତ୍ତିରେ ଗ୍ରହଣ କରନ୍ତି ଓ ଶୂଦ୍ର ଓ ଚଣ୍ଡାଳ ଛୁଇଁଲେ ମଧ୍ୟ ସେ 'ମହାପ୍ରସାଦ'କୁ ବ୍ରାହ୍ମଣମାନେ ଭକ୍ଷଣ କରିବା ଶାସ୍ତ୍ରସିଦ୍ଧ । ଭିନ୍ନ ଭିନ୍ନ ପ୍ରଣାଳୀରେ ପ୍ରସ୍ତୁତ ଅନ୍ନ ଓ ମିଷ୍ଟାନ୍ନ 'ମହାପ୍ରସାଦ'ର ଭିନ୍ନ ଭିନ୍ନ ନାମ ଅଛି । ଯଥା— ଘିଅନ୍ନ, ଖେଚଡ଼ି, କାନିକା, ସରପୁଲି, କାନ୍ତି, ଛେନା ମାଣ୍ଡୁଆ, ତାଡ଼ିଆ, ଖୁରୁମାଗଜା ଇତ୍ୟାଦି । ଜଗନ୍ନାଥ ମନ୍ଦିରରେ ଯେଉଁ ବ୍ୟଞ୍ଜନମାନ ହୁଏ, ସେଥିରେ ବିଲାତିଆଳୁ, ଲାଉ, ସଜନାଛୁଇଁ, ପିଆଜ, ରସୁଣ ଆଦି କେତେକ ପରିବା ମିଶେ ନାହିଁ ।

ସ୍କନ୍ଦ ପୁରାଣରେ କଥିତ ଅଛି ଯେ, ପୁରୁଷୋତ୍ତମଙ୍କର ନିର୍ମାଲ୍ୟ ଅମୃତ ଅଟେ ।

ଏହି ମହାପ୍ରସାଦର ସ୍ପର୍ଶରେ ସକଳ ବସ୍ତୁ ପବିତ୍ର ହୁଏ ଏବଂ ତାହା ଦାନ ଓ ଭୋଜନ କଲେ ପ୍ରଭୁଙ୍କଠାରେ ଅଚଳାଭକ୍ତି ଉତ୍ପନ୍ନ ହୋଇ ଜ୍ଞାନ ଲାଭ ହୁଏ । ସେହି ହେତୁ ମୁକ୍ତିଲାଭ ଘଟିଥାଏ । ଅତଏବ ନିର୍ମାଲ୍ୟ ଦାନ ପ୍ରଶସ୍ତ ଦାନ ଅଟେ ।

ରୁଦ୍ରଯାମଳରେ କଥିତ ଅଛି ଯେ, କଳିକାଳରେ ଲୋକେ ସାଧାରଣତଃ ପାପଭାଗୀ ହୁଅନ୍ତି । ସେମାନଙ୍କ ପାପଧ୍ୱଂସ ପାଇଁ ନିର୍ମାଲ୍ୟ ହିଁ ସର୍ବପ୍ରଧାନ ବସ୍ତୁ । ଏହି ନିର୍ମାଲ୍ୟ ଭକ୍ତିରେ ଲୋଭରେ ବା କ୍ଷୁଧାନିବାରଣ ପାଇଁ, ଆକଣ୍ଠ ଭକ୍ଷଣ କଲେ ପ୍ରାଣୀ ସମସ୍ତ ପାତକରୁ ମୁକ୍ତ ହୋଇ ପବିତ୍ର ହୁଅନ୍ତି ।

ଯେଉଁ ଲୋକ ଭକ୍ତସହକାରେ 'ନୀମାଲ୍ୟ' ଭକ୍ଷଣ କରେ, ସେ ଭଗବାନଙ୍କ ସାନିଧ୍ୟ ମୁକ୍ତି ନିଶ୍ଚୟ ଲାଭକରିବ ।

---

# ଜଗନ୍ନାଥଙ୍କ ସ୍ତବ

ଜୟ ଜୟ ଜଗନ୍ନାଥ ଜଗତ କରତା
ଜୟ ଜୟ ଜଗନ୍ନାଥ ସର୍ବ ପିତାମାତା ।
ଜୟ ଜୟ ଜଗନ୍ନାଥ ଶଙ୍ଖଚକ୍ରଧାରୀ
ଜୟ ଜୟ ଜଗନ୍ନାଥ ନୀଳାଦ୍ରି ବିହାରୀ ।
ଜୟ ଜୟ ଜଗନ୍ନାଥ ଶ୍ରୀମଧୁସୂଦନ
ଜୟ ଜୟ ଜଗନ୍ନାଥ ଜୀବ-ପ୍ରାଣଧନ ।
ଜୟ ପତିତ ପାବନ ଦୀନଜନ ବନ୍ଧୁ
ଜୟ ଶରଣ ରକ୍ଷକ ଦେବ କୃପାସିନ୍ଧୁ ।
ଜୟ ଭକତବତ୍ସଳ ପଙ୍କଜନୟନ
ଜୟ ପାତକନାଶନ ଦରିଦ୍ରର ଧନ ।
ଜୟ ଜୟ ଜଗନ୍ନାଥ ମୋହନ ମୂରତି
ନିର୍ମଳ ଶାରଦ-ମୁଖ ସୁଶୋଭନ ମୂର୍ତ୍ତି ।
ସୁସଞ୍ଚ ମୋହନଠାଣି ମନୋହର ଛବି
ତ୍ରିଭୁବନ-ଭୁଲା ବେଶ ଅହା କି ମାନଇ ।
ଏ ସଂସାର ରଚନାଟି ଯାର ଖେଳଘର
ଉତ୍ପତ୍ତି ସ୍ଥିତି ପ୍ରଳୟ ଅଙ୍ଗରେ ଯାହାର ।
ଏମନ୍ତ ପ୍ରକାରେ ଯାର କୀରତି ଉକତି
ଅନନ୍ତ ଭାରି ଖଣ୍ଡନେ ଯାର ଉତପତି ।

କହନ୍ତି ଦୟାରେ ଜଗଜ୍ଜନ ଦୁଃଖ ଦହ
ତେଣୁ ସ୍ୱାମୀ ତୁମ୍ଭେ ଜଗନ୍ନାଥ ନାମ ବହ ।
ଜନମାନଙ୍କ ପାଳନ କରିବା ନିମନ୍ତେ
ଭୁବନ ପାଳକ ନାମ ବହିଲ ଜଗତେ ।
ଲୋକମାନେ ଜାଣିବାରେ ତୁମ୍ଭ ନାମ ଅର୍ଥ
ତେଣୁ ରୂପଧାରୀ ହୋଇ ଅଛ ଜଗନ୍ନାଥ ।
ବ୍ରହ୍ମା ବିଷ୍ଣୁ ଈଶ୍ୱର ଆବର ଦିନମଣି
ଏହି ଚାରିରୂପେ ବିଜେ ପ୍ରଭୁ ଚିନ୍ତାମଣି ।
ନୀଳଚକ୍ର ଶୋଭାପାଏ ଗଗନ ମଣ୍ଡଳେ
ବାଜନ ପଡ଼ନ୍ତି ଭୋଗ ଲାଗେ ରସାତଳେ ।
ଦୁଷ୍ଟ ବିନାଶନ ଦେବ ସନ୍ଥଙ୍କ ପାଳନେ
ଅବତାର ହୁଅ ଭବେ ଦେବ କ୍ଷଣେ କ୍ଷଣେ ।
ଅନନ୍ତ ଶୟନ ତେଜି ଆସ ଏ ମହୀରେ
ନାନା ଲୀଳା କର ନାଥ ହରଷ ଅନ୍ତରେ ।
କଳିଯୁଗେ ମର୍ତ୍ତ୍ୟ ବଇକୁଣ୍ଠ ନୀଳାଚଳେ
ପୂଜା ପାଉଅଛ ଦେବ ଏ ମହୀମଣ୍ଡଳେ ।
ଦେବତା କିନ୍ନର ନର ଆଦି ଯକ୍ଷ ରକ୍ଷ
ଦର୍ଶନ କରନ୍ତି ଆସି ପ୍ରତ୍ୟେକ ପ୍ରତ୍ୟକ୍ଷ ।
ଦର୍ଶନ କରନ୍ତି ତବ ଚରଣ-କମଳ
ତେଣୁ ମର୍ତ୍ତ୍ୟ ବଇକୁଣ୍ଠ ଅଟେ ନୀଳାଚଳ ।
ଋତୁରାଜ ବସନ୍ତ ଯେ ସତତ ବିହରେ
ରତ୍ନାକର ପାଦପଦ୍ମ ଧୁଏ ନିରନ୍ତରେ ।
ତୁମ୍ଭ ପ୍ରିୟ ନିକେତନ ବିହାର ଯେ ତୀର୍ଥ
କୋଟି କୋଟି ନରନାରୀ ହୁଅନ୍ତି ପବିତ୍ର

ମହାପ୍ରସାଦ ସେବଣି ହୁଅନ୍ତି କୃତାର୍ଥ
ଏକାଧାରେ ପାଅନ୍ତି ଯେ କାମ ମୋକ୍ଷ ଅର୍ଥ ।
ପଶୁପକ୍ଷୀ କୀଟ ପତଙ୍ଗ ଯେ ଆଦ କରି
ଏହି ସ୍ଥାନେ ମରି ଭବୁ ହୋଇଯାନ୍ତି ପାରି ।
ନମସ୍ତେ ଜଗତ-ପତି ନାହିଁଆ ସୁନ୍ଦର
ଏ ସାରା ସଂସାର ଯାର ଅଟେ ଖେଳଘର ।
କ୍ଷଣକେ କନ୍ଦାଏ ପୁଣି କ୍ଷଣକେ ହସାଏ
ରାଜାଧିରାଜଙ୍କୁ ଯେହୁ ଭିକାରି କରାଏ ।
ଦାଣ୍ଡର ଭିକାରି ଯାର ଯୋଗୁ ହୁଏ ରାଜା
ଶିଳ, ଶିଳପୁଅ ପାଉଛନ୍ତି ବହୁ ପୂଜା ।
ପର୍ବତ ସ୍ଥାନରେ ଯେହୁ କରଇ ସାଗର
ସାଗର ଉପରେ ଉଠେ ମହା ଗିରିବର ।
ସୁନ୍ଦର କୁତ୍ସିତ ହୁଏ କୁତ୍ସିତ ସୁନ୍ଦର
ପଙ୍ଗୁ ଲଙ୍ଘିଯାଏ ଗିରି ବଡ଼ ପରଖର ।
ଅଗତି ଲୋକର ଗତି କୃଷ୍ଣ ତୋର ନାମ
ତୁ ସର୍ବ ମଙ୍ଗଳ ତୋର ଅଶେଷ ଭିଆଣ ।
ଏପରି ମାୟାବୀ ଦେବ ଜଗତ କାରଣ
ତୋର ମାୟା କଳିବାକୁ କେ ଅଛି ସକ୍ଷମ ।
କୋଟି ସୂର୍ଯ୍ୟ କୋଟି ଚନ୍ଦ୍ର କୋଟି ଗ୍ରହଗଣ
କୋଟି କୋଟି ପୃଥିବୀ ଯା ଅଟଇ ଭିଆଣ ।
ପ୍ରତି ଲୋମମୂଳେ କୋଟି ପୃଥିବୀ ଯାହାର
ନଖ କୋଣେ କୋଟି କୋଟି ଶୋଭେ ପାରାବାର ।
ଚକ୍ଷୁ ଯାର ମହାକାଶଠାରୁ ବଳି ବଡ଼
ହସ୍ତ ଯାର କୋଟି ବିଶ୍ୱ କରଇ ଉହାଡ଼ ।

ଅହେ ପ୍ରଭୁ ଜଗନ୍ନାଥ ଜଗତର ପ୍ରାଣ
ତୁମ୍ଭେ ପ୍ରଭୁ ଦୀନବନ୍ଧୁ ଜଗତ କାରଣ ।
ଭକତ ବତ୍ସଳ ତୋର ନାମ ଭଗବାନ
ଭାବଗ୍ରାହୀ ବୋଲି ତୋତେ ବୋଲନ୍ତି ସୁଜନ ।
ଏ ମୋହର କୋଟି କୋଟି ଜନ୍ମ ତପବଳେ
ଦେଖିଲଇଁ ପରଂବ୍ରହ୍ମ ରୂପ ବେନି ଡୋଳେ ।
ଲଭିଲି ପରମ ଗତି ଶ୍ରୀମୁଖକୁ ଚାହିଁ
ଦର୍ଶନେ ପ୍ରସନ୍ନ ମୋତେ ହେବ ଭାବଗ୍ରାହୀ ।
ପୁତ୍ର ଅପରାଧ ଯେହ୍ନେ ପିତା କ୍ଷମା କରେ
ସଖା ଅପରାଧ ଯେହ୍ନେ ସଖା ଯେ ନଧରେ
ପତ୍ନୀ ଅପରାଧ ଯେହ୍ନେ ପତି କ୍ଷମାକରି
ସେ ରୂପେ ମୋ ଅପରାଧ କ୍ଷମାକର ହରି
ମୁହିଁ ତୋହର ସେବକ ଅଟଇ ଯୁକତେ
ଏ ଭବସାଗରୁନାଥ ପାରିକର ମୋତେ

———

# ଜଗନ୍ନାଥ ମହାପ୍ରଭୁଙ୍କର ରୂପ ବର୍ଣ୍ଣନା

ଭକ୍ତକବି ଦୀନକୃଷ୍ଣ

ପ୍ରଥମେ କବି ଜଗନ୍ନାଥ ମହାପ୍ରଭୁଙ୍କର ବନ୍ଦନା କରି ରସକଲ୍ଲୋଳ କାବ୍ୟ ଆରମ୍ଭ କରିଅଛନ୍ତି । ନୀଳାଚଳନାୟକ ଜଗନ୍ନାଥଙ୍କୁ ଧ୍ୟାନ କରିବାକୁ ସେ ସାଧୁମାନଙ୍କୁ ନିବେଦନ କରି-ଅଛନ୍ତି ।

ଜଗନ୍ନାଥଙ୍କର ମୁଖର ଶୋଭା, ଚନ୍ଦ୍ରମାର ଶୋଭାଠାରୁ ସୁନ୍ଦର । ଏହି ମୁଖଶ୍ରୀ ଦର୍ଶନ କଲେ, ସଂସାରର ଦୁଃଖ ଦୂର ହୁଏ । ନେତ୍ରକମଳ ଅଶେଷ ସୁଖଦାୟକ—କଳାଡୋଳା ଭ୍ରମର ଚମ୍ବିଲ ପରି ମନେ ହୁଏ । କପାଳରେ ସୁବର୍ଣ୍ଣର ଭୂଷଣ । ଏହି ରୂପର ଶୋଭା ଦେଖିଲେ କାହାର ଆନନ୍ଦ ଜାତ ନ ହୁଏ ? ରକ୍ତିମା ଅଧରର ସୌନ୍ଦର୍ଯ୍ୟ ବର୍ଣ୍ଣନାତୀତ—ଏହାର ଦର୍ଶନରେ କବି ମଧ୍ୟ ବାକ୍‌ଶକ୍ତି ବିହୀନ ହୋଇପଡ଼ନ୍ତି । ତାଙ୍କ ମୁଖରୁ ଭାଷା ନିଃସୃତଃ ହୁଏ ନାହିଁ ।

କାନରେ ମକର କୁଣ୍ଡଳ, ଭାଲ୍‌ଦେଶରେ ତିଳକ, ହସ୍ତରେ କଚଟି, ବକ୍ଷଦେଶରେ ପଦକ ଶୋଭା ପାଉଅଛି । ଶଙ୍ଖ ସଦୃଶ ଶୁଭ୍ର କଣ୍ଠରେ . ଶ୍ରେଷ୍ଠ କୌସ୍ତୁଭମଣିର ଭୂଷଣ—କଳୁଷରୂପକ ଅନ୍ଧକାରକୁ ନାଶ କରିବା ଲାଗି ସତେ ଯେପରି ଜଗନ୍ନାଥ ସୂର୍ଯ୍ୟଦେବଙ୍କ ସଦୃଶ୍ୟ ବିରାଜମାନ ।

କଳ୍ପବୃକ୍ଷରେ ନାନା ରତ୍ନ ଫଳରେ ଶୋଭା ପରି ମୟୂର ପୁଚ୍ଛରେ ଶ୍ରୀଅଙ୍ଗ ବିମଣ୍ଡିତ । ହସ୍ତରେ ଶଙ୍ଖ—ଚକ୍ର ଶୋଭିତ । କଟିଦେଶରେ ସୁବର୍ଣ୍ଣ ଅଳଙ୍କାର—ଅଙ୍ଗରେ ପୀତବସନ ପରିଧାନ—ଦୃଷ୍ଟିପାତରେ ସତେ ଯେପରି ଦେବ ମାନବଙ୍କର ପରିତ୍ରାଣ ସମ୍ଭବ । ପୁରୀ ଧାମରେ ଶ୍ରେଷ୍ଠ ରସିକ ସେ । ପଦ୍ମନୟନା ଲକ୍ଷ୍ମୀ ଦେବୀଙ୍କର ଜୀବନପ୍ରିୟ ସେ—ନୀଳାଚଳରେ ଅଧିଷ୍ଠିତ ହୋଇ ଅନେକ ଲୀଳା ସମ୍ପାଦନ କରିଅଛନ୍ତି ।

ଭକ୍ତକବି ନିତ୍ୟାନନ୍ଦ ଜଗନ୍ନାଥଙ୍କ ଦର୍ଶନ ଲାଭକରି ସେହି-କ୍ଷଣି ତାଙ୍କର ରୂପକୁ ବର୍ଣ୍ଣନା କରିଅଛନ୍ତିଃ—

ନୀଳନବଘନ ସୁନ୍ଦରବଦନ ଶ୍ରୀମୁଖମାଧୁରୀ ଅତି ଶୋଭା ।
ଶିରେ ଶିଖୀଚୂଳ ମାଳତୀ ବକୁଳ ଝଙ୍କାରି ମଧୁପକୁଳ ପ୍ରଭା ।୧।

ଅଳକାବଳୀ କି ଅଳି ଶିଶୁପନ୍ତି ଶ୍ରୀମୁଖ ନବ ନଳିନ ଜାଣି ।
କପାଳେ ଚନ୍ଦନବିନ୍ଦୁ ଶୋଭିବନ ଉଦେ ହୋଇଛନ୍ତି କି ନିଶାମଣି ।।
ଭ୍ରୂଲତା ସୁନ୍ଦର କିଏ କାମକର କୋଦଣ୍ଡ ରଖିଛନ୍ତି ପ୍ରତେ ହୋଏ ।
ବିକଚ କମଳ ପ୍ରାୟ ବେନିଡୋଳା ଲହରି ଖେଳଇ କର୍ଣ୍ଣଯାଏଁ ।।
ମନୋହର ନାସାପୁଟେ ସୁଗଠିତ ବର୍ତ୍ତୁଳ ଗଜମୁକୁତାବର ।
ବିମ୍ବଫଳ-ଜ୍ୟୋତ ଅଧରପଲ୍ଲବ ମନ୍ଦହାସ ମୋହେ ତ୍ରିପୁର ।।
ମକର କୁଣ୍ଡଳ କି ରବିମଣ୍ଡଳ କର୍ଣ୍ଣେ ଝଟକନ୍ତି ତେଜ ଦେନି ।
ଭକତ-ଦୁଃଖ-ତିମିର ନାଶିବାକୁ ଉଦେ ହୋଇଛନ୍ତି କି ରବି ବେନି ।।
ଗୃହ୍ଵକଣ୍ଠେ ଶୋହେ ମୁକୁତା କନକକଣ୍ଠୀ ମିଶାମିଶି ବନମାଳ ।
କଉସ୍ତୁଭ ମଣି ଗୁରୁ ତା'ର ଜଣି ଅନୁପମର ତରଙ୍ଗକୂଳ ।୬।
ମତ୍ତ କରିବର କରକୁ ନିନ୍ଦଇ ମୃଣାଳ ନଳିନ ବାହୁ ବେନି ।
କଙ୍କଣ ବାହୁଟି ମୁଦ୍ରିକା ଅଙ୍ଗୁଷ୍ଠି ଅଶେଷ ଶୋଭି ମୁରଲୀ ଦେନି ।୭।
ହୃଦୟ ବିସ୍ତାର ଶ୍ରୀବତ୍ସପୟୂର ଚର୍ଚ୍ଚିତ ଚନ୍ଦନ ମୃଗମଦେ ।
କଟିରେ କିଙ୍କିଣୀ ଶ୍ରେଣୀ କଣିକଣି ପୀତପଟ ସୌଦାମିନୀ ଉଦେ ।।
ପୟୂରଯୁଗଳେ ନୂପୁର ମଞ୍ଜୁଳ ରୁଣିତ ଶବଦେ ଧ୍ୱନିକରେ ।
ଅରୁଣ ଚରଣ ତଳେ ବିରାଜିତ ଅଷ୍ଟାଦଶ ଚିହ୍ନ ଯହିଁ ଧରେ ।୮।
ଚତୁର୍ବର୍ଗ ମଧୁ ଯହିଁରୁ କ୍ଷରତ ବାଞ୍ଛାକଳ୍ପତରୁ ବୋଲି ଯାରେ ।
ଅନ୍ତେ ସିଦ୍ଧି ବୁଦ୍ଧି ଅପରାଧୀ ନିତ୍ୟାନନ୍ଦ ବୋଲେ ରଖିବାରେ

———

## ଶ୍ରୀକୃଷ୍ଣ

ଭାଗବତରେ ଭଗବାନ ଶ୍ରୀକୃଷ୍ଣ ଦେବତାମାନଙ୍କୁ କହିଥିଲେ ଯେ, ସେ ହେଉଛନ୍ତି ବ୍ରହ୍ମା ଓ ଶିବ ଏବଂ ଏହି ବିଶ୍ୱ-ବ୍ରହ୍ମାଣ୍ଡର ଏକମାତ୍ର କାରଣ ।

ଅହଂ ବ୍ରହ୍ମା ଚ ସର୍ବଶ୍ଚ
ଜଗତଃ କାରଣଂ ପରମ୍ ।

ତ୍ରିମୂର୍ତ୍ତି ହେଉଛନ୍ତି ଏକ ଓ ତାଙ୍କର ଶକ୍ତି ମଧ୍ୟ ଏକ । ସେମାନଙ୍କ ମଧ୍ୟରେ ଉଚ୍ଚ ଓ ନୀଚ ଭେଦଭାବ ନାହିଁ । ତେଣୁ ସରସ୍ୱତୀ, ଲକ୍ଷ୍ମୀ ଓ ପାର୍ବତୀ ହେଉଛନ୍ତି ତ୍ରିଶକ୍ତି ଏବଂ ସେମାନେ ଯଥାକ୍ରମେ ବ୍ରହ୍ମା, ବିଷ୍ଣୁ ଓ ମହେଶ୍ୱରଙ୍କ ସହିତ ସମ୍ପର୍କ ରଖିଛନ୍ତି ।

## ଈଶ୍ୱର ଓ ଶକ୍ତି

ଈଶ୍ୱର ଓ ତାଙ୍କର ଶକ୍ତି ହେଉଛି ଏକ । ଗୀତାରେ ଶ୍ରୀକୃଷ୍ଣ କହିଛନ୍ତି—

ପିତାମହସ୍ୟ ଜଗତୋ
ମାତା ଧାତା ପିତାମହଃ ।
( ୯ମ ଅଃ ୧୭ ଶ୍ଳୋଃ )

"ମୁଁ ଏହି ଜଗତରେ ପିତା, ମାତା, ବିଧାତା ଓ ପିତାମହ ।"

କୃଷ୍ଣ—ବିଷ୍ଣୁଙ୍କର ଅଷ୍ଟମ ଅବତାର । ମହାଭାରତରେ କୃଷ୍ଣଙ୍କ ସ୍ଥାନ ଅତି ଉଚ୍ଚରେ ।"

ଶ୍ରୀମଦ୍ ଭଗବତଗୀତାରେ କୃଷ୍ଣ କହିଛନ୍ତି ଯେ, "ଯେତେ-ବେଳେ ଧର୍ମର ଗ୍ଲାନି ଓ ଅଧର୍ମର ଅଭ୍ୟୁଥାନ ହୁଏ ସେତେବେଳେ

ମୁଁ ନିଜକୁ ସୃଷ୍ଟିକରେ, ସାଧୁମାନଙ୍କର ପରିତ୍ରାଣ ଦୁଷ୍କୃତର ବିନାଶ ଓ ଧର୍ମସ୍ଥାପନ ସକାଶେ ମୁଁ ଯୁଗେ ଯୁଗେ ଆବିର୍ଭୂତ ହୁଏ ।

ବୈଷ୍ଣବମତେ ଶ୍ରୀକୃଷ୍ଣ ଈଶ୍ୱରରୂପେ କଳ୍ପିତ ହୋଇଛନ୍ତି । ସେ ପରମାତ୍ମା ଓ ରାଧା ତାଙ୍କର ଅହ୍ଲାଦନୀ-ଶକ୍ତି । ଭକ୍ତ ହେଉଛନ୍ତି ଜୀବାତ୍ମା ।

ବୈଦିକ ଋଷି କୃଷ୍ଣ, ମହାଭାରତର ରାଜନୀତିକ ଓ ଯୋଦ୍ଧା କୃଷ୍ଣ, ଗୀତାର ଦାର୍ଶନିକ କୃଷ୍ଣ, ବୈଷ୍ଣବମାନଙ୍କର ପ୍ରେମାସ୍ପଦ କୃଷ୍ଣ, ଓ ପୌରାଣିକ କୃଷ୍ଣ ମିଳି ଏକ ଅବତାରର ସୃଷ୍ଟି ହୋଇଅଛି ।

---

## କୃଷ୍ଣ ସ୍ତବ

ଜୟ ଜୟ କୃଷ୍ଣଚନ୍ଦ୍ର ନବ ଜଳଧର
ଜୟ ଜୟ ବଂଶୀଧାରୀ ଗୋକୁଳ ସୁନ୍ଦର ।
ଜୟ ଜୟ ନାଚୁଅ ଯେ ନବୀନ କିଶୋର
ଜୟ ଜୟ ଜୟ କୃଷ୍ଣ ରସିକଶେଖର ।
ଜୟ ଜୟ ସୁ-ରସିକ ନାଗରଙ୍କ ବର
ଜୟ କୃଷ୍ଣ ଜୟ କୃଷ୍ଣ ରସରାସେଶ୍ୱର ।
ଜୟ ଜୟ ଜୟ କୃଷ୍ଣ ଜଗତ ଠାକୁର
ଜୟ ଜୟ ଜୟ କୃଷ୍ଣ ଗର୍ବୀ ଗର୍ବହର ।
ଜୟ ଜୟ ଜୟ କୃଷ୍ଣ କଂସ ନିସୂଦନ
ଜୟ ଜୟ ଜୟ ଜୟ କାଳୀୟମର୍ଦ୍ଦନ ।
ଅଗତିର ଗତି ତୁମ୍ଭେ, ତୁମ୍ଭେ ଦୀନବନ୍ଧୁ
ଜଗତ-ତାରଣ ତୁମ୍ଭେ, କୃପାମୟ ସିନ୍ଧୁ ।

ଗର୍ବଖର୍ବକାରୀ ତୁମ୍ଭେ ଅଟ ଦୟାମୟ
ବ୍ୟାପିଣ ରହୁଛ ଦେବ ଚରାଚର ଚୟ ।
ଅଖିଳ ରଞ୍ଜନ ତୁମ୍ଭେ, ତୁମ୍ଭେ ନିରାକାର
ବିଶ୍ୱକର୍ତ୍ତା ବିଶ୍ୱପିତା ଦେବ ନିର୍ବିକାର ।
ତୁମ୍ଭ ଠାରୁ ବିଶ୍ୱ ସୃଷ୍ଟି ପୁଣି ସ୍ଥିତି ହୁଏ
ଅନ୍ତଃକାଳେ ତୁମ୍ଭ ଯୋଗୁ ଘଟଇ ପ୍ରଳୟେ ।
ପୂର୍ଣ୍ଣବ୍ରହ୍ମ ନାରାୟଣ ଦେବ ନିରଞ୍ଜନ
ଦୟାମୟ ଯୋଗେଶ୍ୱର ସାଧନାର ଧନ ।
ପରମ ପୁରୁଷ ତୁମ୍ଭେ ଧ୍ୟାନର କାରଣ
ମନବାଞ୍ଛା ପୂର୍ଣ୍ଣକାରୀ ଦେବ ନାରାୟଣ ।
ପତିତ ପାବନ କୃଷ୍ଣ ଦୀନଜନ ବନ୍ଧୁ
ପାପ ତାପ ବିନାଶନ କରୁଣାର ସିନ୍ଧୁ ।
ଜୀବେ ଜାଣିକାରୀ ତୁମ୍ଭ ମହିମା ଅପାର
ବ୍ରହ୍ମା ଶିବ ଇନ୍ଦ୍ରାଦିଙ୍କୁ ଅତି ଅଗୋଚର ।
ସର୍ବତୀର୍ଥ ବିଦ୍ୟମାନ ତୁମ୍ଭ ଶ୍ରୀଚରଣେ
ସବୁରି ଶରଣ୍ୟ ତୁମ୍ଭେ ଏ ତିନିଭୁବନେ ।
ତୁମ୍ଭେ ଦେବ-ଦାମୋଦର ପରମ ଆଶ୍ରୟ
ପ୍ରଣତଜନରେ ଦୟା କର ଦୟାମୟ ।
ଅନାଥ ବାନ୍ଧବ ତୁମ୍ଭେ ଅଗତିର ଗତି
ଭବ ସିନ୍ଧୁ କର୍ଣ୍ଣଧାର ଲାବଣ୍ୟ ମୂରତି ।
ରାଧିକାମୋହନ ତୁମ୍ଭେ ଗୋପିକା ରମଣ
ତୁମ୍ଭେ ସ୍ଥୂଳ ତୁମ୍ଭେ ସୂକ୍ଷ୍ମ ପତିତପାବନ ।
ତୁମ୍ଭେ ଗିରି ତୁମ୍ଭେ ଭୂମି ତୁମ୍ଭେ ଜଳସ୍ଥଳ
ନଦନଦୀ ତୁମ୍ଭେ ସର୍ବ ଅଟ ଚରାଚର ।

ତୁମ୍ଭେ ବାୟୁ ତୁମ୍ଭେ ସୂର୍ଯ୍ୟ ଚନ୍ଦ୍ର ହୁତାଶନ
ତୁମେ ଯକ୍ଷ ତୁମେ ରକ୍ଷ ଜୀବଙ୍କ ଜୀବନ ।
ବ୍ରହ୍ମାଣ୍ଡର ମୂଳ ତୁମେ ଅଟହେ ଦୟାମୟ
ବ୍ୟାପିଣ ରହିଛ ସଦା ଏହି ବିଶ୍ବଚୟ ।
ବ୍ରହ୍ମାଣ୍ଡ ସୃଜନ ହୁଏ ତୁମ୍ଭର ଇଚ୍ଛାରେ
ବ୍ରହ୍ମାଣ୍ଡ କ୍ଷଣକେ ଲୋପକର ଅକ୍ଳେଶରେ ।
ଶ୍ରୀପଦ କାନ୍ତାସ୍ବି ତୁମ୍ଭେ ଜଗତର ନାଥ
ତବ ପଦ୍ମପାଦେ କରୁ କୋଟି ପ୍ରଣିପାତ ।
ଯୋଗୀଗଣ ପଦ ସେବୁଥାନ୍ତି ନିରନ୍ତର
ତଥାପି ତୁମ୍ଭର ଅନ୍ତ ନ ପାଆନ୍ତି ନର ।
ମଧୁଲୋଭେ ମତ୍ତ ଯଥା ହୁଏ ମଧୁକର
ତବ ପଦେ ତଥା ରହିଥାଉ ମୋ ଅନ୍ତର ।



# ରାମଚନ୍ଦ୍ର ସଚ୍ଚରିର ମୂଳାଧାର ତମେ

( ଭକ୍ତ କବି ତୁଳସୀ ଦାସଙ୍କର ରାମଚନ୍ଦ୍ରଙ୍କ
ରୂପ ଓ ଗୁଣ ବର୍ଣ୍ଣନା )

ତମେ କୋଟି କନ୍ଦରପ ସମାନ ସୁନ୍ଦର
କୋଟି ସୂର୍ଯ୍ୟ ସମ ତମେ ଅଟ ତେଜସ୍ବର ।
ତମେ କୋଟି ଦଣ୍ଡଭୁଜା ଶତ୍ରୁ ନାଶକାରୀ
ତମେ କୋଟି ମଘବାର (ଇନ୍ଦ୍ର) ସମ ଭୋଗକାରୀ ।
ଅଟ ମହାବ୍ୟୋମ ତମେ ନାହିଁ ତମ ଅନ୍ତ
ରାମ ତମେ କୋଟି ବାୟୁ ସମ ବଳବନ୍ତ ।

କୋଟି ଚନ୍ଦ୍ର ସମ ତମେ ଅଟ ସୁଶୀତଳ
କୋଟି ହିମଗିରି ତମେ ଅତୀବ ଅଚଳ ।
କୋଟି ପାତାଳର ସମ ତମେ ତ ଅଗାଧ
କୋଟି ଯମ ସମ ତମେ ଜୀବନେ ପ୍ରମାଦ ।
କୋଟି ତୀର୍ଥଠାରୁ ତମେ ପବିତ୍ର ଶ୍ରୀରାମ
ତମେ ଅଟ ଏ ସୃଷ୍ଟିର ମୁକ୍ତ ପୁଣ୍ୟଧାମ ।
କୋଟି କାମଧେନୁ ତମେ କାମନାର ଫଳ
ତମେ ସୃଷ୍ଟି ପାଳ, ତମେ କର ହେ ସଂହାର ।
ତମେ କୋଟି ଧୂର୍ଜଟି ହେ ସଂହାର-ଧର୍ମିକା
ତମେ ଅଟ କୋଟି ବିଷ୍ଣୁ ଜୀବନ-ଭୂମିକା ।
ତମେ କୋଟି ସରସ୍ୱତୀ ସମ ସୁଚତୁର
କୋଟି ବ୍ରହ୍ମା ସମ ତମେ ସୃଷ୍ଟିରେ ଆତୁର ।
କୋଟିଏ କୁବେର ସମ ତମେ ଧନବାନ
କୋଟି ସିନ୍ଧୁ ସମ ତମେ ଗମ୍ଭୀର, ମହାନ ।
ଏହୁ ମହା ବିଶ୍ୱ ଅଟେ ଅନନ୍ୟରୂପ ତମ
ବ୍ରହ୍ମାଣ୍ଡ ବିରାଜେ ତୁମ ଅଙ୍ଗରେ ବିଭିନ୍ନ ।
ପାତାଳ ତମର ପାଦ ବ୍ରହ୍ମଲୋକ ଶିର
ସୂର୍ଯ୍ୟ ତମ ଚକ୍ଷୁ, ନାଶା ଅଶ୍ୱିନୀକୁମାର ।
କାଳ ତମ ଭ୍ରୂଭଙ୍ଗି ହେ । କେଶ ମେଘମାଳ
ସୃଷ୍ଟି ଓ ପ୍ରଳୟ ତୁମ ଉପରେ ନିର୍ଭର ।
ଦିଗ ତମ କର୍ଣ୍ଣ, ଦିବା-ନିଶି ଆଖିପତା
ବାୟୁ ତମ ନିଃଶ୍ୱାସ ହେ । ବେଦ ତୁମ କଥା ।
ଲୋଭନିୟ ଅଟେ ତମ ଯୁଗଳ ଅଧର
ଯମ ତମ ତୀକ୍ଷ୍ଣ ଦନ୍ତ, ମାୟା ହାସ୍ୟରୋଳ ।

ରୋମ ତମ ଅଟେ ଅଷ୍ଟାଦଶ ବନସ୍ପତି
ମହୀଧର ସବୁ ତମ ଅବୟବ ଅସ୍ଥି ।
ନଦୀ ତମ ଅନ୍ତ-ନାଡ଼ି, ସିନ୍ଧୁ ଯେ ଉଦର
ରାମଚନ୍ଦ୍ର, ତମେ ସବୁରର ମୂଳାଧାର ।
ବ୍ରହ୍ମା ତମ ବୁଦ୍ଧି ଅଟେ ଶିବ ଅହଂତତ୍ତ୍ୱ
ଚନ୍ଦ୍ର ଅଟେ ମନ ତମ ମହତତ୍ତ୍ୱ ଚିତ୍ତ ।
ଏ ବିରାଟ ବ୍ରହ୍ମାଣ୍ଡ ଯେ ତୁମ ରୂପରାଶି
ରାମ ତମେ ସର୍ବବ୍ୟାପୀ ଚରାଚରବାସୀ ।

## ରାମଙ୍କର ସ୍ତବ

ଜୟ ଜୟ ରାମଚନ୍ଦ୍ର ନବଘନ ଶ୍ୟାମ
ଜୟ ଜୟ ରାମଚନ୍ଦ୍ର ଦୁର୍ବାଦଳ-ଶ୍ୟାମ ।
ଜୟ ଜୟ ରାମଚନ୍ଦ୍ର କୋଦଣ୍ଡ-ଧାରଣ
ଜୟ ଜୟ ରାମଚନ୍ଦ୍ର ଦନୁଜ-ନାଶନ ।
ଜୟ ଜୟ ରାମଚନ୍ଦ୍ର ସର୍ବଗୁଣାଧାର
ଜୟ ଜୟ ରାମଚନ୍ଦ୍ର ବିଶ୍ୱମାୟାକାର ।
ଜୟ ଜୟ ରାମଚନ୍ଦ୍ର ଯୋଗାଧିପୁରୁଷ
ଜୟ ରାମଚନ୍ଦ୍ର ମୋର ପ୍ରିୟ ମାନସ ।
ରାମ ରାମ ରାମ ସଦା ଚିନ୍ତ ସାଧୁଜନେ
ରାମ ରାମ ରାମ ସଦା ଜପ ହୃଦମନେ ।
ରାମ ରାମ ରାମ ସଦା ଭଜ ନିରନ୍ତର
ରାମ ରାମ ରାମ ସଦା ସ୍ମର ସାଧୁ ନର ।

ରାମ ବିନା କାମ ନାଶ ନ ହୋଇବ ଭବେ
କାମ ନାଶ ନ ହୋଇଲେ ଘାଣ୍ଟିହେବ ତେବେ ।
ଅଗାଧ ସାଗର ଏହି ଭବ ପାରାବାର
ତରିବାକୁ ରାମନାମ ଏକା କର୍ଣ୍ଣଧାର ।
ଥରେ ମାତ୍ର ସ୍ମରି ଦନେ, ଦନେ ଦଶରଥ
ସପତ ଜନମ ବ୍ରହ୍ମହତ୍ୟାରୁ ମୁକତ ।
ରାମ ନାମ ଭଜ ମହାପାପୀ ରତ୍ନାକର
ହେଲେ ପୁଣି ବାଲ୍ମୀକ ନାମେ ମୁନିବର ।
ଏପରି ପବିତ୍ର ନାମ ରାମନାମ ସାର
ରାତଦନ ଜପକର ହୃଦୟ ମଧ୍ୟର ।
ହୃଦ ସିଂହାସନେ ପୂଜ ଶ୍ରୀରାମଚରଣ
ଆନନ୍ଦେ ତହିଁରେ ଦଅ ଭକତି-ଚନ୍ଦନ ।
ରାମନାମ ସୁଧାପାନ ଯେଉଁ ଜନ କରେ
ତାର ପୁଣ୍ୟ କଥା କେହୁ ଭବେ କହିପାରେ ।
ରାମବିନା ଧରାଧାମେ ଅଛି କିବା ସାର
ରାମ ଭଜ ରାମ ଭଜ ଅହେ ସାଧୁ ନର ।
ରାମପଦଧୂଳି ଶିରେ ସଦା ଥୁଅ ବୋଳି
ରାମଅଙ୍ଗ ସଙ୍ଗେ ଦେହ ମନ ଉଠୁ ପୂରି ।
ରାମନାମ ଏକମାତ୍ର ସଂସାରରେ ସାର
ରାମକୁ ପୂଜିଲେ ହେବ ଭବସିନ୍ଧୁ ପାର ।
ରାମନାମ ଗୋଟି ଜାଣ ମୁକତ ପସରା
ରାମନାମ ଭଜ ଛୁଟିଯିବ ପାପଭରା ।

—=—

# ମହାଦେବ

## (ମହର୍ଷି ବଶିଷ୍ଠଙ୍କର ବର୍ଣ୍ଣନା)

ଦେବତାମାନଙ୍କ ମଧ୍ୟରେ ବ୍ରହ୍ମା, ବିଷ୍ଣୁ ଓ ମହାଦେବଙ୍କ ସ୍ଥାନ ଅନ୍ୟତମ । ଏମାନଙ୍କ ମଧ୍ୟରେ ବ୍ରହ୍ମା ସୃଜନ କର୍ତ୍ତା, ବିଷ୍ଣୁ ପାଳନ କର୍ତ୍ତା ଓ ମହାଦେବ ସଂହାର କର୍ତ୍ତାରୂପେ ସାଧାରଣତଃ ବର୍ଣ୍ଣିତ ଅଛୁ ।

ମହାଦେବଙ୍କ ଲଲାଟରେ ତୃତୀୟ ନୟନ, ତା'ଉପରେ ଅର୍ଦ୍ଧଚନ୍ଦ୍ର, ସର୍ବାଙ୍ଗ ଭସ୍ମାବୃତ୍ତ, ମସ୍ତକରେ ଜଟା ଓ ସର୍ପରେ ଜଡ଼ିତ; ଗଳଦେଶ କଙ୍କାଳମାଳାରେ ବିଭୂଷିତ, ପରିଧାନ ରୁଧିରାକ୍ତ ବ୍ୟାଘ୍ରଚର୍ମ, ଉତ୍ତରୀୟ କୃଷ୍ଣସାର ମୃଗଚର୍ମ, ଗଳଦେଶରେ ସର୍ପ ଉପବୀତ, ହସ୍ତରେ ନାନାବିଧ ଅସ୍ତ୍ର, ବାହନ ନନ୍ଦୀ (ସର୍ବଦା ତାଙ୍କର ସହଚର) ହସ୍ତରେ ଡ଼ମ୍ବରୁ ଓ ମୁଦ୍‌ଗର ଏବଂ ସିଦ୍ଧ, ଚାରଣ କିନ୍ନର, ଯକ୍ଷ, ରାକ୍ଷସ, ଅପ୍ସରା ଓ ଗନ୍ଧର୍ବମାନଙ୍କ ଦ୍ୱାରା ପରିବେଷ୍ଟିତ ହୋଇ ତାଙ୍କର ବାସଭୂମି କୈଳାସରେ । ସେ ସେଠାରେ ରହି ତପସ୍ୟା କରନ୍ତି । ମହାଦେବଙ୍କର ପ୍ରଧାନ ଅସ୍ତ୍ର ତ୍ରିଶୂଳ ଓ ଧନୁର ନାମ ପିନାକ ଓ ତାଙ୍କର ବିଶ୍ୱଧ୍ୱଂସୀ ଅସ୍ତ୍ର ପାଶୁପତ ଯାହାକୁ ସେ ଅର୍ଜୁନଙ୍କୁ ଦାନ କରିଥିଲେ ।

ଯେତେବେଳେ ବିଶ୍ୱ ବ୍ରହ୍ମାଣ୍ଡକୁ ପ୍ରଳୟ କରିବାକୁ ବା ଧ୍ୱଂସ କରିବାକୁ ଇଚ୍ଛା କରନ୍ତି ସେତେବେଳେ ଡ଼ମ୍ବରୁ ବଜାଇ ତାଣ୍ଡବ ନୃତ୍ୟ କରନ୍ତି ।

ଉପନିଷଦରେ ଅଛି ଯେ, ମହାଦେବ ନିଜେ ବ୍ରହ୍ମା, ନିଜେ ବିଷ୍ଣୁ, ଶିବ, ଓ ଇନ୍ଦ୍ର ଅଟନ୍ତି । ମହାଦେବଙ୍କର ଆଦ, ମଧ୍ୟମ, ଅନ୍ତ କିଛି ନାହିଁ । ଋକ୍ ବେଦରେ ଅଛି—ମହାଦେବ ବିଦ୍ୱାନ, ଜ୍ଞାନୀ

ବଦାନ୍ୟ, କଲ୍ୟାଣମୟ ଓ ସହଜରେ ସନ୍ତୁଷ୍ଟ । ମହାଯୋଗୀ ସର୍ବ ତ୍ୟାଗୀ-ସନ୍ନ୍ୟାସୀ, କଠୋର ତପସ୍ୟା ଓ ନିର୍ଗୁଣ ଧ୍ୟାନର ପ୍ରତୀକ ସ୍ୱରୂପ । ତାଙ୍କର ପ୍ରଭାବରେ ସେ ସକଳ କ୍ଷମତାର ଅଧିକାରୀ ହୋଇ ଅଛନ୍ତି ।

ମହାଦେବଙ୍କର ଅନ୍ୟନାମ ରୁଦ୍ର ବା ମହାକାଳ । କାରଣ ସେ ସର୍ବ ସଂହାରକ । "ସେ ଏକାଧାରରେ ରୁଦ୍ର, ଭୟଙ୍କର ଓ ଶିବ ଅର୍ଥାତ୍ ମଙ୍ଗଳମୟ । ମହାଦେବଙ୍କର ହଜାରେ ଆଖି ଓ ହଜାରେ ତୀର ତାଙ୍କ ସଙ୍ଗରେ ଥାଏ । ରୁଦ୍ର ପ୍ରସନ୍ନ ହେଲେ ବିପଦରୁ ତ୍ରାଣ କରନ୍ତି । ନିଜେ ଶ୍ରେଷ୍ଠ ଚିକିତ୍ସକ ଥିବାରୁ ରୋଗୀର ରୋଗମୁକ୍ତ କରନ୍ତି । ସ୍ୱୟଂ ପରମଯୋଗୀ ହେଲେ ସୁଦ୍ଧା କୁବେର ତାଙ୍କର ଧନରକ୍ଷକ ।

ସମୁଦ୍ର ମନ୍ଥନ କାଳରେ ଯେଉଁ ହଳାହଳ ବିଷ ବାହାରିଥିଲା ତାକୁ ଦେଖି ଦେବ ଓ ଅସୁରଗଣ ବ୍ରହ୍ମାଙ୍କର ଶରଣାପନ୍ନ ହେବାରୁ ବ୍ରହ୍ମା ଅନ୍ୟ ଉପାୟ ନ ଦେଖି ମହାଦେବଙ୍କୁ ସ୍ତବ କଲେ । ବ୍ରହ୍ମାଙ୍କ ସ୍ତବରେ ତୁଷ୍ଟ ହୋଇ ଜଗତର ମଙ୍ଗଳ ସକାଶେ ମହାଦେବ ଏହି ବିଷ ପାନ କରି ତାକୁ କଣ୍ଠରେ ଧାରଣ କରି ପୃଥିବୀକୁ ଧ୍ୱଂସ ମୁଖରୁ ରକ୍ଷାକଲେ । ସେଥିପାଇଁ ତାଙ୍କର ଅନ୍ୟ ନାମ ନୀଳକଣ୍ଠ । ଅତି ସହଜରେ ତୁଷ୍ଟହୋଇ ଇପ୍ସିତ ବରପ୍ରଦାନ କରନ୍ତି ବୋଲି ତାଙ୍କର ଅନ୍ୟ ନାମ ଆଶୁତୋଷ ।



# ମହାଦେବ (ଶିବ) ସ୍ତବ

ଜୟ ଜୟ ମହାଦେବ ସୃଷ୍ଟି ହର୍ତ୍ତାକର୍ତ୍ତା
ଜୟ ଜୟ ଶଙ୍କର ହେ ଗତିମୁକ୍ତିଦାତା ।
ଜୟ ଜୟ ତ୍ରିନୟନ କଳୁଷ ହରଣ
ଜୟ ଜୟ ପ୍ରଣବାଙ୍କ ପଞ୍ଚମ ଆନନ ।
ଜୟ ଜୟ ଉମାପତି ଉରଗ-ଭୂଷଣ
ଜୟ ଜୟ ଜୟ ଦେବ ଭସ୍ମ ବିଲେପନ ।
ଜୟ ଜୟ ମହାକାଳ ରୁଦ୍ର ଭୟଙ୍କର
ଜୟ ଜୟ ଆଶୁତୋଷ ଶାନ୍ତ ଧୀର ସ୍ଥିର ।
ନମସ୍ତେ ନମସ୍ତେ ଶିବ, ଶିବ କଳ୍ପତରୁ
ନମସ୍ତେ ନମସ୍ତେ ଯୋଗୀ, ଯୋଗେଶ୍ୱର ଗୁରୁ ।
ନମସ୍ତେ ନମସ୍ତେ ଦେବ ବିପଦ ବାରଣ
ନମସ୍ତେ ନମସ୍ତେ ଦେବ, ଅରକ୍ଷ ରକ୍ଷଣ ।
ନମସ୍ତେ ଶ୍ରୀଲିଙ୍ଗମୂର୍ତ୍ତି ଯୋଗାଧିପୁରୁଷ
ନମସ୍ତେ ନମସ୍ତେ ଦେବ ପାର୍ବତୀ ବିଳାସ ।
ନଟରାଜ ନୃତ୍ୟେ ମୋହୁ ଏହି ତ୍ରିପୁର
ମହାତ୍ୟାଗୀ ମହାଯୋଗୀ ଭୋଗୀଙ୍କ ଈଶ୍ୱର ।
ସର୍ବଶୁଭ ସୃଷ୍ଟିକର୍ତ୍ତା ସକଳ କାରଣ
ଚତୁର୍ଦ୍ଦଶ ପୁରେ ଅଛି ଯେତେ ଶୋଭାମାନ ।
ସକଳ ତୋହ ବିଭୂତି ଅହେ ଭୋଳାନାଥ
ନିଜେ କଳୁ କରଅଛ ସକଳ ତ୍ୟକତ ।
ସଂସାରରେ ରହି ମାତ୍ର ରହିଅଛ ଦୂରେ
ମୋହମାୟା ତିଳେମାତ୍ର ପରଶ ନ କରେ ।

ସସୀମ ତୁ ନାଥ ପୁଣି ଅସୀମ ଅନନ୍ତ
ସାକାର ରୂପରେ କେବେ ନିରାକାରେ ବ୍ୟକ୍ତ ।
ମହାଯୋଗୀ ମହାଭୋଗୀ ତ୍ୟାଗୀଙ୍କ ପ୍ରଧାନ
ମହାକ୍ରୋଧୀ ଲବେ କରୁ ସଂସାର ଦହନ ।
ମହା ଶାନ୍ତ ଧୀର ପୁଣି ଜଗତେ ବିଦିତ
ମହାଜ୍ଞାନୀ ଅଳ୍ପଭୋଳା ଦେବ ଭୋଳାନାଥ ।
ସମୁଦ୍ର ମନ୍ଥନେ ଦେବ ଯେତିକି ମନ ମତେ
ଅପୂର୍ବ ପଦାର୍ଥ ନେଲେ ଆନନ୍ଦିତ ଚିତ୍ତେ ।
ମହା ହଳାହଳ ତୁମ୍ଭେ କରିଲ ଭକ୍ଷଣ
ଦିବ୍ୟପୁରେ ବାସକଲେ ସର୍ବ ଦେବଗଣ ।
ଶ୍ମଶାନ ସୁଖରେ ଆଦରିଲ ମହେଶ୍ୱର
ପାରିଜାତ ଛାଡ଼ି କଲ ଗଦ୍ଧେ ଆଦର ।
କସ୍ତୁରି କୁଙ୍କୁମ ଛାଡ଼ି ଭସ୍ମ ବୋଳୁ ଅଙ୍ଗେ
ଡମ୍ବରୁ ଧରଣି ନାଚୁ ସଦା ନାନାରଙ୍ଗେ ।
ସେଥିପାଇଁ ଆହେ ଦେବ ଆପଣଙ୍କୁ ମୁହିଁ
ସ୍ତୁତି କରିବା ସକାଶେ ଅସିଅଛି ଧାଇଁ ।
କିନ୍ତୁ ଯେ ଆପଣ ଅଟ ନିତ୍ୟ ନିରାମୟ
କି ବୋଲି ସ୍ତୁତି କରିବି ନ ହୁଏ ନିଶ୍ଚୟ ।
ତୁମ୍ଭ ଗୁଣ ଗାଇବାକୁ ବାକ୍ୟକଣ୍ଠ ପନ୍ତ
ଯୋଜନା କରିବା ପାଇଁ ନାହିଁ ମୋ ଶକତି ।
ଯାହାଙ୍କର ସ୍ତୁତି କରିବାକୁ ଦେବଗଣ
ସମର୍ଥ ନୁହନ୍ତି କେତେବେଳେ ହେଲେ ଜାଣ ।
ସେ ଦେବଙ୍କୁ ଅବା ମୁହିଁ ସ୍ତବ କି ରୂପରେ
ସ୍ତୁତି କରିବାକୁ ସମର୍ଥ କି ହୋଇପାରେ ।

ଭକ୍ତମାନେ ଯେ ଦେବଙ୍କୁ ସପନରେ ଥରେ
ଦେଖି ନ ପାରନ୍ତି ତାଙ୍କୁ ଦେଖିଲି ନେତ୍ରରେ ।
ଇନ୍ଦ୍ର ଆଦି ଦେବଗଣ ଯାହାଙ୍କ କଳାରୁ
ଜାତ ହୋଇଛନ୍ତି ଯେ ଅଟନ୍ତି ସର୍ବଗୁରୁ ।
ଆଉ ଯେ ଚରାଚର ଯାହାଙ୍କର ଅଂଶ
ପ୍ରଣାମ କରୁଛି ମୁହିଁ ତାଙ୍କ ପାଦ ଦେଶ ।
ସୂର୍ଯ୍ୟ ଚନ୍ଦ୍ର ହୁତାଶନ ଜଳ ବାୟୁ ରୂପେ
ପ୍ରକାଶିତ ହୋଇ ରହି ଅଛନ୍ତି ଯେ ଆପେ ।
ପୁରୁଷ ସ୍ତ୍ରୀ ଆଉ କ୍ଳୀବ ରୂପ ଧରି
ଯେ ହୋଇଛନ୍ତି ସଂସାରଭିଁର ରକ୍ଷାକାରୀ ।
ତାଙ୍କ ଚରଣ କମଳେ ନମସ୍କାର ମୁହିଁ
କରୁଅଛି ପରିତ୍ରାଣ କରନ୍ତୁ ଯେ ସେହି ।
ଯାହାଙ୍କୁ ପାଇବା ପାଇଁ ହିମାଳୟ-ସୁତା
କଠୋର ତପସ୍ୟା କରିଥିଲେ ଘୋର ଚିନ୍ତା ।
ତାହାଙ୍କୁ ମୁଁ ନମସ୍କାର କରୁଛି ଭକ୍ତିରେ
ପ୍ରସନ୍ନ ହୋଇ ସେ ଦୟା କରନ୍ତୁ ମୋ ଠାରେ ।
ସକଳ ଲୋକର ଯେହ୍ନେ ବାଞ୍ଛା କଳ୍ପତରୁ
କାମନା ପୂର୍ଣ୍ଣ ହୁଅଇ ଯାହାଙ୍କ କୃପାରୁ ।
ସେହି ଭକ୍ତବତ୍ସଳଙ୍କୁ ମୋର ନମସ୍କାର
ଖଣ୍ଡନ କରନ୍ତୁ ସର୍ବ ଦୁରିତ ମୋହର ।
ଯାହାଙ୍କ ଯୋଗୁ ଅନନ୍ତ ସଂସାରର କ୍ଷୟ
ହୁଅଇ ଯଥା କାଳରେ ଆଉ ଉଦୟ ।
ସେ ମହାପ୍ରଭୁଙ୍କ ପାଦ-ପଙ୍କଜରେ ମୁହିଁ
ପ୍ରଣାମ କରୁଛି ରଖନ୍ତୁ ହେ ଦୟା-ବହି ।

—ଶିବ ପୁରାଣ—

# ଗଣେଶ

ଗଣେଶ—ଶିବ ଓ ପାର୍ବତୀଙ୍କର ପୁତ୍ର ଗଣେଶ ସିଦ୍ଧିଦାତା । ଗଣେଶ ମଙ୍ଗଳ ଓ ସିଦ୍ଧିର ଜନକ ବୋଲି ସକଳ ଦେବତାଙ୍କ ଆଗରୁ ପୂଜିତ ହୁଅନ୍ତି ।

ପୁରାଣରେ ଉଲ୍ଲିଖିତ ଅଛି ଯେ, ଗୋମତୀତୀରବାସୀ ମୁନି-ମାନେ ଦିନେ ନୈମିଷାରଣ୍ୟଠାରେ ମହାଭାଗ ସୂତ ମହର୍ଷିଙ୍କୁ ଦେଖି ପଚାରିଲେ, ସୂତ ! ନିର୍ବିଘ୍ନରେ କିପରି କାର୍ଯ୍ୟସିଦ୍ଧ ହୁଏ ? ଲୋକ-ମାନଙ୍କର ଅଭୀଷ୍ଟ ସିଦ୍ଧ, ପୁତ୍ର, ସୌଭାଗ୍ୟ ଏବଂ ସମ୍ପତ୍ତି ପ୍ରାପ୍ତ କିପରି ହୁଏ ? ପତି ଓ ପତ୍ନୀ ମଧ୍ୟରେ କଳହ ହେଲେ, ବନ୍ଧୁ ମଧ୍ୟରେ ଭେଦ ହେଲେ ତାହାର ଶାନ୍ତି କିପରି ହୁଏ ଏବଂ ଉଦାସୀନ ଲୋକମାନେ ପୁଣି କିପରି ନିଜଠାରେ ସନ୍ତୁଷ୍ଟ ହୁଅନ୍ତି ? କେଉଁ ଦେବତାଙ୍କର ଉପାସନା କଲେ ବିଦ୍ୟାରମ୍ଭ, ବିବାହ, ବାଣିଜ୍ୟ ଏବଂ କୃଷିରେ ମଧ୍ୟ ଅଭୀଷ୍ଟ ସିଦ୍ଧ ହୁଏ ? ସୂତ କହିଲେ—ଋଷିମାନେ ପୂର୍ବେ କୁରୁ ଏବଂ ପାଣ୍ଡବମାନଙ୍କର ଯୁଦ୍ଧ ସମୟରେ ଧର୍ମପୁତ୍ର ଯୁଧିଷ୍ଠିର ଶ୍ରୀକୃଷ୍ଣଙ୍କୁ ପଚାରିଥିଲେ—ଦେବକୀନନ୍ଦନ ! କେଉଁ ଦେବତାଙ୍କର ଆରାଧନା କଲେ ନିର୍ବିଘ୍ନରେ ଜୟଲାଭ କରି ଆମ୍ଭେମାନେ ରାଜ୍ୟ ପାଇବୁ, ତାହା ଆପଣ ମତେ କହନ୍ତୁ ।

ଶ୍ରୀକୃଷ୍ଣ କହିଲେ, ମହାରାଜ ! ତୁମ୍ଭେ ପାର୍ବତୀ ଓ ମହାଦେବଙ୍କର ପୁତ୍ର ଗଣେଶଙ୍କୁ ପୂଜା କର । ତୁମ୍ଭେ ତାଙ୍କୁ ପୂଜାକଲେ ଅବଶ୍ୟ ରାଜ୍ୟ ଲାଭ କରିବ ।

ଯୁଧିଷ୍ଠିର କହିଲେ—ପ୍ରଭୁ ! କେଉଁ ବିଧିରେ ଏବଂ କେଉଁ ତିଥିରେ ପୂଜାକଲେ ଗଣେଶ ସିଦ୍ଧିପ୍ରଦ ହୁଅନ୍ତି ?

ଶ୍ରୀକୃଷ୍ଣ କହିଲେ—ଗଣେଶଙ୍କୁ ଯେ କୌଣସି ଶୁକ୍ଳ ଚତୁର୍ଥୀ ଦିନ ବିଶେଷତଃ ଭାଦ୍ର ଶୁକ୍ଳ ଚତୁର୍ଥୀଦିନ ପୂଜା କରିବ । ସେ ଯୁଧିଷ୍ଠିରଙ୍କୁ କହିଲେ, ଧର୍ମରାଜ ! ତୁମେ ଏହିପରି ଗଣେଶ ପୂଜା କଲେ ତୁମର ଅବଶ୍ୟ ବିଜୟ ହେବ ।

ଶିବ ତ୍ରିପୁରାସୁରକୁ ମାରିବା କାମନା କରି ଏହି ବ୍ରତ କରିଥିଲେ ।

ଇନ୍ଦ୍ର ବୃତ୍ରାସୁର ବଧ କାମନାରେ ଏହି ବ୍ରତ କରିଥିଲେ ।

ଅହଲ୍ୟା ନିଜ ପତିଙ୍କୁ ପାଇବା ପାଇଁ ଏହି ବ୍ରତ କରିଥିଲେ ।

ଦମୟନ୍ତୀ ନଳଙ୍କ ଅନୁସନ୍ଧାନ କଲାବେଳେ ଏହି ବ୍ରତ କରିଥିଲେ ।

ରାମଚନ୍ଦ୍ର ସୀତାଙ୍କୁ ଅନ୍ୱେଷଣ କଲାବେଳେ ଏହି ବ୍ରତ କରିଥିଲେ ।

ପୁଣି ତାଙ୍କର ଦୂତ ହନୁମାନ ସୀତାଙ୍କୁ ଦେଖିବା ମାନସରେ ଏହି ବ୍ରତ କରିଥିଲେ ।

ଭଗୀରଥ ଗଙ୍ଗାଙ୍କୁ ଆଣିବା ସମୟରେ ଏହି ବ୍ରତ କରିଥିଲେ ।

ଦେବତା ଓ ଅସୁରମାନେ ଅମୃତ ପାଇଁ ସମୁଦ୍ର ମନ୍ଥନ କଲାବେଳେ ଏହି ବ୍ରତ କରିଥିଲେ ।

ଗରୁଡ଼ ସ୍ୱର୍ଗରୁ ଅମୃତ ଆଣିବା ପାଇଁ ଗଣେଶଙ୍କର ଆରାଧନା କରି ବଳାତ୍କାରରେ ଅମୃତ ଆଣିଥିଲେ ।

ରୁକ୍ମିଣୀ ପୁତ୍ର ପ୍ରଦ୍ୟୁମ୍ନଙ୍କୁ ଶମ୍ବରାସୁର ନେବା ପରେ ସେ ଗଣେଶ ପୂଜା କରିଥିଲେ । ମୁଁ ମଧ୍ୟ ରୁକ୍ମିଣୀଙ୍କୁ ଆଣିବା ପାଇଁ ଗଣେଶଙ୍କୁ ପୂଜା କରିଥିଲି ।

ଶାମ୍ବ କୁଷ୍ଠରୋଗାକ୍ରାନ୍ତ ହୋଇ ଗଣେଶଙ୍କର ଆରାଧନା କରିଥିଲେ ।

ତୁମ୍ଭେ ବର୍ତ୍ତମାନ ଜୟାକାଂକ୍ଷୀ ହୋଇଅଛ; ତେଣୁ ସେହି ଶଙ୍କରାତ୍ମଜ ଗଣେଶଙ୍କୁ ପୂଜା କର, ଶତ୍ରୁମାନଙ୍କୁ ଯୁଦ୍ଧରେ ଜିଣି ନିଷ୍କଣ୍ଟକ ରାଜ୍ୟ ପାଇବ । ତାଙ୍କର ଅନୁଗ୍ରହରେ ତୁମ୍ଭର ଅବଶ୍ୟ ସମସ୍ତ କାର୍ଯ୍ୟ ସିଦ୍ଧ ହେବ ।

ଶ୍ରୀକୃଷ୍ଣଙ୍କଠାରୁ ଏ ଉପଦେଶମାନ ଶୁଣି ଯୁଧିଷ୍ଠିର ତାଙ୍କ ଭାଇ-ମାନଙ୍କସହ ଗଣପତିଙ୍କ ପୂଜା କରି ଯୁଦ୍ଧରେ ଶତ୍ରୁମାନଙ୍କୁ ଜିଣି ନିଜ ରାଜ୍ୟ ପାଇଥିଲେ ।

ଗଣେଶଙ୍କୁ ଆରାଧନା କଲେ ସକଳ ବିଘ୍ନର ବିନାଶ ଘଟେ ଏବଂ ସିଦ୍ଧି ଲାଭ ହୁଏ । ସେଥିପାଇଁ ତାଙ୍କୁ ନିମ୍ନଲିଖିତ ମନ୍ତ୍ରରେ ଧ୍ୟାନ କରାଯାଇଥାଏ—

"ଖର୍ବଂ ସ୍ଥୁଲତନୁଂ ଗଜେନ୍ଦ୍ର ବଦନଂ
ଲମ୍ବୋଦରଂ ସୁନ୍ଦରଂ
ପସ୍ୟନ୍ଦନ୍ମଦଗନ୍ଧଲୁବ୍ଧ-ମଧୁପ-
ବ୍ୟାଲୋଲ ଗଣ୍ଡସ୍ଥଳଂ
ଦନ୍ତାଘାତ ବିଦାରିତାରିରୁଧିରୈଃ
ସିନ୍ଦୂରଶୋଭାକରଂ,
ବନ୍ଦେ ଶୈଳସୁତାସୁତଂ ଗଣପତିଂ
ସିଦ୍ଧି ପ୍ରଦଂ କାମଦଂ ।"

ହିନ୍ଦୁ ଧର୍ମଶାସ୍ତ୍ରରେ ତ୍ରିମୂର୍ତ୍ତି ବ୍ରହ୍ମା ବିଷ୍ଣୁ ମହେଶ୍ୱର ଅର୍ଥାତ୍ ସୃଷ୍ଟି ସ୍ଥିତି ପ୍ରଳୟ—ଏହି ତ୍ରିଶକ୍ତିର ସମଷ୍ଟି ହିଁ ବିଶ୍ୱ ଶକ୍ତି ବୋଲି ପ୍ରତିପାଦିତ । ଜଣେ ବିଖ୍ୟାତ ଫରାସୀ ଦାର୍ଶନିକ ଅବି. ଜେ. ଏ. ଡୁବିୟସ (Abbe j. A. Dubois) ହିନ୍ଦୁମାନଙ୍କର ଆଚାର, ବ୍ୟବହାର, ବ୍ରତ ଓ ପୁଣ୍ୟପର୍ବ ବିଷୟରେ ବହୁକାଳ ପରେ ଯେଉଁ ପୁସ୍ତକ ପ୍ରଣୟନ କରିଥିଲେ ସେଥିରେ ଜମିଦାର ବିଷ୍ଣୁ-

ବିଖ୍ୟାତ ପଣ୍ଡିତ ଡକ୍ଟର ମାକ୍‌ସମୁଲ୍ଲର (Dr. Max Muller) ମୁଖବନ୍ଧ ଲେଖିଥିଲେ । ଦାର୍ଶନିକ ଡ୍ୟୁବ୍ରୟସ ଲେଖିଥିଲେ—

ବ୍ରହ୍ମା, ବିଷ୍ଣୁ ଓ ମହେଶ୍ୱର ସୃଷ୍ଟି, ସ୍ଥିତି ଓ ପ୍ରଳୟର ଅଧାରପୌରାଣିକ ଉପାଖ୍ୟାନରୁ ଦେଖାଯିବ ଯେ, ଏ ତ୍ରିଶକ୍ତିର ସମନ୍ୱୟ ଶ୍ରୀ ଗଣେଶଙ୍କ ରୂପରେ ସଂଘଟିତ ଓ ପ୍ରକଟିତ ହୋଇଛି । ତେଣୁ ଶ୍ରୀ ଗଣେଶଙ୍କର ପୂଜା ଏ ତ୍ରିଶକ୍ତିଙ୍କର ହିଁ ପୂଜା । ଏ ତ୍ରିଭାବର ସମନ୍ୱୟ ହିଁ ଶ୍ରୀଶକ୍ତି ।

ଗଣେଶ ଅସାଧାରଣ ପଣ୍ଡିତ ଓ ଲେଖକ ମଧ୍ୟ ଥିଲେ । ମହାଭାରତରେ ଉଲ୍ଲିଖିତ ଅଛି ଯେ, ବ୍ୟାସଦେବ ଯୋଗବଳରେ ଯେତେବେଳେ ମନେ ମନେ ମହାଭାରତ ରଚନା କଲେ ସେତେ-ବେଳେ ବିଚାରିଲେ ଯେ, ଜନ ସମାଜରେ ଏହାର ପ୍ରଚାର ହେବ କିପରି ? ଏଥିପାଇଁ ଲେଖକ କିଏ ? ଏକଥା ବିଚାରି ବିଚାରି ବଡ ବିଷନ୍ନ ବଦନରେ ବସିଥିବାବେଳେ ସ୍ୱୟଂ ହିରଣ୍ୟଗର୍ଭ ତାଙ୍କ ପାଖରେ ଆସି ପହଞ୍ଚିଗଲେ । ବ୍ୟାସଦେବ ହିରଣ୍ୟଗର୍ଭଙ୍କୁ ତାଙ୍କ ମନକଥା କହିଲେ । ହିରଣ୍ୟଗର୍ଭ କହିଲେ କି, 'ଗଣେଶହିଁ ଲେଖକ କାର୍ଯ୍ୟ କରି-ପାରିବେ ।" ବ୍ୟାସଦେବ ଗଣେଶଙ୍କୁ ଲେଖିବା ପାଇଁ ଅନୁରୋଧ କଲେ । ଗଣେଶ ଏଥିରେ ସ୍ୱୀକୃତ ହେଲେ । କିନ୍ତୁ ବ୍ୟାସଦେବଙ୍କୁ ଜଣାଇ କହିଲେ କି, ଆପଣ ଡାକିବେ ଓ ମୁଁ ଲେଖିବି; କିନ୍ତୁ ଆପଣଙ୍କର ଡାକିବାରେ ଯଦି କାଳ ବିଳମ୍ବ ଘଟେ ଏବଂ ମୋର ଲେଖନୀ ସ୍ଥିର ହୋଇଯାଏ, ତେବେ ମୁଁ ଆଉ ଲେଖି ପାରିବିନାହିଁ । ବ୍ୟାସଦେବ ଏଥିରେ ରାଜି ହେଲେ । ବ୍ୟାସଦେବ ମହାଭାରତ ଉପାଖ୍ୟାନ ଡାକିବାକୁ ଆରମ୍ଭ କଲେ, ଗଣେଶ ଲେଖିବାରେ ଲାଗିଲେ । କଥିତ ଅଛି ଯେ, ବ୍ୟାସଦେବ ମଝିରେ ମଝିରେ ଯେତେବେଳେ ହଠାତ୍ ଉପାଖ୍ୟାନର ସଂଗତି ରକ୍ଷି ଡାକିବା ପାଇଁ

ଟିକିଏ ସମୟ ନେଉଥିଲେ, ସେତେବେଳେ ଗଣେଶଙ୍କର ଲେଖନୀ ଯଦି ବନ୍ଦ ହୋଇଯିବ ତେବେ ସେ ଆଉ ଲେଖିବେ ନାହିଁ । ତେଣୁ ଏଭଳି ମଝିରେ ମଝିରେ କୂଟଶ୍ଳୋକ ରଚନା କରି ଯାଉଥିଲେ । ଗଣେଶ କିନ୍ତୁ ଅର୍ଥ ନବୁଝି କିଛି ଲେଖନ୍ତି ନାହିଁ । ଫଳରେ ଏ କୂଟଶ୍ଳୋକର ଅର୍ଥ ବୁଝିବା ପାଇଁ ବେଳେ ବେଳେ ତାଙ୍କ ଲେଖନୀ ସ୍ଥିର ହୋଇଯାଏ । ସେ ନାଡ଼ିଜ ମନେ ମନେ ଶ୍ଳୋକାର୍ଥ ବାଗୁଥିବା ବେଳେ ବ୍ୟାସଦେବ ମହାଭାରତର ପରବର୍ତ୍ତୀ ଶ୍ଳୋକ ରଚନା କରି ଯାଆନ୍ତି । ଏଭଳିଭାବରେ ବ୍ୟାସରଚିତ ମହାଭାରତ ଗଣେଶଙ୍କ ଦ୍ୱାରାହିଁ ଲିଖିତ ଓ ପ୍ରଚାରିତ ହୋଇଥିଲା । ସେଇଥିପାଇଁ ଯୁଗେ ଯୁଗେ ଶିକ୍ଷାର୍ଥୀମାନେ ଆଜନ୍ମ ବ୍ରହ୍ମଚାରୀ, ସୁପଣ୍ଡିତ, ସୁଲେଖକ, ଯୋଦ୍ଧା ଓ ସିଦ୍ଧିଦାତା ଗଣପତିଙ୍କର ପୂଜା କରିଥାଆନ୍ତି । ଗଣେଶଚତୁର୍ଥୀ ପୂଜାର ଏହାହିଁ ତାତ୍ପର୍ଯ୍ୟ ।

## ଲକ୍ଷ୍ମୀ

ସୃଷ୍ଟିର ରକ୍ଷାକର୍ତ୍ତା ଓ ପାଳନକର୍ତ୍ତା ହେଉଛନ୍ତି ବିଷ୍ଣୁ ଓ ଲକ୍ଷ୍ମୀ ତାଙ୍କର ସ୍ତ୍ରୀ । ବେଦ ଓ ସଂହିତାମାନଙ୍କରେ ଲକ୍ଷ୍ମୀ ଐଶ୍ୱର୍ଯ୍ୟର ଦେବୀ ରୂପେ ବର୍ଣ୍ଣିତ ।

ପାର୍ବତୀ ଯେପରି ହିମାଳୟ ପର୍ବତର କନ୍ୟା ଲକ୍ଷ୍ମୀ ସେପରି ସାଗରର କନ୍ୟା ।

ଶ୍ରୀମଦ୍ ଭାଗବତରେ ଅଷ୍ଟମ ସ୍କନ୍ଧର ଅଷ୍ଟମ ଅଧ୍ୟାୟରେ ଲକ୍ଷ୍ମୀଙ୍କର ଆବିର୍ଭାବ ବିଷୟ ବିଶେଷରୂପେ ବର୍ଣ୍ଣିତ ଅଛି ।

ଯେଉଁବେଳେ ଦେବତା ଓ ଅସୁରଙ୍କ ମଧ୍ୟରେ ଯୁଦ୍ଧ ଚାଲିଥିଲା ଓ ବଳ କଷାକଷି ପାଇଁ ସମୁଦ୍ର ମନ୍ଥନ ହୋଇଥିଲା, ସେତେ-

ବେଳେ ଲକ୍ଷ୍ମୀଙ୍କର ଆବିର୍ଭାବ । ଲକ୍ଷ୍ମୀ ଯେତେବେଳେ ବାହାରିଲେ ତାହାଙ୍କର ଦିବ୍ୟ କାନ୍ତି ଓ ବିଦ୍ୟୁତ ପ୍ରଭାରେ ଜଗତ ଆଲୋକିତ ହୋଇଗଲା । ତାଙ୍କର ସୌନ୍ଦର୍ଯ୍ୟ ଦେଖି ଦେବତା ଓ ଅସୁରମାନେ ତାଙ୍କ ପ୍ରତି ଦୃଷ୍ଟିପାତ କଲେ । ଦେବରାଜ ଇନ୍ଦ୍ର ଗଙ୍ଗା ଆଦି ନଦୀ ଦେବତା, ଋତୁରାଜ ବସନ୍ତ ଓ ପୃଥ୍ୱୀ ପ୍ରଭୃତି ସମସ୍ତେ ଯେ ଯାହାର ଉପହାର ଲକ୍ଷ୍ମୀଙ୍କୁ ଭେଟି ଦେଲେ । ଋଷିମାନେ ତାଙ୍କୁ ଶୌଚବିଧି ବତାଇ ଦେଲେ; ଗନ୍ଧର୍ବ ସ୍ତ୍ରୀ ଓ ପୁରୁଷମାନେ ନାନା ବାଦ୍ୟସହ ଆନନ୍ଦରେ ନୃତ୍ୟ କରି ଦିବ୍ୟଗାନ ଗାଇଲେ ।

ତାଙ୍କ ହସ୍ତରେ ପଦ୍ମପୁଷ୍ପ ଥିଲା ତାହା ପବିତ୍ରତାର ଚିହ୍ନ; ବ୍ରାହ୍ମଣମାନେ ବିଶ୍ୱର ଶାନ୍ତି, ଐଶ୍ୱର୍ଯ୍ୟ ଓ ସମୃଦ୍ଧି ପାଇଁ ସ୍ତୁତି ମନ୍ତ୍ର ଉଚ୍ଚାରଣକଲେ । ବରୁଣ ଦେବତା ତାଙ୍କୁ ବୈଜୟନ୍ତୀମାଳା ପିନ୍ଧାଇ ଦେଲେ, ବିଶ୍ୱକର୍ମା ଅଲଙ୍କାର ଓ ସରସ୍ୱତୀ ମଧ୍ୟ ମୁକ୍ତାହାର ପିନ୍ଧାଇ ଦେଲେ । ବ୍ରହ୍ମା ଗୋଟିଏ ପଦ୍ମପୁଷ୍ପ ଦେଲେ । ଏହିରୂପେ ସେ ବିଭୂଷିତାହୋଇ କେଉଁ ଦୋଷଶୂନ୍ୟ, ସମସ୍ତ ସଦ୍‌ଗୁଣର ଅଧିକାରୀ ପୁରୁଷଙ୍କୁ ପତିରୂପେ ଗ୍ରହଣ କରିବେ ଭାବି ସମସ୍ତ ଉପସ୍ଥିତ ଦେବତା, ଅସୁର, ଯକ୍ଷ, ଗନ୍ଧର୍ବ ଓ ସିଦ୍ଧଙ୍କ ଆଡ଼େ ଚାହିଁ ସମସ୍ତଙ୍କର ଗୁଣମାନ ତୁଳନା କରି ଶେଷରେ ସର୍ବଜ୍ଞାନୀ ସୃଷ୍ଟିର ପାଳକ ବିଷ୍ଣୁଙ୍କୁ ପତି ରୂପେ ବରଣ କଲେ । ବିଷ୍ଣୁଙ୍କ କୋଳରେ ବାସ କରି ତାଙ୍କ ସୁଦୃଷ୍ଟି ଦ୍ୱାରା ତ୍ରିଭୁବନକୁ ଐଶ୍ୱର୍ଯ୍ୟଶାଳୀ କଲେ । ସମୁଦ୍ର ଗର୍ଭରେ ସବୁ ମଣି ରତ୍ନ ଅଛି । ସେ ସେଠାରୁ ବାହାରି ଧନରତ୍ନ ବାଣ୍ଟୁଛନ୍ତି; ସେ ଦୟାମୟୀ ଓ ଦାରିଦ୍ର୍ୟ

ଦୂରୀକରଣ କରନ୍ତି । ସେ ସୌନ୍ଦର୍ଯ୍ୟର ପ୍ରତୀକ ଓ ସୌଭାଗ୍ୟକୁ ବିତରଣ କରନ୍ତି । ଉପଯୁକ୍ତ ସ୍ୱାମୀର ସେ ଉପଯୁକ୍ତା ସ୍ତ୍ରୀ ।

## ଲକ୍ଷ୍ମୀଙ୍କର ସ୍ତବ

ନମସ୍ତେ ନମସ୍ତେ ଦେବୀ ଲକ୍ଷ୍ମୀ ପଦ୍ମାଳୟା
ନମସ୍ତେ ନମସ୍ତେ ଦେବୀ ଜଗତର ମାୟା ।
ସହସ୍ର ଦଳ କମଳ ମଧ୍ୟେ ନିବାସିନୀ
ପଦ୍ମନାଭ ପ୍ରିୟା ସତୀ ପଙ୍କଜ ଲୋଚନୀ ।
ପଦ୍ମାଳୟା, ପଦ୍ମମୁଖୀ, ପଦ୍ମପୁଷ୍ପ ପ୍ରିୟା
ପଦ୍ମ ତଳପ-ଶାୟିନୀ କ୍ଷିରାବ୍ଧି ତନୟା ।
ପଦ୍ମିନୀ ପଙ୍କଜ ହସ୍ତା ସରୋଜମାଳିନୀ
ପଦ୍ମପୁଷ୍ପ ବିଭୂଷିତା ପଦ୍ମ ସୁଶୋଭିନୀ ।
ଯେହେତୁ ପଦ୍ମାଳୟା ଗୋ ପରଲୋକ ବନ୍ଧୁ
ଯାବତ ପ୍ରାଣୀଙ୍କର ତୁ ଅଟୁ ପୂର୍ଣ୍ଣଇନ୍ଦୁ ।
ଅନନ୍ତ ଲକ୍ଷଣ ଯେଣୁ ଲକ୍ଷ୍ମୀ ତୋର ନାମ
ସମସ୍ତଙ୍କ ଉପରେ ତୁ ବୋଲାଉ ଉତ୍ତମ ।
ଭୃଗୁକୋଳେ ଉପୁଜି ତୁ ବୋଲାଉ ଭାର୍ଗବୀ
ବୈକୁଣ୍ଠ ନିବାସ ବୋଲି, ନାମ ତୋ ବୈଷ୍ଣବୀ ।
ନୃସିଂହଙ୍କ ରମନ୍ତେ ତୋ ନାମ ହେଲା ରମା
ଏଣୁ ଲକ୍ଷ୍ମୀ ତୋର ଗୁଣ ବୁଝିଲେକ ବ୍ରହ୍ମା ।
ତୁହି ଅଟୁ ମହାଲକ୍ଷ୍ମୀ ତୁହି ଦୁର୍ଗା ଅଟୁ
ତୁହି ପୁଣି ପୁରୁଷଙ୍କେ ସ୍ତ୍ରୀହୋଇ ଖଟୁ ।
ଶିବଙ୍କ ଘରେ ପୁଣି ତୁ ଭବାନୀ ବୋଲାଉ
ତୁ ବିଧାତାର ପ୍ରିୟା ହୋଇ ସାବିତ୍ରୀ ବୋଲାଉ ।

ଇନ୍ଦ୍ରଘରେ ରମାହୋଇ ବୋଲାଉ ତୁ ଶଚୀ
ତୋତେ ନ ସେବିଲେ କେ ପାରେ କାଳ ବଞ୍ଚି ।
ଜୀବଙ୍କ ପ୍ରାଣରକ୍ଷଣୀ ଶସ୍ୟ-ସ୍ୱରୂପିଣୀ
ମହାଲକ୍ଷ୍ମୀ ନାମ ତୋର ପ୍ରଧାନ ଯେ ଜାଣି ।
ସ୍ୱର୍ଗଲକ୍ଷ୍ମୀ ନାମ ତୋର ଅଛେ ସ୍ୱର୍ଗପୁରେ
ରାଜଲକ୍ଷ୍ମୀ ନାମ ଗୋଟି ରାଜାଙ୍କ ନଗରେ ।
ଗୃହଲକ୍ଷ୍ମୀ ନାମ ଗୃହମାନଙ୍କର ଘରେ
ମଙ୍ଗଳଲକ୍ଷ୍ମୀ ବୋଲି ନାମ ମଙ୍ଗମଣ୍ଡଳରେ ।
ପରମ ଲକ୍ଷ୍ମୀ ବୋଲନ୍ତି ଭକ୍ତଙ୍କ ଭୁବନେ
ଏହପର କେତେ ନାମ ବହୁତ ବିଧାନେ ।
ପ୍ରୀତ ବୋଲି ଖ୍ୟାତ ପୁଣ୍ୟବନ୍ତଙ୍କ ପାଖରେ
ପ୍ରଭା ରୂପେ ବିରାଜୁ ତୁ ନୃପତ ଗୃହରେ ।
ବାଣିଜ୍ୟରୂପିଣୀ ଲକ୍ଷ୍ମୀ ବଣିକ ଭୁବନେ
ବ୍ରହ୍ମଲକ୍ଷ୍ମୀ ନାମ ପୁଣି ବ୍ରାହ୍ମଣ ସଦନେ ।
ତୁ ମହା ଚଞ୍ଚଳା ମାଗୋ ଦେବୀ ଶିରୋମଣି
ଚତୁର୍ଦ୍ଦଶ ଭୁବନେ ଯେ ତୁହି ଠାକୁରାଣୀ ।
ଜୟ ତୁ କମଳା ମାଗୋ କମଳବାସୀ
ମନେ କଲେ ବ୍ରହ୍ମାଣ୍ଡ ତୁ କ୍ଷଣେ ପାରୁ ଶୋଷି ।
ଯୋଗମାୟା ତୁମ୍ଭେ ଦେବୀ ଯୋଗୀଙ୍କ ଈଶ୍ୱରୀ
ତୁମ୍ଭେ ସୃଷ୍ଟି ସ୍ଥିତ ପୁଣି ତୁମ୍ଭେ ଧ୍ୱଂସକାରୀ ।
ଆଦ୍ୟମାତା, ଆଦ୍ୟଶକ୍ତି ସକଳ ଜନନୀ
ଚନ୍ଦ୍ର ସୂର୍ଯ୍ୟ ବ୍ରହ୍ମା ଶିବ ନପାରନ୍ତି ଜାଣି ।
କୋଟି ସୂର୍ଯ୍ୟ କୋଟି ଚନ୍ଦ୍ର କୋଟି ଗ୍ରହଗଣ
ତୋହର ଇଙ୍ଗିତେ ମାତ କରନ୍ତି ଭ୍ରମଣ ।

ସର୍ବରୂପା ସର୍ବଶକ୍ତି ଜ୍ଞାନ-ପ୍ରଦାୟିନୀ
ନମସ୍ତେ ନମସ୍ତେ ଦେବୀ ସୃଷ୍ଟି-ସଂହାରିଣୀ ।
କୃଷ୍ଣ-ଅନୁଗତପ୍ରାଣା ରସବିଳାସିନୀ
ରସିକା ସୁନ୍ଦରୀ ଦେବୀ ଜଗତ ମୋହିନୀ ।
କୃଷ୍ଣଙ୍କ ବକ୍ଷରେ ତୁମେ କର ଯେ ନିବାସ
କିଙ୍କର ଉପରେ କର କରୁଣା ପ୍ରକାଶ ।
ଏକାକ୍ଷରୀ ଅଟ ତୁହି ଭୁବନେଶ୍ୱରୀ
ପ୍ରସନ୍ନ ହୁଅ ଗୋ ମାତ ମୋତେ ଦୟା କରି ।
ହେ ଦେବୀ ହେ ମହାମାୟୀ ତବ ଶ୍ରୀଚରଣେ
ଭକ୍ତିସହ ମୋର ମନ ରହୁ ଅନୁକ୍ଷଣେ ।

---

# ସରସ୍ୱତୀ

ସରସ୍ୱତୀ ବିଷ୍ଣୁଙ୍କର ସ୍ତ୍ରୀ ଓ ଲକ୍ଷ୍ମୀଙ୍କର ସପତ୍ନୀ । ଲକ୍ଷ୍ମୀ ଐଶ୍ୱର୍ଯ୍ୟର ଅଧିଷ୍ଠାତ୍ରୀ । କିନ୍ତୁ ସରସ୍ୱତୀ ହେଉଛନ୍ତି ବାକ୍‌ଦେବୀ । ଏ ହୃଦୟକୁ ନିର୍ମଳ ଓ ପବିତ୍ର କରନ୍ତି । ଏ ସତ୍ ବାକ୍ୟର ପ୍ରେରଣ କର୍ତ୍ରୀ ଓ ସୁବୁଦ୍ଧିର ଉଦ୍‌ବୋଧନକାରିଣୀ । ଏ ସମସ୍ତ ନରନାରୀଙ୍କ ହୃଦୟରେ ଜ୍ୟୋତି ସଞ୍ଚାର କରନ୍ତି; ଏହାଙ୍କର ବାହନ ମୟୂର । ଲକ୍ଷ୍ମୀଙ୍କ ହାତରେ ଯେପରି ପଦ୍ମ ଏହାଙ୍କ ହାତରେ ସେପରି ବୀଣା । ଏହି ବୀଣା ବଜାଇ ସେ ଜଗତକୁ ମୋହିତ କରନ୍ତି । ଏ କବିମାନଙ୍କ ଇଷ୍ଟ ଦେବତା, ଏହାଙ୍କ ପ୍ରେରଣାରେ ସ୍ମୃତି, ଶ୍ରୁତି, ବେଦ ରଚିତ ହୋଇଅଛି ।

ଏହାଙ୍କ ଉତ୍ପତ୍ତି ସମ୍ବନ୍ଧରେ ନାନା ପୁରାଣରେ ଭିନ୍ନ ଭିନ୍ନ ପ୍ରକାର ବିଷୟ ଉଲ୍ଲିଖିତ ଅଛି ।

ବେଦ ମତେ ଯେତେବେଳେ ଆର୍ଯ୍ୟମାନେ ପ୍ରଥମେ ଭାରତକୁ ଆସି ବ୍ରହ୍ମାବର୍ତ୍ତରେ ପଦାର୍ପଣ କଲେ ସେତେବେଳେ ଆର୍ଯ୍ୟଋଷିମାନେ ସରସ୍ୱତୀ ନଦୀକୂଳରେ ଦେଖିଲେ ପୃଥିବୀ ତାର ଜଳରେ ଶସ୍ୟଶ୍ୟାମଳା ହୋଇଅଛି ଓ ନଦୀର ପ୍ରବାହରୁ ସଙ୍ଗୀତ ଉଚ୍ଛୁଳି ଅଛି । ତେଣୁ ସେମାନେ ସରସ୍ୱତୀଙ୍କୁ ଦେବୀ ରୂପେ କଳ୍ପନା କରି ପୂଜା କଲେ । ଗଙ୍ଗା, ଯମୁନା, ସରସ୍ୱତୀ ଆଦି ପବିତ୍ର ନଦୀମାନଙ୍କର ଏକତ୍ର ସଙ୍ଗମ ହୋଇଅଛି ପ୍ରୟାଗ ତୀର୍ଥରେ । ବିଷ୍ଣୁ ରକ୍ଷା କର୍ତ୍ତା, ଲକ୍ଷ୍ମୀ ଐଶ୍ୱର୍ଯ୍ୟ ଓ ସୌଭାଗ୍ୟଦାତ୍ରୀ କିନ୍ତୁ ସରସ୍ୱତୀ ହେଉଛନ୍ତି ସଭ୍ୟତା ଓ ସଂସ୍କୃତ ସାହିତ୍ୟର ଅଧିଷ୍ଠାତ୍ରୀ ଦେବୀ ।

ଆର୍ଯ୍ୟମାନେ ପ୍ରଥମତଃ ସରସ୍ୱତୀ ନଦୀ କୂଳରେ ଆଶ୍ରୟ ନେଇ ସେଠାରେ ବସତି ସ୍ଥାପନ କଲେ ଓ ସରସ୍ୱତୀ ଦେବୀଙ୍କୁ ସ୍ତୁତିକରି କହିଲେ, ହେ ଦୟାମୟୀ ! ଆମ୍ଭମାନଙ୍କୁ ଶତ୍ରୁଙ୍କଠାରୁ ରକ୍ଷାକର, ଆମ୍ଭମାନଙ୍କୁ ଧନ ଦିଅ,ବଳଦିଅ,ପବିତ୍ରଜଳ ଦିଅ ଓ ଜ୍ୟୋତି ଦିଅ । ହେ ସରସ୍ୱତୀ ! ତୁମ୍ଭେ ହେଉଛ ବେଦମାତା; ଆମ୍ଭମାନଙ୍କୁ ଭାଷା ଦିଅ, ବୁଦ୍ଧି ଦିଅ, ଜ୍ଞାନ ଦିଅ ଯଦ୍ଦ୍ୱାରା ଆମ୍ଭେମାନେ ବିଶ୍ୱସଂସାରରେ ଭଗବାନଙ୍କ ଗୁଣକୀର୍ତ୍ତନ କରିବୁଁ ଓ ସତ୍ ପଥରେ ଜଗତକୁ ଚାଳନ କରିବୁଁ ।

ବିଷ୍ଣୁ ଲକ୍ଷ୍ମୀଙ୍କୁ ବିବାହ କରିଥିଲେ ତାଙ୍କର ସୌନ୍ଦର୍ଯ୍ୟ, ଦୀପ୍ତି ଓ ଐଶ୍ୱର୍ଯ୍ୟ ପାଇଁ । ସରସ୍ୱତୀଙ୍କୁ ବିବାହ କଲେ ତାଙ୍କର ଜ୍ଞାନ ବୁଦ୍ଧି, ଜ୍ୟୋତି ଓ ଦୟାପଥ ପାଇଁ । କଥାରେ ଅଛି ଲକ୍ଷ୍ମୀ ସରସ୍ୱତୀଙ୍କ ଯେଉଁଠାରେ ଏକତ୍ର ମିଳନ ସେ ହେଉଛି ଅତି ଭାଗ୍ୟବାନ୍ ।

## ସରସ୍ୱତୀଙ୍କର ସ୍ତବ

ବୀଣା ପୁସ୍ତକ ଧାରଣୀ ଧବଳ ବାସନା
ଶ୍ୱେତପୁଷ୍ପ ବିଭୂଷିତା ଶୁକଳ ବସନା ।
ଶ୍ୱେତ ଅରବିନ୍ଦ ଚନ୍ଦ୍ର କୁମୁଦ ସମାନ
ଅତ୍ୟନ୍ତ ଲାବଣ୍ୟ ତବ ଶ୍ରୀଅଙ୍ଗ ବରନ ।
ଭଗବତୀ ଜ୍ଞାନଦାତ୍ରୀ ଭାରତୀ ସାରଦା
ପ୍ରସନ୍ନ ବଦନା ଯେ ଅଭୟ ବରପ୍ରଦା ।
ବାକ୍ୟରୂପା ବୁଦ୍ଧିରୂପା ବିଦ୍ୟାରୂପା ତୁହି
ତୁ ସାରଦା ସରସ୍ୱତୀ ନାମଅଛୁ ବହି ।
ଜ୍ଞାନ ପ୍ରଦାୟିନୀ ସତୀ ଭୁବନ ଈଶ୍ୱରୀ
ବାଣୀ ବୀଣାପାଣି ନାମ ଅଛଇ ତୋହର ।
ସଙ୍ଗୀତ ବିନୋଦିନୀ ଯେ ବିଧିର ଦୁଲାଳୀ
ସିଦ୍ଧ ବିଦ୍ୟାରୂପା ତୁମେ ନିଜେ ତପସ୍ୱିନୀ ।
ଜପମାଳିକାରେ ଜପୁଥାଅ କୃଷ୍ଣନାମ
ପ୍ରଫୁଲ୍ଲ ସହାସ୍ୟ ମୁଖଶୋଭା ଅନୁପମ ।
ଜ୍ଞାନ ଅଧିଷ୍ଠାତ୍ରୀ ଦେବୀ ତୁମ୍ଭେ ସରସ୍ୱତୀ
ତୁମ୍ଭର କୃପାରୁ ଜନ୍ମେ କବିତ୍ୱ ଶକତି ।
ତୁମ୍ଭର ପ୍ରସାଦେ ହୁଏ ସୁବୋଧ ଉଦୟେ
ବିଧିର କଳ୍ପନାଲବ ତୁମ୍ଭ ଯୋଗୁ ହୁଏ ।
ତୁମ୍ଭ ଯୋଗୁ ହୁଏ ସବୁ ସନ୍ଦେହ ଭଞ୍ଜନ
ବିଗ୍ରହରଣକୁ ଦେବୀ କରୁ ତୁ ପ୍ରଦାନ ।
ଗ୍ରନ୍ଥାଦି ରଚନାଶକ୍ତି ଦେଇପାରୁ ଯାତ
କବିମାନଙ୍କ ଅଭାବ ନ ହୁଅଇ କେଉଁ ।

ତୁମ୍ଭର କୃପାରୁ ନର ପାଏ ସନମାନ
ଦିଅ ତୁମ୍ଭେ ଗତି-ମୁକ୍ତି ଦିଅ ଦିବ୍ୟଜ୍ଞାନ ।
ହେ ଭଗବତୀ କୃପାମୟୀ ତବ ଶ୍ରୀଚରଣେ
ଭକ୍ତିସହ ମୋର ମନ ରହୁ ଅନୁକ୍ଷଣେ ।

---

# ଦୁର୍ଗା

ହିନ୍ଦୁ ପୁରାଣମାନଙ୍କରେ ବ୍ରହ୍ମା ପୃଥିବୀର ସର୍ଜନାକାରୀ, ବିଷ୍ଣୁ ରକ୍ଷାକାରୀ ଓ ଶିବ ଧ୍ୱଂସକାରୀ । କିନ୍ତୁ ପ୍ରକୃତପକ୍ଷେ ଶିବ ସବୁ ଧ୍ୱଂସ କରନ୍ତି ନାହିଁ, ସେ ଅନ୍ୟାୟ ଅତ୍ୟାଚାରକୁ ଧ୍ୱଂସ କରି ଜଗତକୁ ମଙ୍ଗଳମୟ ପଥରେ ଚାଳନ କରନ୍ତି । ଦୁର୍ଗା ହେଉଛନ୍ତି ଶିବଙ୍କ ସ୍ତ୍ରୀ, ସେ ହେଉଛନ୍ତି ଶକ୍ତି ଦାୟିନୀ ।

ପୃଥିବୀରେ ସଦାବେଳେ ଭଲ ଓ ମନ୍ଦ ମଧ୍ୟରେ ସଂଘର୍ଷ ଚାଲିଛି । ଏହା ପ୍ରକୃତିର ନିୟମ । ମନ୍ଦକୁ ଧ୍ୱଂସ କରି ଭଲକୁ ରକ୍ଷା କରିବା, ଅସୁରିକ ବଳକୁ ଧ୍ୱଂସ କରି ଦେବତାଙ୍କ ବଳକୁ ରକ୍ଷା କରିବା—ଏହି କଳ୍ପନାରେ ପୁରାଣକାରମାନେ ପୁରାଣମାନ ରଚନା କରିଅଛନ୍ତି ଓ ଶକ୍ତି ପୂଜା ପ୍ରତିଷ୍ଠା କରିଅଛନ୍ତି ।

ଆଦି ଯୁଗର ଯେତେବେଳେ ଅସୁରମାନେ ନାନା ଅତ୍ୟାଚାର କରି ଦେବତାମାନଙ୍କୁ ଶାନ୍ତି ଦେଉ ନଥିଲେ ସେତେବେଳେ ଦେବତାମାନେ ବିଷ୍ଣୁଙ୍କୁ ଆରାଧନା କରି ଅସୁରବଧ ପାଇଁ କି ପ୍ରତିକାର କରାଯିବ ସେଥିପାଇଁ ବିଷ୍ଣୁଙ୍କ ବର ପ୍ରାର୍ଥୀହେଲେ । ବିଷ୍ଣୁଙ୍କ ପରାମର୍ଶରେ ସକଳ ଦେବଦେବୀ ତାଙ୍କ ସ୍ୱ ଦେହରୁ ଏକ ଏକ କଳା ଦେବାରେ ଶକ୍ତିର ପୂଜା ଆରମ୍ଭ ହେଲା । ଦୁର୍ଗା

ହେଉଛନ୍ତି ସମସ୍ତ ଶକ୍ତିର ସମ୍ମିଳିତ ଆଧାର । ସେ ହେଉଛନ୍ତି ଆଦ୍ୟା ଶକ୍ତି । ସେହି ଶକ୍ତିକୁ ପୂଜା ନକଲେ ଅସୁରଙ୍କ ବଳର ଧ୍ୱଂସ ହେବ ନାହିଁ ।

ଅସୁରଙ୍କ ବଳ ଧ୍ୱଂସ ନହେଲେ ଦେବଶକ୍ତି ଏ ସଂସାରରେ କୌଣସି ମଙ୍ଗଳମୟ କାର୍ଯ୍ୟ କରି ପାରିବ ନାହିଁ । ଏହି ଅସୁରଙ୍କ ଶକ୍ତିର ଧ୍ୱଂସର ଅନେକ ଉଦାହରଣ ଅଛି । ଅତ୍ୟାଗୃହୀ ହିରଣ୍ୟ କଶ୍ୟପକୁ ବିଷ୍ଣୁ ନରସିଂହ ରୂପରେ ମାରିଲେ । ଶ୍ରୀକୃଷ୍ଣ ମଧ୍ୟ ଗୀତାରେ କହିଛନ୍ତି 'ଯେତେବେଳେ ଧର୍ମର ପତନ ଘଟେ ଓ ଅଧର୍ମ ମାଡ଼ି ଯାଏ ସେତେବେଳେ ଦୁଷ୍ଟ ନିବାରି ସନ୍ଥ ପାଳିବାକୁ ମୁଁ ଅବତୀର୍ଣ୍ଣ ହୁଏ ।

ଏହି ଆଦ୍ୟାଶକ୍ତି ପୂଜା ପ୍ରଥମେ ସୁରଥ ରାଜା ଆରମ୍ଭ କରିଥିଲେ, ତାର ଫଳରେ ସେ ଶତ୍ରୁମାନଙ୍କୁ ଧ୍ୱଂସ କରି ରାଜ୍ୟ ଫେରି ପାଇଲେ । ଲଙ୍କାଜୟବେଳେ ସ୍ୱୟଂ ରାମଚନ୍ଦ୍ର ଶକ୍ତି ଆହରଣ ନିମନ୍ତେ ଦୁର୍ଗା ପୂଜା କରିଥିଲେ । ଏହି ଦୁର୍ଗାଙ୍କୁ ବିଭିନ୍ନ କ୍ଷେତ୍ରରେ ବିଭିନ୍ନ ରୂପରେ ଶରଣ କରାଯାଇଅଛି । ପାର୍ବତୀ ଭାବରେ ସେ ହିମାଳୟର କନ୍ୟା ଥିଲେ । ଗୌରୀ ଭାବରେ ସେ ଶିବଙ୍କ ପ୍ରଣୟ ପ୍ରାର୍ଥୀ ହେଲେ । ଉମା ଭାବରେ ସେ ପୁତ୍ର ସନ୍ତାନ ଜନ୍ମ କରି ଲାଳନ ପାଳନ କଲେ ଓ ଆଦର୍ଶ ଗୃହିଣୀ ହେଲେ । ଦୁର୍ଗାଭାବରେ ମହିଷାସୁରକୁ ବଧ କଲେ । କାଳୀ ରୂପରେ ସେ ସୁମ୍ଭ ନିସୁମ୍ଭ ରାକ୍ଷସ-ମାନଙ୍କୁ ବଧ କରି ଦେବତା ମାନବ ମୁନିଋଷିଙ୍କ ଶାନ୍ତିମୟ ଜୀବନ ଯାପନ ପାଇଁ ବାଟ ପରିଷ୍କାର କରିଦେଲେ । ଦୁର୍ଗା ହେଉଛନ୍ତି ଜଗତ୍ ଜନନୀ, ଆନନ୍ଦମୟୀ ଓ ସକଳ ଶକ୍ତିର ଅଧିଷ୍ଠାତ୍ରୀ ଦେବୀ । ସେହି ଆଦିଶକ୍ତିଙ୍କୁ ହିନ୍ଦୁଜାତି ସମଗ୍ର ସୃଷ୍ଟିର ମହାମୂଳ ଶକ୍ତି ରୂପେ ପୂଜାକରି ଆସୁଅଛି । ଲକ୍ଷ୍ମୀ ଧନ ଦଅନ୍ତି, ସରସ୍ୱତୀ ବିଦ୍ୟା ଦଅନ୍ତି

କିନ୍ତୁ ଦୁର୍ଗା ଶକ୍ତି ଦିଅନ୍ତି; ଯେଉଁ ଶକ୍ତି ବଳରେ ମାନବ ଧନ, ବିଦ୍ୟା ଓ ଯଶ ଅର୍ଜନ କରି ପାରନ୍ତି । ଏହି ଶକ୍ତି ବିଶ୍ୱ ସୃଷ୍ଟିର କାରଣ, ବିଶ୍ୱସ୍ଥିତିର କାରଣ ଏବଂ ବିଶ୍ୱର ପ୍ରଳୟର କାରଣ ଅର୍ଥାତ୍ ବ୍ରହ୍ମା ବିଷ୍ଣୁ ଶିବ ଏ ତିନିଙ୍କର ଯେଉଁ କ୍ଷମତା ଅଛି ତାହା ଦୁର୍ଗା ପାଇଛନ୍ତି । ଆଦିଶଙ୍କରାଚାର୍ଯ୍ୟ ଏହି ଆଦ୍ୟାଶକ୍ତିର ପ୍ରେରଣାରେ ସନାତନ ଧର୍ମର ପୁନରୁଦ୍ଧାର କଲେ । ଶିବାଜୀ ଓ ରଣଜିତସିଂହ ଏହି ଶକ୍ତି ପୂଜାକରି ଭାରତରେ ଜାତୀୟତାକୁ ଜାଗରଣ କଲେ । ରାମକୃଷ୍ଣ ପରମହଂସ ଦୁର୍ଗାଙ୍କୁ କାଳୀ ରୂପରେ ପୂଜାକରି ଭାରତକୁ ଆଧ୍ୟାତ୍ମିକ ପ୍ରେରଣା ଦେଇଥିଲେ ।

ହିନ୍ଦୁମାନଙ୍କର ଦୁର୍ଗାପୂଜା ପରି ଶକ୍ତି ଆରାଧନା ଅନ୍ୟ କୌଣସି ଦେଶର ଇତିହାସ ଓ ପୁରାଣମାନଙ୍କରେ ଦେଖାଯାଏ ନାହିଁ । ଏହି ଶକ୍ତି ପୂଜା ପ୍ରଭାବରେ ଭାରତ ତାର ସନାତନ ଧର୍ମକୁ ରକ୍ଷା କରି ପାରିବ, ସ୍ୱାଧୀନତାକୁ ରକ୍ଷା କରିପାରିବ ଓ ସମସ୍ତ କ୍ଷେତ୍ରରେ ମଙ୍ଗଳ ଅର୍ଜନ କରିପାରିବ । ନିମ୍ନଲିଖିତ ଦୁର୍ଗା ସ୍ତୋତ୍ରରୁ ତାଙ୍କର ଶକ୍ତି କିଣ ଓ ସେ ଶକ୍ତି କିପରି ସଂସାରରେ ମଙ୍ଗଳ ସାଧନ କରୁଅଛି ତାହା ଜଣାଯିବ ।

"ଯା ଦେବୀ ସର୍ବଭୂତେଷୁ ମାତୃ ରୂପେଣ ସଂସ୍ଥିତା,
ନମସ୍ତସ୍ୟୈ ନମସ୍ତସ୍ୟୈ, ନମସ୍ତସ୍ୟୈ ନମୋ ନମଃ
ଯା ଦେବୀ ସର୍ବଭୂତେଷୁ ଶକ୍ତିରୂପେଣ ସଂସ୍ଥିତା,
ନମସ୍ତସ୍ୟୈ ନମସ୍ତସ୍ୟୈ, ନମସ୍ତସ୍ୟୈ ନମୋ ନମଃ ।
ଯା ଦେବୀ ସର୍ବଭୂତେଷୁ କ୍ଷାନ୍ତି ରୂପେଣ ସଂସ୍ଥିତା
ନମସ୍ତସ୍ୟୈ, ନମସ୍ତସ୍ୟୈ, ନମସ୍ତସ୍ୟୈ ନମୋ ନମଃ ।
ଯା ଦେବୀ ସର୍ବଭୂତେଷୁ ଶାନ୍ତିରୂପେଣ ସଂସ୍ଥିତା,
ନମସ୍ତସ୍ୟୈ, ନମସ୍ତସ୍ୟୈ, ନମସ୍ତସ୍ୟୈ ନମୋ ନମଃ ।

# କାଳୀ

କାର୍ତ୍ତିକ ମାସର ଅମାବାସ୍ୟା ରାତ୍ରିରେ ଭାରତର ସର୍ବତ୍ର କାଳୀ ପୂଜା ପାଳିତ ହୁଏ । ଯେତେବେଳେ ଦେବତାମାନେ ଅସୁରମାନଙ୍କ ଦ୍ୱାରା ପ୍ରପୀଡ଼ିତ ହେଲେ ସେମାନଙ୍କୁ ସେମାନଙ୍କ ରକ୍ଷାପାଇଁ ହିମାଳୟର ପାର୍ବତୀଙ୍କ ଶରଣାପନ୍ନ ହେଲେ । ପାର୍ବତୀଙ୍କ ନିଜ ଦେହରୁ ଅନ୍ୟ ଏକ ଦେବୀ ନିର୍ଗତ ହେଲେ ଓ ସେ ହେଲେ କାଳୀ । ସେ ଅସୁରମାନଙ୍କୁ ସଂହାର କଲେ, କାଳୀ ପୂଜା ସେହି ଘଟନାର ସ୍ମାରକ । କାଳୀ ଖଡ଼୍ଗ ମୁଣ୍ଡଧାରିଣୀ । ତାଙ୍କ ରୂପ ପ୍ରଳୟଙ୍କରୀ କିନ୍ତୁ ସେ ମୁକ୍ତି ଦାୟିନୀ ଓ ଅମୃତମୟୀ । କାଳୀ ମୂର୍ତ୍ତିର ଦର୍ଶନରେ ଧ୍ୱଂସର ବିଭୀଷିକା ମନରେ ଜାତ ହୁଏ ସତ୍ୟ କିନ୍ତୁ ଶାନ୍ତାକର ଦେଖିଲେ ବୁଝାଯାଏ, ସେହି ନରକଙ୍କାଳ ଧାରିଣୀ ବ୍ୟାଘ୍ର ଚର୍ମ ପରିହିତା ରକ୍ତବର୍ଣ୍ଣ ଚକ୍ଷୁବିଶିଷ୍ଟ କାଳୀ ଦେବୀ ଦେବତା ଓ ମାନବଙ୍କ ଶତ୍ରୁ ଅସୁରଙ୍କୁ ଧ୍ୱଂସ କରିବା ପାଇଁ ବେଶ ଧାରଣା କରି ଦେବତା ଓ ଏବଂ ମାନବଙ୍କ ପାଇଁ ଶାନ୍ତିପୂର୍ଣ୍ଣ ଜୀବନ ଯାପନର ବାଟ ପରିଷ୍କାର କରିଗଲେ ।

ଅସୁର ବା ଆସୁରିକ ପ୍ରକୃତିର ମାନବମାନଙ୍କ ପାଇଁ ତାଙ୍କ ରୂପ ଭୟଙ୍କରୀ ହୋଇଥାଏ କିନ୍ତୁ ସତ୍‌ମାର୍ଗଗାମୀ ମାନବଙ୍କ ପାଇଁ ସେ ରକ୍ଷାକର୍ତ୍ତ୍ରୀ ଓ ଦୟାମୟୀ । ଭିନ୍ନ ଭିନ୍ନ ପୁରାଣରେ ତାଙ୍କ କଥା ଭିନ୍ନ ଭିନ୍ନ ଭାବେ ବର୍ଣ୍ଣିତ ଅଛି । ସେହି ସତୀ, ସେହି ପାର୍ବତୀ, ସେହି ଦୁର୍ଗା, ସେହି ଉମା, ସେହି ଗୌରୀ, ସେହି ପୁଣି କାଳୀ; କେଉଁଠି ତାଙ୍କର ଦୟା, କେଉଁଠି ସଂହାର, କେଉଁଠି ତାଙ୍କର ପାଳନ, ସେସବୁ ସମୟ ଭେଦରେ, ଅବସ୍ଥା ଭେଦରେ ଭିନ୍ନ ଭିନ୍ନ ରୂପରେ ପ୍ରକାଶ ପାଏ । ସେହି ଆଦ୍ୟାଶକ୍ତିକୁ ଭିନ୍ନ ଭିନ୍ନ ରୂପରେ

ପୁରାଣକାରମାନେ ଉପସ୍ଥାପିତ କରି ଯାଇ ମାନବମାନଙ୍କୁ ସତ୍‌ମାର୍ଗ ଦେଖାଇ ଦେଇଅଛନ୍ତି । ସେହି ଆଦ୍ୟାଶକ୍ତିଙ୍କଠାରେ ପଞ୍ଚ ମହାଭୂତ ଲୀନ ହୁଅନ୍ତି ଓ କାମ, କ୍ରୋଧ, ଲୋଭ, ମୋହ, ମଦ, ମାତ୍ସର୍ଯ୍ୟ ଆଦି ଷଡ଼ରିପୁ ଧ୍ୱଂସଲାଭ କରନ୍ତି । ତାଙ୍କର ତିନୋଟି ଭୂତ, ବର୍ତ୍ତମାନ, ଭବିଷ୍ୟତ ତ୍ରିକାଳ ପାଇଁ ଉଦ୍ଦିଷ୍ଟ । ବଣ୍ଡ ଶାସ୍ତ୍ରର ଅଧିଷ୍ଠାତ୍ରୀ କାଳୀ ପୂଜା ଦ୍ୱାରା, ସତ୍ତ୍ୱଗୁଣ, ରଜୋଗୁଣ ଓ ତମୋ ଗୁଣକୁ ଦମନ କରାଯାଏ ।

ସେ ତାଙ୍କ ସ୍ୱାମୀ ଶିବଙ୍କ ବକ୍ଷରେ ପାଦ ପକାଇବାରେ ମଧ୍ୟ ତାତ୍ପର୍ଯ୍ୟ ଅଛି । ସଦାଶିବଙ୍କ ହୃଦୟରେ ସଗୁଣପାଇଁ ଶକ୍ତି ବାନ୍ଧିବାରେ, ସେ ହାତରେ ଯେଉଁ କଟାମୁଣ୍ଡ ଧାରଣ କରିଛନ୍ତି ଏହା ଶତ୍ରୁର ମୁଣ୍ଡ ନୁହେଁ, ଏହା ତତ୍ତ୍ୱ ଜ୍ଞାନରୂପୀ ମସ୍ତକ ଓ ରଜୋଗୁଣ ରହିତ । ତାଙ୍କ ବାମହସ୍ତରେ ଯେଉଁ ଖଡ଼୍‌ଗ ଅଛି ତାହା ଜ୍ଞାନ ରୂପକ ଖଡ଼୍‌ଗ; ଏହାଦ୍ୱାରା ଷଡରିପୁର ଧ୍ୱଂସ ସାଧନ ହୁଏ । ତାଙ୍କର ଉନ୍ନତ ସ୍ତନରୁ ବୁଝିବାକୁ ହେବ ସେ ସୃଷ୍ଟିକୁ ଆହାର ଯୋଗାଇ ପାଳନ କରନ୍ତି । ଅମାବାସ୍ୟାର ଘୋର ଅନ୍ଧକାର ମଧ୍ୟରେ କାଳୀଙ୍କର ଆବିର୍ଭାବକୁ ପୁଣ୍ୟଭୂମି ଭାରତର ଯୋଗୀ ମୁନିମାନେ ଯୁଗେ ଯୁଗେ ପୂଜା କରି ଆସୁଅଛନ୍ତି । ଏହି କାଳୀ ତତ୍ତ୍ୱରେ ରାମକୃଷ୍ଣ ପରମହଂସ ଅନୁପ୍ରାଣିତ ହୋଇ ଜଗତରେ ସନାତନ ବୈଦିକ ଧର୍ମର ପୁନରୁ-ତ୍‌ଥାନ କଲେ । ମହାଯୋଗୀ ଅରବିନ୍ଦ କାଳୀଙ୍କୁ ଭବାନୀରୂପେ କଳ୍ପନା କରି ଭାରତରେ ଜାତୀୟତା ଭାବର ଜାଗରଣ କରାଇଲେ । କାଳୀ ପୂଜାର ସାରତତ୍ତ୍ୱ ହେଲା ପୃଥିବୀରେ ଦୁର୍ନୀତି ଅତ୍ୟାଚାରର ଧ୍ୱଂସ ସାଧନା ଓ ସତ୍‌ମାର୍ଗପନ୍ଥୀ ସାଧୁମାନଙ୍କର ରକ୍ଷା ଏବଂ ରାଜ୍ୟର ଗଢ ସଂସ୍କୃତି ପାଇଁ ଦେବୀଙ୍କର ଆରାଧନା ।

# କାଳିକାଙ୍କ ସ୍ତବ

ଜୟ ଜୟ ମହାମାୟୀ ମହିଷ ମର୍ଦ୍ଦିନୀ
ଜୟ ଜୟ ତାଣ୍ଡବନ୍ତୀ ତଣ୍ଡମଣ୍ଡିନୀ ।
ବିକରାଳ ବଦନୀ ମା ଶୋଣିତ ଲେହନୀ
ହହ ହହ ହାସିନୀ ଗୋ ଖର୍ପର ଧାରଣୀ ।
କୋଟି କୋଟି ଡାକିନୀ ଶାକିନୀ ପିଶାଚିନୀ
କପାଳିନୀ, ମାୟାବିନୀ ଜୟ କପର୍ଦ୍ଦିନୀ ।
ଜୟ ଜୟ ଭୟଙ୍କରୀ କାଳୀ କପାଳିନୀ
ଜୟ ଜୟ ନିସ୍ତାରଣୀ ନରମୁଣ୍ଡ ମାଳୀ ।
ଜୟ ଜୟ ନୃମୁଣ୍ଡ ମାଳିନୀ ବିକଟାଳୀ
ଜୟ ଜୟ ନରରକ୍ତ ପିପାସୀ କରାଳୀ ।
ଜୟ ଜୟ ରଣଚଣ୍ଡୀ ଚଣ୍ଡିକା ମଣ୍ଡିନୀ
ଜୟ ଜୟ ରଣଶଙ୍କା-ଦକ୍ଷ ନିବାରଣୀ ।
ଦର୍ପ ବିନାଶିନୀ ସର୍ପଧର ବିଦଳିନୀ
ଦୁଷ୍ଟ ବିଧ୍ୱଂସିନୀ ମାତଃ ଶିଷ୍ଟପ୍ରପାଳିନୀ ।
ସକଳଙ୍କ ସାର କାଳୀ ତୁମ୍ଭେ ଗୋ ଭବାନୀ
ମୁହିଁ ମୂଢ଼ ତୁମ୍ଭ ତତ୍ତ୍ୱ ନ ଜାଣେ ଜନନୀ ।
ଅନନ୍ତ ତୁମ୍ଭର ତତ୍ତ୍ୱେ ନିତ୍ୟ ଧ୍ୟାନେ ରତ
ତଥାପି କି ବସ୍ତୁ ତୁମ୍ଭେ ନଜାଣେ ସେ ତତ୍ତ୍ୱ ।
କେବେ ବା ସାକାର କେବେ ନିରାକାର ହୁଅ
କେବେ ବା ପୁରୁଷ କେବେ ରମଣୀ ହୋଇଅ ।
ହର ହୋଇ କେବେ କର ତ୍ରିଶୂଳ ଗ୍ରହଣ
ଶଙ୍ଖ ଚକ୍ର ଗଦା ପଦ୍ମ କର ଗୋ ଧାରଣ ।

ରାମରୂପେ କେବେ ଧର ଧନୁଶର କରେ
କେବେ ବା ସମରେ ଯାଅ ଗଡ଼ଗ ହସ୍ତରେ ।
ଅନନ୍ତ ମହିମା ତବ କେ'ବା ବର୍ଣ୍ଣିପାରେ
ଏକ ମଧ୍ୟେ ପାଞ୍ଚ ହୁଏ ଜୀବ ତାରିବାରେ ।
ତୁମ୍ଭର କରୁଣା ବିନା କେବେ ନାହିଁ ମୁକ୍ତି
ଏକ ପଞ୍ଚ ପଞ୍ଚେ ଏକ ଏହା ଶିବ ଉକ୍ତି ।
ସୃଷ୍ଟି ସ୍ଥିତି ପ୍ରଳୟ ତୁମ୍ଭେ ଯେ କାରଣ
ସତ୍ୟ ସତ୍ୟ ସତ୍ୟ ତୁମ୍ଭେ ନିତ୍ୟ ନିରଞ୍ଜନ ।
ମୁହିଁ ଅତି ମୂଢ଼ମତି ନ ଜାଣେ ଭଜନ
ନିଜ ଗୁଣେ ଭବଭୟ ଘୁଞ୍ଚାଅ ଆପଣ ।
ସତତ ତୁ ବୁଲୁ ମାତଃ ନିଃଶଙ୍କ ମନରେ
ସଦା ଦୟା ରଖିଥାଉ ଭକ୍ତଙ୍କ ଉପରେ ।
ଭକ୍ତଙ୍କୁ ପଡ଼ିଲେ କଷ୍ଟ ମାତଃ ତୁ ଉଦ୍ଧରୁ
ବିଜୟଲକ୍ଷ୍ମୀକୁ ଦେଉ କରାଳ ସମରୁ ।
ତୋ ମାୟାରେ ଅତଯାତ ନିଖିଳ ସଂସାର
ସିନ୍ଧୁ ମଧ୍ୟେ ଜଳବିନ୍ଦୁ ସମ ମୁହିଁ ଛାର ।
କିପରି ଚିହ୍ନିବି ମାତଃ ତୋ ମାୟା ଅସୀମ
ତ୍ରାହି କର ତ୍ରାହି କର ଡାକୁଛି ଅଧମ ।
ପଡ଼ିଲେ ଘୋର ବିପଦେ କରୁ ମା କରୁଣା
କି ହେବ ଦାସର ଦଶା ହେଲେ କୃପା ଊଣା ।
କୃପା କଟାକ୍ଷରେ ମାତ ଦେଲେ ତୁ ଅନାଇ
ସର୍ବ ଭୟ ସର୍ବ ଶଙ୍କା ଯିବ ଦୂର ହୋଇ ।

———

# ଭକ୍ତି

'ଭଜ୍' ଧାତୁ ଅର୍ଥାତ୍ ଭଗବାନଙ୍କ ପ୍ରାର୍ଥନା ବା ଭଜନ କରିବା ବା ସେବା କରିବା'ରୁ ଭକ୍ତି ଶବ୍ଦ ଆସିଅଛି । ଭଗବାନଙ୍କ ପ୍ରତି ଶ୍ରେଷ୍ଠ ଅନୁରାଗକୁ ଭକ୍ତି କୁହାଯାଏ । କେବଳ ପ୍ରେମ ନିମନ୍ତେ ଏହି ପ୍ରେମ । ଭକ୍ତ କେବଳ ଭଗବାନଙ୍କୁ ପାଇବାକୁ ଇଚ୍ଛାକରେ । ଏ ସ୍ଥାନରେ କୌଣସି ସ୍ୱାର୍ଥର ଆଶା ନାହିଁ । ଭକ୍ତି ଅମୃତ ସଦୃଶ । ଏହା ଭଗବାନଙ୍କ ପ୍ରତି ସ୍ୱତଃ-ନିସୃତ ପ୍ରେମଧାରା । ଏହା ପବିତ୍ର ସ୍ୱାର୍ଥ-ଗନ୍ଧଶୂନ୍ୟ ପ୍ରେମ ବା ଶୁଦ୍ଧ ପ୍ରେମ । ଏହା ସ୍ୱର୍ଗୀୟ ପବିତ୍ର ଭାବ, ଯଦ୍ଦ୍ୱାରା ଭକ୍ତ ଭଗବାନଙ୍କ ସହିତ ମିଳିତ ହୁଅନ୍ତି । କେବଳ ଭକ୍ତମାନଙ୍କର ଏହା ଅନୁଭବ ସାପେକ୍ଷ ।

ଭକ୍ତି ସମସ୍ତ ଧର୍ମଜୀବନର ମୂଳ । ଭକ୍ତି ବାସନା ଅହଂକାର ନଷ୍ଟକରେ । ଭକ୍ତି ମନକୁ ମହାନ୍ ଉଚ୍ଚସ୍ତରକୁ ନେଇଯାଏ । ଭଗବାନ କହନ୍ତି "ଭକ୍ତମୋର ପ୍ରାଣର ପ୍ରାଣ—ମନର ମନ—ସର୍ବସ୍ୱର ସର୍ବସ୍ୱ—ପ୍ରାଣଠୁଁ ବଳି ପ୍ରିୟତର ।"

## ସକାମ ଭକ୍ତି-ନିଷ୍କାମ ଭକ୍ତି

ସକାମ ଭକ୍ତିକରେ ଯେବଣନର
ପୁନଃପୁନଃ ଜନମ ହୁଏ ତାହାର ।
ନିଷ୍କାମ ଭକ୍ତି ଯେହୁ ଥାଏ ଅତର
ନିର୍ବାଣ ଲଭେ ଶେଷେ ଆତ୍ମା ତାହାର ।

ଗୁଣଭେଦରେ ଗୌଣ ଭକ୍ତି ତିନି ପ୍ରକାର । ଦସ୍ୟୁ, ଚୋର ଓ ଅନ୍ୟାନ୍ୟ ପରାପକାରୀ ବ୍ୟକ୍ତିମାନେ ସେମାନଙ୍କର ଦୁରଭିସନ୍ଧି ସଫଳହେବା ଲାଗି ଯେଉଁ ଭକ୍ତିରେ ଭଗବାନଙ୍କୁ ଡାକନ୍ତି,

ତାକୁ 'ତାମସୀ' ଭକ୍ତି କହନ୍ତି । ଦସ୍ୟୁମାନେ ଅଭୀଷ୍ଟସାଧନ ପାଇଁ କାଳୀପୂଜା କରିଥାଆନ୍ତି । କେବେ କେବେ ମଧ୍ୟ ଅନେକ ଲୋକ ମିଥ୍ୟା ମକଦ୍ଦମାରେ ଜିଣିବାପାଇଁ କାଳୀ ନାମ ଜପକରିବା କିମ୍ବା ତାଙ୍କ ପୂଜାକରିବାର ଦେଖାଯାଏ । ଏମାନେ ସମସ୍ତେ ତାମସ ଭକ୍ତ । ପୁତ୍ର, ଯଶ, ଧନ, ମାନ, ଐଶ୍ୱର୍ଯ୍ୟ ପ୍ରଭୃତି କାମନାକରି, ଭୋଗାଭିଳାଷୀ ହୋଇ, 'ଯେ ମୋର ଅନିଷ୍ଟ କରୁଛି ତାର ଅନିଷ୍ଟ ହେଉ' ଏପରି ଇଚ୍ଛାକରି ଯେଉଁମାନେ ଭଗବାନଙ୍କୁ ଡାକନ୍ତି, ସେମାନଙ୍କ ରାଜସ ଭକ୍ତ କୁହାଯାଏ । ଭୋଗବିଳାସ ପ୍ରତି ଯେଉଁମାନଙ୍କର ଆଦୌ ଦୃଷ୍ଟି ନାହିଁ, ପରୋପକାର ସାଧନ ଯେଉଁମାନଙ୍କ ଜୀବନର ବ୍ରତ, କେବଳ ମୁକ୍ତି କାମନା କରି ଯେଉଁମାନେ ଭଗବାନଙ୍କୁ ଡାକନ୍ତି, ସେଇମାନେ ହେଉଛନ୍ତି 'ସାତ୍ତ୍ୱିକୀ' ଭକ୍ତ । ଏହି ତିନି ପ୍ରକାର ଭକ୍ତି ହେଉଛି ସକାମ ଭକ୍ତି । ମୁଖ୍ୟା ଭକ୍ତି ନିଷ୍କାମ ଅଟେ । ମୁଖ୍ୟା ଭକ୍ତିରେ ମୁକ୍ତି କାମନା ସୁଦ୍ଧା ନାହିଁ । ହୃଦୟରେ କୌଣସି ଭକ୍ତିର ଉଦୟହେଲେ ତହିଁରୁ କ୍ରମେ ମୁଖ୍ୟା ଭକ୍ତି ପ୍ରକାଶ ପାଏ ।

ଅଧିକାର ଭେଦରେ ଗୌଣୀ ଭକ୍ତି ତିନି ପ୍ରକାର, ଯଥା— ଆର୍ତ୍ତ, ଜିଜ୍ଞାସୁ ଓ ଅର୍ଥାର୍ଥୀ । କୌଣସି ବିପଦରେ ପଡ଼ି ସେଥିରୁ ରକ୍ଷାପାଇବାପାଇଁ ଯେଉଁମାନେ ଭଗବାନଙ୍କୁ ପ୍ରାଣପଣେ ଡାକନ୍ତି, ସେମାନଙ୍କୁ 'ଆର୍ତ୍ତ ଭକ୍ତ' କହନ୍ତି । ଦୁଃଖୀ ଅଧିକେ ସମସ୍ତେ ପ୍ରାୟ ରୋଗ-ଶୋକ-ବିପଦରେ ପଡ଼ି ଭଗବାନଙ୍କୁ ଡାକଥାନ୍ତି । ଚିଲିକା ଗଣ୍ଡରେ ନାଆରେ ବସି ଗଲାବେଳେ ନାଆ ଯେତେବେଳେ ଲହରୀ ଘାତରେ ଟଳମଳ ହେଉଥାଏ, ସେତେବେଳେ ଆମେ ସମସ୍ତେ ଆର୍ତ୍ତ ଭକ୍ତ ପାଲଟିଯାଇଥାଉ ।

ଯେଉଁମାନେ ଭଗବାନଙ୍କ ମହିମା ଜାଣିବାକୁ ଇଚ୍ଛାକରି ସେ ବିଷୟର ଆଲୋଚନା କରନ୍ତି, ଭଗବାନଙ୍କ ପ୍ରତି ହୃଦୟରେ ପ୍ରେମଭାବ ନ ଥିଲେ ମଧ୍ୟ ତାଙ୍କର ଏ ବିପୁଳ ସୃଷ୍ଟିର କାର୍ଯ୍ୟକଳାପ ଜାଣିବାଲାଗି ବ୍ୟାକୁଳ ହୁଅନ୍ତି—ସେମାନଙ୍କୁ 'ଜିଜ୍ଞାସୁ ଭକ୍ତ' କୁହାଯାଏ । କୌଣସି ଅଭୀଷ୍ଟସାଧନ କରିବାପାଇଁ ଯେଉଁମାନେ ଭଗବାନଙ୍କୁ ଡାକନ୍ତି ସେମାନେ 'ଅର୍ଥାର୍ଥୀ' । ପୁତ୍ର ଦିଅ, ଧନ ଦିଅ, ଯଶ ଗୌରବ ବଢ଼ାଅ—ଭଗବାନଙ୍କ ନିକଟରେ ଅର୍ଥାର୍ଥୀ ଭକ୍ତ ଏହାହିଁ ପ୍ରାର୍ଥନା କରେ ।

ଏ ସମସ୍ତଙ୍କୁ ନିକୃଷ୍ଟ ଭକ୍ତ କୁହାଯିବ; କିନ୍ତୁ ଏହି ଶ୍ରେଣୀର ନିକୃଷ୍ଟ ଭକ୍ତ ସାଧନ କରୁ କରୁ ଅଳ୍ପ ଦିନ ମଧ୍ୟରେ ଏମାନେ ଉତ୍କୃଷ୍ଟ ଭକ୍ତ ହୋଇପଡ଼ନ୍ତି । ଯେ ବିପଦରେ ପଡ଼ିଲାବେଳେ ଭଗବାନଙ୍କୁ ଡାକିବାକୁ ଶିଖିଛି, ସେ କିଛି ଦିନ ହୃଦୟରେ ସେହି ଭାବ ରଖିପାରିଲେ ବିପଦ ଦୂରହୋଇଗଲା ପରେ ମଧ୍ୟ ତାଙ୍କୁ ନ ଡାକି ରହିପାରିବ ନାହିଁ । ଏପରିକି, ଅବଶେଷରେ ସେ ମୁଖ୍ୟା ଭକ୍ତି ଲାଭକରି କୃତାର୍ଥ ହେବ । ଯେ ପ୍ରକୃତ ଜିଜ୍ଞାସୁ ଭକ୍ତ ସେ ପ୍ରତିଦିନ ଭଗବତ୍ତତ୍ତ୍ୱ ଆଲୋଚନା କରୁ କରୁ ଶେଷରେ ସେହି ଅମୃତମୟ ରସରେ ଏପରି ମୋହିତ ହୋଇପଡ଼େ ଯେ, ତାହା ଆଉ ଛାଡ଼ି ରହିପାରେ ନାହିଁ । ପ୍ରତିଦିନ ସେ ମଧୁ ପାନକରି ଏପରି ଭୋଳ ହୋଇଯାଏ ଯେ, ତାହା ନ ହେଲେ ଆଉ ଚଳିହୁଏ ନାହିଁ । ସେତେବେଳେ ଗୌଣୀ ଭକ୍ତି ମୁଖ୍ୟା ଭକ୍ତିର ସ୍ଥାନ ଅଧିକାର କରେ । ଅର୍ଥାର୍ଥୀ ଭକ୍ତ କିପରି ଯେ ମୁଖ୍ୟା ଭକ୍ତି ଲାଭକରେ ଭକ୍ତଚୂଡ଼ାମଣି ଧ୍ରୁବ ତାହାର ଚୂଡ଼ାନ୍ତ ଦୃଷ୍ଟାନ୍ତ । —ଭକ୍ତିଯୋଗ ।



## ଭକ୍ତର ପ୍ରକାର ଓ ଲକ୍ଷଣ

ଯାହାଙ୍କର ଆତ୍ମ ପର ଭେଦଭାବ ନାହିଁ, ସମ୍ପତ୍ତରେ ସ୍ୱକୀୟ, ପରକୀୟ ଜ୍ଞାନ ନାହିଁ, ଯେ ସମ୍ପଦରେ ହୃଷ୍ଟ ହୁଅନ୍ତି ନାହିଁ, ଯାହାଙ୍କର କାହା ପ୍ରତି ହେଲେ କୌଣସି ପ୍ରକାର ଦ୍ୱେଷଭାବ ନାହିଁ, ସମସ୍ତଙ୍କ ପାଇଁ ମୈତ୍ରୀ, କରୁଣା ଯାହାଙ୍କ ହୃଦୟରେ ବିରାଜିତ, ଯାହାଙ୍କର 'ମୋର ମୋର' ଏହି ଜ୍ଞାନ ନାହିଁ, ଯେ ନିରହଂକାର ଓ କ୍ଷମାଶୀଳ, ଯାହାଙ୍କ ହୃଦୟରେ ସବୁବେଳେ ସନ୍ତୋଷ ବିରାଜିତ, ଯାହାଙ୍କ ପାଖରେ ସୁଖ ଦୁଃଖ ସମାନ, ଯେ କୌଣସି ପଦାର୍ଥ ନ ପାଇଲେ ଦୁଃଖ କରନ୍ତି ନାହିଁ କିମ୍ବା ପାଇବା ପାଇଁ ଆଶା ରଖନ୍ତି ନାହିଁ ; ଯାହାଙ୍କ ପାଖରେ ନିନ୍ଦା ସ୍ତୁତି ସବୁ ସମାନ, ଯେତିକି ପାଆନ୍ତି ସେତିକିରେ ସନ୍ତୁଷ୍ଟ ରହନ୍ତି, ସବୁବେଳେ ଠାଏକରେ (ଏକ ସ୍ଥାନରେ) ରହନ୍ତି ନାହିଁ, ଯେ ଶୁଚିବନ୍ତ, ଅନାଶକ୍ତ ଓ କର୍ମଠ, ସେହି ଲୋକ ଉତ୍ତମ ଭକ୍ତ ବା ଭଗବାନଙ୍କର ପ୍ରିୟଭକ୍ତ ।

ଯେଉଁ ବ୍ୟକ୍ତି ଈଶ୍ୱରଙ୍କଠାରେ ପ୍ରେମ, ଭକ୍ତମାନଙ୍କ ସହିତ ବନ୍ଧୁତା, ମୂର୍ଖମାନଙ୍କ ପ୍ରତି ଘୃଣାଭାବ ତ୍ୟାଗକରି କୃପା କରନ୍ତି, ଶତ୍ରୁମାନଙ୍କ ପ୍ରତି ଦ୍ୱେଷ ବା ହିଂସାଭାବ ନ ଥାଏ—ସେମାନେ ମଧ୍ୟମଶ୍ରେଣୀ-ଭକ୍ତ—

ଯେଉଁ ବ୍ୟକ୍ତି ଈଶ୍ୱର-ଭକ୍ତଙ୍କୁ ଶ୍ରଦ୍ଧା ନ ଦେଖାଇ ସାମାନ୍ୟ ଭକ୍ତିରେ ଉପବାସ ପ୍ରଭୃତି କରନ୍ତି ଏବଂ ନିଜ ପରି ଅନ୍ୟ ପ୍ରତିମା ପୂଜକଙ୍କୁ ଶ୍ରଦ୍ଧା ଦେଖାନ୍ତି, ସେମାନେ ଏହି ନିକୃଷ୍ଟ ଶ୍ରେଣୀ ଭକ୍ତଙ୍କ ମଧ୍ୟରେ ଗଣାଯାଇ ପାରିବେ । —ଭାଗବତ—

ଏମାନଙ୍କ ଛଡ଼ା ଅନ୍ୟ ଏକ ଶ୍ରେଣୀର ଭକ୍ତ ଅଛନ୍ତି, ଯେଉଁମାନଙ୍କର ଭକ୍ତି କୃପାସିଦ୍ଧା, ସେମାନେ ଶାସ୍ତ୍ର ନ ପଢ଼ି ବା ସାଧନା ନକରି ଶ୍ରୀକୃଷ୍ଣଙ୍କ କୃପାରୁ କିମ୍ବା ଉଚ୍ଚ ଭକ୍ତ କୃପାରୁ ଉତ୍ତମ ଭକ୍ତି ଲାଭ କରନ୍ତି, ଯେମନ୍ତେ କି କୁମ୍ଭୀର କବଳରେ ପଡ଼ିଥିବା ଗଜ ମୁକ୍ତିଲାଭ କରିଥିଲା । ଯେଉଁ ଲୋକର ଭକ୍ତିରେ ଶ୍ରଦ୍ଧା ନାହିଁ ସେ କୋଟି କୋଟି ଯାଗ କରୁ ବା ମେରୁ ସମାନ ଦ୍ରବ୍ୟ ଦାନ କରୁ ବା କୋଟିତୀର୍ଥ ଭ୍ରମଣ କରୁ ଭକ୍ତିରେ ଅଧିକାରୀ ହୋଇ ନ ପାରେ ।

—ହରିଭକ୍ତି ଚନ୍ଦ୍ରୋଦୟ,୰ଭକ୍ତକବି ଭୀମ ଦାସ—

## ଭକ୍ତର ହୃଦୟ

ଭକ୍ତର ହୃଦୟ ଭଗବାନଙ୍କର ଆବାସସ୍ଥଳ । ସେ ସର୍ବଭୂତରେ ଅଛନ୍ତି ସତ୍ୟ; କିନ୍ତୁ ଭକ୍ତ ହୃଦୟରେ ବିଶେଷରୂପେ ଅଛନ୍ତି । ଯେପରି କୌଣସି ଜମିଦାର ତାହାଙ୍କର ଜମିଦାରୀର ସମସ୍ତ ସ୍ଥାନରେ ରହି ପାରନ୍ତି । 'ତେବେ ଅମୁକ ବୈଠକଖାନାରେ ସେ ପ୍ରାୟ ଥାଆନ୍ତି' ଏହି କଥା ଲୋକଙ୍କ ମୁଖରୁ ଶୁଣାଯାଏ । ଭକ୍ତର ହୃଦୟ ଭଗବାନଙ୍କର ବୈଠକଖାନା ।

—ରାମକୃଷ୍ଣ ଉପଦେଶାମୃତ—

## ଭକ୍ତର ଭାବ

ଭକ୍ତର ଭାବ କି ରୂପ ଜାଣ ?

ସେ କହେ 'ହେ ଭଗବାନ ! ତୁମ୍ଭେ ପ୍ରଭୁ, ମୁଁ ତୁମ୍ଭର ଦାସ; ତୁମ୍ଭେ ମା, ମୁଁ ତୁମ୍ଭର ସନ୍ତାନ; ପୁଣି ତୁମ୍ଭେ ମୋର ସନ୍ତାନ ମୁଁ ତୁମ୍ଭର ପିତା ବା ମାତା; ତୁମ୍ଭେ ପୂର୍ଣ୍ଣ, ମୁଁ ତୁମ୍ଭର ଅଂଶ । କିନ୍ତୁ ଭକ୍ତ ଏପରି କହିବାକୁ ଇଚ୍ଛା କରେ ନାହିଁ ଯେ ମୁଁ ବ୍ରହ୍ମ ।

—ରାମକୃଷ୍ଣ ଉପଦେଶାମୃତ—

ଯୀଶୁଖ୍ରୀଷ୍ଟ ତାଙ୍କ ଶିଷ୍ୟମାନଙ୍କୁ ଉପଦେଶ ଦେଇଥିଲେ- "ହେ ଭକ୍ତଗଣ ! ସବୁବେଳେ ଆତ୍ମସଂଗୋପନ କରି ରହ । କୌଣସି ପ୍ରକାରେ ବାହାର ଲକ୍ଷଣ ଦେଖାଇ ଲୋକଙ୍କର ପ୍ରଶଂସା କିମ୍ବା ଅନୁରାଗ ପାଇବାକୁ ମନ ବଳାଅ ନାହିଁ । ତୁମ୍ଭେ ଯଦି ମନୁଷ୍ୟ ନିକଟରେ ତୁମ୍ଭର ଧର୍ମର ପରିଚୟ ଦେବାକୁ ଚେଷ୍ଟା କରିବ, ତା ହେଲେ ସେଥିରେ ତୁମ୍ଭର ଏବଂ ଜଗତର ଘୋର ଅନିଷ୍ଟ ହେବ ।" ସେ କହିଥିଲେ, "ଦାନ, ଈଶ୍ୱରପ୍ରାର୍ଥନା ଏବଂ ଉପବାସ ଅତି ସଂଗୋପନରେ କରିବାକୁ ହେବ । ଧର୍ମରକ୍ଷା ପାଇଁ ତୁମ୍ଭେ ଯେତେ ଯେତେ କଷ୍ଟ ସହୁଛ, ତାହାସବୁ ଲୋକଙ୍କୁ ଜଣାଇବା ପାଇଁ କାନ୍ଦି କାନ୍ଦି ପରଦ୍ୱାରରେ ଭିକ ମାଗି ବୁଲ ନାହିଁ । ଯଦି ଉପବାସ କରୁଛ, ତେବେ ଘରେ ରହ; ତୁମ୍ଭେ ଉପବାସ କରୁଛ ବୋଲି ଲୋକେ ନ ଜାଣନ୍ତୁ, ଲୋକଙ୍କ କଥାରେ କିଛି ଯାଏ ଆସେ ନାହିଁ ।" ପ୍ରକୃତ ଭକ୍ତ ନିଜକୁ ଭକ୍ତ ବୋଲି କହି ବୁଲିବା ଦରକାର ପଡ଼େ ନାହିଁ । ତାଙ୍କର କାର୍ଯ୍ୟ, କଥା ଓ ଚିନ୍ତାରୁ ତାଙ୍କର ଧର୍ମଭାବ ବାହାରେ ପ୍ରକାଶ ହୋଇପଡ଼େ । ନିଆଁକୁ କେବେ ଘୋଡ଼ାଇ ରଖି ହୁଏ ନାହିଁ । ସଂସାରରେ ଧାର୍ମିକ ଲୋକ କେବେହେଁ ଲୁଚି ରହିପାରିବ ନାହିଁ । ଆମ ଦେଶରେ କଥା ଅଛି ଯେ 'ସାଧୁ ସନ୍ନ୍ୟାସୀମାନେ ଏକ ସ୍ଥାନରେ ତିନିରାତିରୁ ଅଧିକ ରହନ୍ତି ନାହିଁ' କାଳେ ଲୋକେ ତାଙ୍କୁ ସାଧୁ ବୋଲି ଚିହ୍ନି ପାରିବେ ।

-ମହାତ୍ମା ଯୀଶୁଖ୍ରୀଷ୍ଟ

ଭଗବାନ ଅବିଶ୍ୱାସୀ ବ୍ୟକ୍ତି ପ୍ରତି ବଜ୍ରଠାରୁ କଠିନ, କିନ୍ତୁ ବିଶ୍ୱାସୀ ଭକ୍ତ ସକାଶେ କୁସୁମଠାରୁ ବି କୋମଳ । କାକଭୁଷଣ୍ଡୀ କହୁଛନ୍ତି, ହେ ଗରୁଡ଼ ! 'ରଘୁନାଥଜୀଙ୍କର ଏପରି ରୀତିକୁ ସ୍ୱପ୍ନରେ ବୁଝି ପାରନ୍ତି ନାହିଁ ।' ଭଗବାନ ଯେପରି କଠୋର ତପସ୍ୟାରେ

ପ୍ରାପ୍ତ ହୁଅନ୍ତି, ସେହିପରି ସାଧନ-ରହିତ, ସରଳ ଶ୍ରଦ୍ଧାବାନ ଭକ୍ତକୁ ବି ଦର୍ଶନ ଦିଅନ୍ତି । ବୈଦିକ ଯୁଗରେ ଯେପରି ଶୁକଦେବ, ନାରଦ, ସନତ୍କୁମାର ଆଦି ବୀତରାଗ, ତ୍ୟାଗୀଋଷି ଥିଲେ, ସେହିପରି ବଶିଷ୍ଠ ଯାଜ୍ଞ୍ୟବଲ୍କ୍ୟ, ଅତ୍ରି ଆଦି ମଧ୍ୟ ଗୃହସ୍ଥ ଋଷି ଥିଲେ । ଏ ଯୁଗରେ ବି ଆଚାର୍ଯ୍ୟ ଶଙ୍କର, ନିମ୍ବାର୍କ, ରାଧାନନ୍ଦ, ସମର୍ଥ ରାମଦାସ ଗୋସ୍ୱାମୀ ତୁଳସୀ ଦାସ ଆଦି ତ୍ୟାଗୀ ମହାପୁରୁଷଙ୍କ ସଙ୍ଗେ ଆଚାର୍ଯ୍ୟ ବଲ୍ଲଭ ଏବଂ ତାଙ୍କର ପୁତ୍ର ପୌତ୍ରାଦିକ୍ରମେ ଗୃହସ୍ଥ ଆଚାର୍ଯ୍ୟ ଥିଲେ ଏବଂ ଭଗବାନଙ୍କୁ ପ୍ରାପ୍ତ ହୋଇଥିଲେ । ସେହି ସମୟରେ ସେହିଭକ୍ତ, ଧନାଜାଠ, ତୁକାରାମ, ଏକନାଥ, ନାମଦେବ ଆଦି ଗୃହରେ ଥାଇ ଗାର୍ହସ୍ଥ୍ୟ କର୍ମ କରିବା ସତ୍ତ୍ୱେ ଭଗବାନଙ୍କୁ ସାକ୍ଷାତ ଉପଲବ୍‌ଧି କରିଥିଲେ । ମନୁଷ୍ୟ ମାନଙ୍କର ଏକମାତ୍ର ଉଦ୍ଦେଶ୍ୟ ଭଗବାନଙ୍କୁ ଉପଲବ୍‌ଧି କରିବା । ସେ ଗୃହସ୍ଥ ହେଉ ବା ସନ୍ନ୍ୟାସୀ ହେଉ । ଏହି ଯୁଗରେ ଏହି ସମୟରେ କେତେ ସରଳ ଏକବାର ସାଧାରଣଗୃହସ୍ଥ ବି ଭଗବାନଙ୍କୁ ଉପଲବ୍‌ଧି କରିଅଛନ୍ତି ।

(ନବଜ୍ୟୋତି ପତ୍ରିକା-୨ୟ ବର୍ଷ ୨ ସଂଖ୍ୟା ଅରବିନ୍ଦ ଆଶ୍ରମ ପଣ୍ଡିଚେରୀ ।)

## ଭକ୍ତର ଭଗବାନ

ସବୁଠାରୁ ଅତି ପ୍ରିୟ ଜାଣ ଭକ୍ତଗଣ
ଭକ୍ତକୁ କରନ୍ତି ରକ୍ଷା ସଦା ନାରାୟଣ ।
ଭକ୍ତକୁ ରଖଇ ସଦା ଚକ୍ର ସୁଦର୍ଶନ
ତଥାପି ନୁହନ୍ତି ସ୍ଥିର ଦେବ ଜନାର୍ଦ୍ଦନ ।
ଭକତ ସହିତ ରହିଥାନ୍ତି ସର୍ବକ୍ଷଣ
ଛାୟାରୂପେ ଭକ୍ତଜନେ କରନ୍ତି ପାଳନ ।

ପ୍ରାଣଠାରୁ ସ୍ନେହପାତ୍ର ତାଙ୍କ ଭକ୍ତ ଜାଣ
ଯେ ଜନ ଚରଣେ ତାଙ୍କ ପଶିବ ଶରଣ ।
ପ୍ରଳୟେ ବ୍ରହ୍ମାଣ୍ଡ ବୁଡ଼େ ପ୍ରଳୟର ଜଳେ
ଭକ୍ତର ମରଣ ନାହିଁ ଜାଣ କେଉଁ କାଳେ ।
ନିଜଠାରୁ ବଡ଼ ଭକ୍ତ ଭକ୍ତଦାସ ହର
ଭକ୍ତଲାଗି ବହୁ ଦୁଃଖ ସୁଖେ ନ୍ୟନ୍ତି ବର ।
ଭକ୍ତପାଇଁ ନିଜ ଯଶ କୀର୍ତ୍ତି ବିନାଶନ୍ତି
ଭକ୍ତଠାରୁ ନାହିଁ ବଡ଼ କେହି ଏହି ସ୍ଥିତି ।

—ଶିବ ପୁରାଣ—

## ଭଲପାଇବା

ଜଣେ ଜଣକୁ ଭଲପାଏ, ସ୍ୱାର୍ଥ ନ ରଖି ଭଲପାଏ । ଭଲ ନ ପାଇଲେ ମଧ୍ୟ ସେ ଭଲ ପାଏ; ଏପରି ଭଲପାଇବା ଜଗତରେ କେଉଁଠାରେ ମିଳିବ ନାହିଁ ।

ଜଗତରେ ସ୍ୱାର୍ଥପାଇଁ, କ୍ଷମତା ପାଇଁ, ଐଶ୍ୱର୍ଯ୍ୟ, ଗୌରବ ଓ ପଦମର୍ଯ୍ୟାଦା ପାଇଁ, ରୂପ-ଯୌବନପାଇଁ ଜଣେ ଜଣକୁ ଭଲପାଏ; କିନ୍ତୁ ଭକ୍ତ ଓ ଭଗବାନଙ୍କ ଭିତରେ ଭଲ ପାଇବାର ସୂତ୍ର ଅଲଗା । ତା'ର ଉପାଦାନ ମଧ୍ୟ ଅଲଗା । ସେ ସବୁ ଦାନପାଇଁ ଅତୁଟ । ନିତ ନୂଆ ନୂଆ ଭାବ ଉଭୟଙ୍କ ଭିତରେ ଥାଏ । ଭଗବାନ ଚିରଦିନ ପାଇଁ ଭକ୍ତର । ସମୟେ ସମୟେ ଭକ୍ତ ତାଙ୍କର ହୋଇ ନପାରିଲେ ମଧ୍ୟ ସେ ଭକ୍ତର ବୋଲି ଶତବାର ସ୍ୱୀକାର କରିଛନ୍ତି ।

—ଭକ୍ତିଯୋଗ—

ଯେଉଁଜନ ପର ନିନ୍ଦା କରେ ନାହିଁ, ଖଳ କହେ ନାହିଁ, ମିଛ କହେ ନାହିଁ, ପରକୁ ଅକୁଳ କରେ ନାହିଁ, ପରଦାରାରେ ଏବଂ ପରଦ୍ରବ୍ୟରେ ଅଭିଳାଷ କରେ ନାହିଁ, ଜୀବ-ହିଂସା କରେ ନାହିଁ, ପ୍ରାଣୀଙ୍କୁ କୌଣସି ବାଧା ଦିଏ ନାହିଁ, ପୂଜ୍ୟଜନଙ୍କ ଶୁଶ୍ରୂଷା କରେ, ନିଜର ଏବଂ ପୁତ୍ରର ହିତସାଧନ କରିବା ପରି ସକଳ ପ୍ରାଣିଙ୍କ ହିତସାଧନ କରେ ଏବଂ ରାଗଦ୍ୱେଷାଦି ଦୂଷିତଚିତ୍ତ ନୋହିଥାଏ, ସେହି ମାତ୍ର ଜଗଦୀଶଙ୍କର ପ୍ରେମପାତ୍ର ହୁଏ । ( ବିଷ୍ଣୁ ପୁରାଣ)

## ଭକ୍ତବତ୍ସଳ ଭଗବାନ

ଯେ ନିଜକୁ ଭଗବାନଙ୍କ ଚରଣରେ ଅର୍ପଣ କରିଦିଏ, ଭଗବାନ ତା ସହିତ ଛାୟା ସଦୃଶ ରହି ତାକୁ ରକ୍ଷାକରନ୍ତି । ଯାହାର ରକ୍ଷକ ଭଗବାନ, ତା'ର ଅନିଷ୍ଟ କରିବ କିଏ ?

× × ×

ଭଗବାନଙ୍କ ଦର୍ଶନ ପାଇଁ ବ୍ୟାକୁଳ ହେଲେ ଭଗବାନ ଧୈର୍ଯ୍ୟ ଧରି ରହି ପାରନ୍ତି ନାହିଁ । ସେ ଭକ୍ତକୁ ଦର୍ଶନ ଦେବାକୁ ଦୌଡ଼ିଆସନ୍ତି । ସେ ତ ଭକ୍ତ ସହିତ ଛାୟାସଦୃଶ ଲାଗି ରହିଥାଆନ୍ତି । ଭକ୍ତର ପ୍ରେମ ବୃଦ୍ଧି କରାଇବା ସକାଶେ ଲୁଚକାଳି ଖେଳନ୍ତି; କିନ୍ତୁ ଭକ୍ତର ପ୍ରେମ-ପାଶରୁ ମୁକ୍ତ ହେବାର ତାଙ୍କର ଶକ୍ତି ନ ଥାଏ । ତାଙ୍କ ପାଖରେ ସମସ୍ତ ବ୍ରହ୍ମାଣ୍ଡ ହାରି ଯାଏ, ସେ ହାରନ୍ତି ଭକ୍ତ ପାଖରେ । —ନବଜ୍ୟୋତି—ଅଷ୍ଟମବର୍ଷ—୪ର୍ଥ ସଂଖ୍ୟା ।

ଭଗବାନ ଭକ୍ତବତ୍ସଳ, ଭକ୍ତର ଅଧୀନ, ଭକ୍ତପାଇଁ ସେ ଅସମ୍ଭବକୁ ସମ୍ଭବ କରନ୍ତି । ଭକ୍ତ ସଙ୍ଗେ ସଙ୍ଗେ ଛାୟା ପରି ରହି ନିରନ୍ତର ତାକୁ ରକ୍ଷା କରନ୍ତି । ଭକ୍ତ ସକାଶେ ନାନାରୂପ ଧାରଣ

କରିବାରେ କୁଣ୍ଠିତ ହୁଅନ୍ତି ନାହିଁ । ଭକ୍ତପାଇଁ ସମସ୍ତ ଐଶ୍ୱର୍ଯ୍ୟ ଭୁଲି ଭକ୍ତର ବାଳକ ହୋଇ ତାଙ୍କ କୋଳରେ ଖେଳନ୍ତି । ଏହା କେବଳ ଭାବୁକତା ନୁହେଁ । ଏହାର ସାକ୍ଷୀ ଭକ୍ତମାନେ ଓ ଇତିହାସ । ସେ ଦଶରଥ-କୌଶଲ୍ୟା ଓ ନନ୍ଦ-ଯଶୋଦାଙ୍କର ପୁତ୍ର ଥିଲେ । ଯେତେବେଳେ ଯଶୋଦା ଛାଟ ନେଇ ତାଙ୍କୁ ପିଟିବାକୁ ଲାଗିଲେ, ସେତେବେଳେ ସେ ଭୟରେ ଅସ୍ଥିର ହୋଇ କାନ୍ଦି ଆଖିରୁ କୋଳ ପର ଟପ ଟପ ଲୁହ ଗଡ଼ାଇଲେ । ଯେ ବ୍ରହ୍ମାଣ୍ଡନାୟକ, ଯାହାଙ୍କ ଚକ୍ଷୁର ଇଙ୍ଗିତରେ କୋଟି କୋଟି ବ୍ରହ୍ମାଣ୍ଡ ଏକ କ୍ଷଣରେ ସୃଷ୍ଟି ହୋଇପାରେ, ଅଚ୍ଚ ଯାହାଙ୍କୁ ପାଇବା ସକାଶେ କେତେ ଯୋଗୀ-ମୁନି ତପସ୍ୟା କରି ଅନୁଭୂତିରେ ପାଆନ୍ତି ନାହିଁ, ସେହି ବ୍ରହ୍ମ ଭକ୍ତିଭାବରେ ବନ୍ଦୀ ହୋଇ କାନ୍ଦୁଅଛନ୍ତି । ଧନ୍ୟ ପ୍ରଭୁ ତୋର ଭକ୍ତବତ୍ସଳତା ! ଏପରି ଯେ ଦୟାମୟ ପ୍ରଭୁ, ନିଜର ଅହେତୁକୀ କୃପାରୁ ଭକ୍ତରାଜର ଭକ୍ତି ପାଶରେ ବନ୍ଦୀହୋଇ ପ୍ରତିମାରେ ସାକ୍ଷାତ୍ ପୁରୁଷୋତ୍ତମ-ତତ୍ତ୍ୱରୂପେ ପ୍ରକଟ ହେବା ଆଶ୍ଚର୍ଯ୍ୟ କ'ଣ ? ଭକ୍ତ ସକାଶେ ଭଗବାନଙ୍କର ଅଦେୟ କିଛି ନାହିଁ, କେବଳ ବିଶ୍ୱାସ ହେବା ଉଚିତ । ବିଶ୍ୱାସ ହେଲେ ଭଗବାନ ପ୍ରାପ୍ତ ହୁଅନ୍ତି,ଏଥିରେ କୌଣସି ସନ୍ଦେହ ନାହିଁ । ବିଶ୍ୱାସ, ନିର୍ଭରତା, ପ୍ରେମ କୌଣସି ସାଧନାର ଅଶ୍ରୟ ନୁହେଁ ନାହିଁ । ଭଗବାନଙ୍କୁ ପ୍ରାପ୍ତ ହେବା ସକାଶେ ଏହାହିଁ ପର୍ଯ୍ୟାପ୍ତ । ଉତ୍କଳବାସୀ ପ୍ରାୟ ସମସ୍ତେ ଜାଣନ୍ତି, କରମାବାଈ ଘରେ ଜଗନ୍ନାଥ ଖେଚଡ଼ି ଖାଇଥିଲେ । ସେ'ତ ଯୋଗୀ-ମୁନି ନ ଥିଲେ, ତାଙ୍କର ବିଶ୍ୱାସ, ଭକ୍ତି ଓ ସରଳ ପ୍ରେମ ଥିଲା । —ନବଜ୍ୟୋତି ପତ୍ରିକା ୨୪ ଏପ୍ରିଲ୍ ୧୯୫୯ )

ଭକ୍ତ ବଳରେ ପୁରୀ ଜଗନ୍ନାଥ ଦେବଙ୍କ ମୁଣ୍ଡରେ ବାଳ ହେବା କଥା ରାଜା ଦର୍ଶନ କରି ପାରିଥିଲେ ।

ଭକ୍ତ ବଳରେ ଖମ୍ବରୁ ଭଗବାନ ରୂପ ପରିଗ୍ରହ କରି ବାହାରିଥିଲେ ।

ଭକ୍ତ ବଳରେ ପାଷାଣ ପ୍ରତିମା ସାକ୍ଷ ଦେବା ସକାଶେ ଭକ୍ତର ପଛେ ପଛେ ଅନୁଗମନ କରିଥିଲେ ।

ଭକ୍ତବଳରେ ଆତ୍ମହତ୍ୟା କରିବାକୁ ଯାଉଥିବା ଭକ୍ତକୁ ଗଭୀର ଗଙ୍ଗାନଦୀ ଜଳ ଅଣ୍ଠୁଏ ମାତ୍ର ହେବାରୁ, ଭକ୍ତ ଏପାରି ସେପାରି ହୋଇ ଆତ୍ମହତ୍ୟା କାର୍ଯ୍ୟରୁ ବିରତ ହୋଇଥିବା କଥା ଧର୍ମଗ୍ରନ୍ଥମାନଙ୍କରେ ଦେଖିବାକୁ ମିଳେ ।

ଭକ୍ତ ବଳରେ କ'ଣ ନ ହୋଇପାରେ ? ବାଳକ ବାଳିକାମାନଙ୍କ ଭକ୍ତିଭାବ ଖୁବ୍ ଗାଢ଼ । ତେଣୁ ଭଗବାନ ସେମାନଙ୍କୁ ସହଜରେ ଧରା ଦିଅନ୍ତି । ଧ୍ରୁବ ପିଲା ଥିବାରୁ ଭଗବାନ ତା ସକାଶେ ନାରଦଙ୍କ ଆଗରେ କାନ୍ଦିଥିଲେ ଓ ନାରଦଙ୍କୁ ଧ୍ରୁବଙ୍କ ନିକଟକୁ ପଠାଇଥିବା କଥା ପୁରାଣରେ ଦେଖିବାକୁ ମିଳେ ।

## ନବଧା ଭକ୍ତି କଅଣ ?

"ଶ୍ରବଣଂ କୀର୍ତ୍ତନଂ ବିଷ୍ଣୋଃ ସ୍ମରଣଂ ପାଦସେବନମ୍
ଅର୍ଚ୍ଚନଂ, ବନ୍ଦନଂ ଦାସ୍ୟଂ ସଖ୍ୟମାତ୍ମନିବେଦନମ୍"—(ଭାଗବତ)

ଭଗବାନଙ୍କ ପ୍ରତି ଯାହାର ଭକ୍ତି ଜନ୍ମିଥାଏ, ସେ ଭଗବାନଙ୍କ ଲୀଳା ଗୁଣ ମହିମାର କଥା କର୍ଣ୍ଣରେ ଶ୍ରବଣ କରିବାକୁ, ମୁଖରେ ତାଙ୍କ ଲୀଳା କଥା ଓ ତାଙ୍କ ଗୁଣାବଳୀ କୀର୍ତ୍ତନ କରିବାକୁ, ମନେ ମନେ ତାଙ୍କ ଗୁଣ ଗାରିମା ସ୍ମରଣ କରିବାକୁ, ଦେହଦ୍ୱାରା ତାଙ୍କର

ସେବା ପରିଚର୍ଯ୍ୟା, ଅର୍ଚ୍ଚନା କରିବାକୁ, ତାଙ୍କୁ ପ୍ରୀତିପୂର୍ବକ ବନ୍ଦନା କରିବାକୁ, ତାଙ୍କର ଆଦେଶ ଉପଦେଶ ମାନି ଆନୁଗତ୍ୟ ସ୍ୱୀକାର-ପୂର୍ବକ ଚଳିବାକୁ; ତାଙ୍କ ସାଥିରେ ଖେଳି ତାଙ୍କୁ ସମସ୍ତ ଦେବାକୁ ଓ ତାଙ୍କଠାରୁ ସମସ୍ତ ଗ୍ରହଣ କରିବାକୁ ଏବଂ ଯଥାସର୍ବସ୍ୱ ସମର୍ପଣ-ପୂର୍ବକ ଭଗବତ୍-ପ୍ରୀତି ସାଧନ କରିବାକୁ ଭଲ ପାଏ ।

ଉପର୍ଯ୍ୟୁକ୍ତ ନବଧା ଭକ୍ତିର ଗୋଟିଏ ଅଙ୍ଗ ପୂର୍ଣ୍ଣପ୍ରାଣରେ ଯାଜନଦ୍ୱାରା ମଧ୍ୟ ଭକ୍ତର ପରମ ମଙ୍ଗଳ ସାଧିତ ହୋଇପାରେ । ଶ୍ରୀମଦ୍ ଭାଗବତରେ ଅଛି "ମହାରାଜ ପରୀକ୍ଷିତ ଭାଗବତ କଥା ଶ୍ରବଣ କରି, ଶୁକଦେବ କୀର୍ତ୍ତନ କରି, ପ୍ରହ୍ଲାଦ ସ୍ମରଣ କରି, ଲକ୍ଷ୍ମୀ ପାଦସେବନ କରି, ପୃଥୁ ପୂଜା ଅର୍ଚ୍ଚନା କରି, ଅକ୍ରୂର ବନ୍ଦନା କରି, ହନୁମାନ ଦାସ୍ୟ ବା ଆନୁଗତ୍ୟ ସ୍ୱୀକାର କରି, ଅର୍ଜ୍ଜୁନ ସଖ୍ୟଭାବ ସ୍ଥାପନ କରି ଓ ବଳିରାଜା ଆତ୍ମ ସମର୍ପଣ କରି କୃଷ୍ଣ ପ୍ରାପ୍ତ ହୋଇଥିଲେ ।

ପରମ ଭାଗବତ ରାଜା ଅମ୍ବରୀଷ ଉକ୍ତ ନବଧା ଭକ୍ତି ପୂର୍ଣ୍ଣାଙ୍ଗ-ଭାବରେ ଯାଜନ କରିଥିଲେ, ଯାହାର ପ୍ରଭାବରେ କୋପୀ ଦୁର୍ବାସା ଋଷିଙ୍କୁ ମିନତି ସ୍ୱୀକାର କରିବାକୁ ପଡ଼ିଥିଲା ।

ଭକ୍ତି ପାଖରେ ଧନୀ ଦରିଦ୍ରର କିଛି ହେଲେ ପ୍ରଭେଦ ନାହିଁ । ପ୍ରଭୁ ଧନୀ ଘରକୁ ଆସନ୍ତି ଏବଂ ଦରିଦ୍ର ଘରକୁ ଆସନ୍ତି ନାହିଁ, ଏପରି କିଛି ନାହିଁ । ତାହା ହେଉଥିଲେ ତାଙ୍କୁ କେହି 'ଦୀନବନ୍ଧୁ' 'ପତିତପାବନ' ବୋଲି ଡାକନ୍ତେ ନାହିଁ । ଧନୀ ଲୋକ ଅପେକ୍ଷା ଦରିଦ୍ର ପକ୍ଷରେ ଭକ୍ତି ସାଧନ ସହଜ । ଧନୀ ନାନା ପ୍ରଲୋଭନ-ଦ୍ୱାରା ସର୍ବଦା ଛନ୍ଦି ହୋଇ ପଡ଼ିଥାଏ । ସେଥିରୁ ତାକୁ ଅଶାନ୍ତି ଘୋଟିଥାଏ । ମାତ୍ର ଦରିଦ୍ରଠାରେ ସେପରି ପ୍ରଲୋଭନ ପଦାର୍ଥ କିଛି ନ ଥାଏ । ସୁତରାଂ ଧର୍ମପଥରେ ଚଳିବାକୁ ଦରିଦ୍ରର ସେତେ

ବାଧା ବିପଦ ନାହିଁ । ମହାତ୍ମା ଯୀଶୁଖ୍ରୀଷ୍ଟ କହିଛନ୍ତି—"ଛୁଞ୍ଚିକଣା ବାଟେ ଓଟ ଗଳିଯିବା ବରଂ ସହଜ ହୋଇପାରେ, ମାତ୍ର ଧନୀ ବ୍ୟକ୍ତି କେବେ ସ୍ୱର୍ଗକୁ ଯିବା ସହଜ ନୁହେଁ ।'

ଆମ୍ଭମାନଙ୍କ ଶାସ୍ତ୍ରରେ ଗୋଟିଏ ସୁନ୍ଦର ଆଖ୍ୟାୟିକା ଅଛି:—କଳି ଯେତେବେଳେ ପରୀକ୍ଷିତଙ୍କ ରାଜ୍ୟରେ ପହଞ୍ଚିଲେ, ମହାରାଜ ପରୀକ୍ଷିତ ତାଙ୍କୁ କହିଲେ, 'ହେ ଅଧର୍ମ-ବନ୍ଧୁ, ତୁମେ ମୋ ରାଜ୍ୟ ଛାଡ଼ି ଚାଲିଯାଅ । ଏଠି ରହିପାରିବ ନାହିଁ' । କଳି ତାଙ୍କ କଥାରେ ଭୟ କରି କାକୁତି ମିନତି ହୋଇ କହିଲେ– "ଆପଣ ହେଉଛନ୍ତି ସମସ୍ତଙ୍କର ରଜା, ସମସ୍ତଙ୍କୁ ତ ରାଜ୍ୟରେ ସ୍ଥାନ ଦେଉଛନ୍ତି । ଆପଣଙ୍କ ଇଚ୍ଛା ଅନୁସାରେ ମୋପାଇଁ ଟିକିଏ ସ୍ଥାନ ଠିକଣା କରିଦିଅନ୍ତୁ ।" କଳିଙ୍କ ପ୍ରାଥନା ଶୁଣି ରାଜା ଯେଉଁ ଯେଉଁଠାରେ ପଶାଖେଳ, ମଦ୍ୟପାନ, ସ୍ତ୍ରୀସଙ୍ଗ ଓ ଜୀବହିଂସା ପ୍ରଭୃତି ଅଧର୍ମମାନ ଅନୁଷ୍ଠିତ ହୁଏ, ସେହି ସେହି ସ୍ଥାନସବୁ ତାଙ୍କପାଇଁ ନିର୍ଦ୍ଦିଷ୍ଟ କରିଦେଲେ । କଳି ଦେଖିଲେ, ଏସବୁ ସ୍ଥାନରେ ରହିବାକୁ ତାଙ୍କର ବଡ଼ ଅସୁବିଧା ହେବ । ତେଣୁ ଯେଉଁଠାରେ ସବୁ ପ୍ରକାର ଅଧର୍ମ ଏକାଠି ମିଳିଥାନ୍ତି, ସେହିପରି ଗୋଟିଏ ସ୍ଥାନପାଇଁ ରାଜାଙ୍କ ପାଖରେ ପୁଣି ପ୍ରାର୍ଥନା କଲେ । ଏହି ଦ୍ୱିତୀୟ ପ୍ରାର୍ଥନା ଶୁଣି ରାଜା ତାଙ୍କୁ ଏକ ସୁବର୍ଣ୍ଣ ପିଣ୍ଡ ଦାନକଲେ । ଏହା ଭିତରେ ଦ୍ୟୂତକ୍ରୀଡ଼ାଜନିତ ଅସତ୍ୟ, ସୁରାପାନଜନିତ ମତ୍ତତା, ସ୍ତ୍ରୀସଙ୍ଗରୂପୀ କାମ ଓ ଜୀବହିଂସାମୂଳକ ରଜୋଭାବ ସବୁ ରହିଛି । ଏହାଛଡ଼ା ସେଥିରେ ବୈରଭାବ ମଧ୍ୟ ଅଛି । ବାସ୍ତବିକ କଳି ଧନରେ ବାସ କରେ । ଧନ ସମସ୍ତଙ୍କର ସର୍ବନାଶ ଘଟାଏ । ଧନୀ ହୋଇ ଭକ୍ତିପରାୟଣ ହେବା ବ୍ୟକ୍ତି ଏ ପୃଥିବୀରେ ଅତି ବିରଳ । ଧନଗର୍ବୀ ବ୍ୟକ୍ତିଙ୍କପାଇଁ ସ୍ୱର୍ଗରେ ସ୍ଥାନ ନ ଥାଏ । ଧନୀ ସରଳ, ବିନ ମ୍ର

ଦୀନାତ୍ମା ହୋଇ ନ ପାରିଲେ ଭଗବାନଙ୍କୁ ଲାଭ କରିପାରେ ନାହିଁ । ଯେ କାତର ହୃଦୟରେ ତାଙ୍କୁ ଡାକେ, ସେ କେବଳ ତାଙ୍କୁ ପାଏ । ଯେଉଁମାନେ ଦୀନ, ଭିଖାରୀ ବେଶରେ 'କାହିଁ ଅଛ ଅହେ ଦୀନବନ୍ଧୁ' ବୋଲି ଡାକନ୍ତି, ଦୀନବନ୍ଧୁ ତାଙ୍କର ପାଖରେ ଆସି ପହଞ୍ଚନ୍ତି । ବାହାରର ଯାଗଯଜ୍ଞ, ଶିକ୍ଷା ପରିଚାରେ ସେହି ଅମୃତପଦ ଲାଭ ଅସମ୍ଭବ ।

ଭଗବାନଙ୍କୁ ଧନ ଦେଇ କିଣିବ କିଏ ? ତାଙ୍କ ପାଖରେ ସୁଦାମାର ଖୁଦମୁଠିକ ଅତି ଅମୃତମୟ ସାମଗ୍ରୀ ଏବଂ ମହାରାଜାଧିରାଜଙ୍କର ନାନା ଅମୂଲ୍ୟ ଭୋଗରାଗ ଅତି ତୁଚ୍ଛ, ଅକିଞ୍ଚିତ୍କର ।

## କେଉଁ ଉପାୟରେ ଭକ୍ତିଲାଭ ହୁଏ

ଭଗବାନ ଭକ୍ତ ଉଦ୍ଧବଙ୍କୁ ଭକ୍ତିଲାଭ ସମ୍ବନ୍ଧରେ ଯେଉଁ ଉପଦେଶ ଦେଇଥିଲେ ତାହା ନିମ୍ନରେ ଦିଆଗଲା—

"ମୋର ଅମୃତମୟ କଥାରେ ଶ୍ରଦ୍ଧା, ସର୍ବଦା ମୋ ନାମ କୀର୍ତ୍ତନ, ମୋର ପୂଜାରେ ନିଷ୍ଠା, ସ୍ତୁତିଦ୍ୱାରା ମୋର ସ୍ତବ, ମୋର ପରିଚର୍ଯ୍ୟାରେ ଆଦର, ସର୍ବାଙ୍ଗଦ୍ୱାରା ମୋର ଅଭିନନ୍ଦନ, ମୋର ଭକ୍ତମାନଙ୍କର ବିଶେଷଭାବରେ ପୂଜା, ସର୍ବଭୂତରେ ମତେ ଉପଲବ୍ଧି କରିବା, ମୋପାଇଁ ଅଙ୍ଗଚେଷ୍ଟା, ବାକ୍ୟଦ୍ୱାରା ମୋ ଗୁଣକୀର୍ତ୍ତନ, ମୋଠାରେ ମନ ସମର୍ପଣ, ମୋ ଛଡ଼ା ଅନ୍ୟ ଅଭିଳାଷ ବର୍ଜନ, ମତେ ପାଇବାପାଇଁ ଅର୍ଥ, ଭୋଗ ଓ ସୁଖ ପରିତ୍ୟାଗ ଏବଂ ମୋପାଇଁ ଯଜ୍ଞ, ଦାନ, ହୋମ, ଜପ, ବ୍ରତ ଓ ତପସ୍ୟା—ହେ ଉଦ୍ଧବ ! ଏହିପରି ଯେଉଁମାନେ ମୋ ପାଖେ ଆତ୍ମନିବେଦନ କରନ୍ତି ସେମାନଙ୍କର ମୋଠାରେ ଭକ୍ତି ଜାତ ହୁଏ । ଏହିପରି ଲୋକଙ୍କର କି ଆଉ ଅଭାବ ରହିବ !

—ଭାଗବତ—

# କେଉଁ ଅପରାଧଗୁଡ଼ିକ ଭକ୍ତପଥରେ କଣ୍ଟକ

୧ । ବେଦକୁ ପୁସ୍ତକ ବୋଲି ମନେକରି, ତାହାର ଜଣେ କବି ଅଛନ୍ତି ବୋଲି ଭାବିବା,

୨ । ଗୀତା ଓ ଭାଗବତକୁ ଅନ୍ୟ ସାଧାରଣ ପୁସ୍ତକ ବୋଲି ଜ୍ଞାନ କରିବା,

୩ । ଭଗବତ୍ ବିଗ୍ରହ କିମ୍ବା ଛବିକୁ କାଠ, ଶିଳା, ଧାତୁ କାଗଜ କିମ୍ବା ମାଟିଜ୍ଞାନ କରିବା,

୪ । ଭଗବତ୍ ଉତ୍ସବ ଆଦରେ ସ୍ପର୍ଶ, ଅସ୍ପର୍ଶ ବିଷୟର କରି ଭେଦ ଜନ୍ମାଇବା,

୫ । ଭଗବତ୍ ବିଗ୍ରହ ଆଡ଼କୁ ପିଠି କରି ଆସନ ପକାଇ ବସିବା ଓ ତାଙ୍କ ସାମନାକୁ ପଦକ୍ଷେପ କରି ଗମନ କରିବା,

୬ । ଭଗବତ୍ ବିଗ୍ରହ ଆଡ଼କୁ ଗୋଡ଼ କିମ୍ବା ହାତ ବଢ଼େଇ ଅଳସ ଭାଙ୍ଗିବା,

୭ । ଭଗବତ୍ ବିଗ୍ରହ ସାମନାରେ ପାନଖାଇବା, ଶୟନ, ଭକ୍ଷଣ ଓ ମିଥ୍ୟା ଭାଷଣ, ଉଚ୍ଚସ୍ୱରରେ ପରସ୍ପର କଥାଭାଷା କରିବା, ଅଟ୍ଟହାସ କରିବା, ରାଗିଯିବା, ଅପ୍ରୀତିକର ଭାବଭଙ୍ଗୀ ଦେଖାଇବା, ପରନିନ୍ଦା, ପରସ୍ତୁତି କରିବା, ଗ୍ରାମ୍ୟ କଥାଭାଷା କରିବା, ଅନ୍ୟକୁ ନମସ୍କାର କରିବା,

୮ । ଭଗବତ୍ ବିଗ୍ରହ ସାମନାରେ ଅଧୋବାୟୁ ତ୍ୟାଗ କରିବା, କିମ୍ବା ହାଇ ମାରିବା ଓ ଦେବତା ନିନ୍ଦା କରିବା,

୯ । ଭଗବତ୍ ବିଗ୍ରହ ସାମନାରେ ହସ୍ତଦ୍ୱାରା ଜାନୁଦ୍ୱୟ ବନ୍ଧନପୂର୍ବକ ଉପବେଶନ କରିବା,

୧୦ । କମ୍ବଳ ଘୋଡ଼ହୋଇ ବିଗ୍ରହ ସେବା କରିବା କିମ୍ବା ନୀଳବସ୍ତ୍ର ପରିଧାନ କରି ଭଗବତ ବିଗ୍ରହ ନିକଟକୁ ଯିବା,

୧୧ । ହସ୍ତ, ମୁଖ, ପାଦ ନ ଧୋଇ ଭଗବତ୍ ଦର୍ଶନକୁ ଯିବା,

୧୨ । ମଳତ୍ୟାଗ କରି, କିମ୍ବା ସ୍ତ୍ରୀ-ସହବାସସମୟର ପରଧାନ ପିନ୍ଧି ଦେବାଳୟକୁ ଯିବା,

୧୩ । ବୈଷ୍ଣବମାନଙ୍କ ଜାତିବିଗ୍ଭର କରିବା କିମ୍ବା ଭକ୍ତଙ୍କ ଜାତିବିଗ୍ଭର କରି ବଡ଼ ସାନକରି ସମ୍ମାନ ଦେଖାଇବା,

୧୪ । ତୁଳସୀ ଗଛକୁ ସାଧାରଣ ଗଛପରି ବ୍ୟବହାର ଦେଖାଇବା,

୧୫ । ଗଙ୍ଗାନଦୀକୁ ସାଧାରଣ ନଦୀ ବୋଲି ମନେ କରିବା,

୧୬ । ପ୍ରସାଦକୁ ସାଧାରଣ ଖାଦ୍ୟ ସଙ୍ଗେ ତୁଳନା କରି ଦୋଷଗୁଣ ବିଗ୍ଭର କରିବା,

୧୭ । ଚରଣାମୃତକୁ ଜଳବୋଲି ମନେ କରିବା,

୧୮ । କୌଣସି ଲୋକଙ୍କୁ ତାଙ୍କ ଇଷ୍ଟ ନାମରେ ଶପଥ କରାଇବା,

୧୯ । କୌଣସି ଦେବତା କିମ୍ବା ଶାସ୍ତ୍ରକୁ ନିନ୍ଦା କରିବା,

୨୦ । କୌଣସି ଧାର୍ମିକବ୍ୟକ୍ତି କିମ୍ବା ଅପରିଚିତକୁ ଅସମ୍ମାନ ଦେଖାଇବା,

୨୧ । କୌଣସି ବ୍ୟକ୍ତିଙ୍କୁ ଜାଣିଶୁଣି ବିପଦ-ମୁଖକୁ ଠେଲିଦେବା,

୨୨ । ନିଜେ ନିଜକୁ ଭକ୍ତ ବୋଲି, ଧାର୍ମିକ ବୋଲି, ଜ୍ଞାନୀ କିମ୍ବା ପଣ୍ଡିତ ବୋଲି ପରିଚୟ ବା ଧାରଣା ଦେବା ।

———

# ଭକ୍ତିପଥରେ କଣ୍ଟକ

ଜାତି, ବିଦ୍ୟା, ମହତ୍ତ୍ୱ, ରୂପ ଓ ଗୌରବ ଏହି ପାଞ୍ଚିଟିର ଅହଂକାର ଭକ୍ତର କଣ୍ଟକସ୍ୱରୂପ ।

ଭକ୍ତର ଅମୃତମୟ ରାଜ୍ୟରେ ବର୍ଣ୍ଣଭେଦ ବା ଜାତିଭେଦ ପ୍ରଭୃତି ସଂକୀର୍ଣ୍ଣତା ସ୍ଥାନ ପାଏ ନାହିଁ । ଚଣ୍ଡାଳ ଯଦି ତା'ର ହୃଦୟଟିକୁ ପବିତ୍ରଭାବରେ ଭଗବାନଙ୍କଠାରେ ସମର୍ପଣ କରି ଏକାନ୍ତରେ ତାଙ୍କୁ ଡାକେ, ତାଙ୍କର ସାଧ ନାହିଁ ଯେ, ସେ ସ୍ଥିର ହୋଇ ରହିପାରିବେ । ଭାବଗ୍ରାହୀ ଭଗବାନଙ୍କ ନିକଟରେ ସବୁ ସମାନ, ସେ ଜାତିବିଚାର ଦେଖନ୍ତି ନାହିଁ । ଗୁହକ ଜାତିରେ ଶବର, ସେ ଅଚଳାଭକ୍ତିରେ ରାମଚନ୍ଦ୍ରଙ୍କୁ ସଖାଭାବରେ ସମ୍ବୋଧନ କରିଥିଲେ । ଶବରୀ ଚଣ୍ଡାଳ କନ୍ୟା ପଞ୍ଚବଟୀ ବନରେ ସାଇତି ରଖିଥିବା ଅଇଁଠା ଫଳଗୁଡ଼ିକ ରାମଚନ୍ଦ୍ର କେତେ ଆଦରରେ ଖାଇଥିଲେ ।

ବ୍ୟାଧର କି ଭଲ ଆଚରଣ ଥିଲା ?
ଧ୍ରୁବଙ୍କ ବୟସ କେତେ ହୋଇଥିଲା ?
ଗଜେନ୍ଦ୍ରର ବିଦ୍ୟା କ'ଣ ଥିଲା ?
କୁବ୍ଜାର ସୌନ୍ଦର୍ଯ୍ୟ କ'ଣ ଥିଲା ?
ସୁଦାମାର ଧନ କ'ଣ ଥିଲା ?
ବିଦୁରଙ୍କ ବଂଶମର୍ଯ୍ୟାଦା କ'ଣ ଥିଲା ?

ଏବଂ ଯାଦବପତି ଉଗ୍ରସେନଙ୍କର ପୌରୁଷ ବା କ'ଣ ଥିଲା ? ତଥାପି ମାଧବ ଏମାନଙ୍କ ପ୍ରତି ବିଶେଷ କୃପା ଦେଖାଇଛନ୍ତି । ଭକ୍ତିପ୍ରିୟ ମାଧବ ଭକ୍ତିରେ ହିଁ କେବଳ ସନ୍ତୁଷ୍ଟ । ଭକ୍ତି ଥିଲେ ସେ ଅନ୍ୟ କୌଣସି ଗୁଣର ଅପେକ୍ଷା ରଖନ୍ତି ନାହିଁ । ସରଳ

ବିଶ୍ୱାସରେ ଯେ ତାଙ୍କୁ ଭେଟିବ, ସେ ତାଙ୍କୁ ପାଏ । ତା' ଅଗରେ କଠୋର ସାଧନା ଯୋଗ ଉପାସନା ମଧ୍ୟ ପରାସ୍ତ ।

—ଭାଗବତ—

## ଈଶ୍ୱରବିମୁଖ ପ୍ରାଣୀ ସୁଖ ପାଇବାରେ ନାହିଁ

ବରଂ କମଠ (କଇଁଛ) ପିଠିରେ ଲୋମ ଜନ୍ମିପାରେ,
ବନ୍ଧ୍ୟାପୁତ୍ର ବରଂ କାହାକୁ ମାରିପାରେ
ଆକାଶରେ ବରଂ ବହୁବିଧ ଫୁଲ ଫୁଟିପାରେ
ବରଂ ମୃଗତୃଷ୍ଣାଜଳରେ ତୃଷ୍ଣା ମେଣ୍ଟିପାରେ
ବରଂ ଶଶକ ମସ୍ତକରେ ତୀକ୍ଷ୍ଣ ଶୃଙ୍ଗ ଜନ୍ମିପାରେ,
ଅନ୍ଧକାର ବରଂ ସୂର୍ଯ୍ୟଙ୍କୁ ନାଶ କରିପାରେ,
ବରଫ ଦେହରୁ ବରଂ ଅଗ୍ନି ଜନ୍ମିପାରେ,
ପାଣି ମନ୍ଥନ କରି ବରଂ ଘୃତ ବାହାର କରାଯାଇପାରେ,
ବାଲିରୁ ବରଂ ତେଲ ବାହାର କରାଯାଇପାରେ,

ଏସବୁ ଅସମ୍ଭବ ସମ୍ଭବ ହୋଇପାରେ, ମାତ୍ର ଈଶ୍ୱର-ବିମୁଖ ବା ପ୍ରତିକୂଳ ବା ହରିଭଜନ ବିନା ପ୍ରାଣୀ ସୁଖ, ଶାନ୍ତି ପାଇପାରେ ନାହିଁ କି ସଂସାରରୁ ତରିପାରେ ନାହିଁ । ଏହା ସ୍ଥିର ସିଦ୍ଧାନ୍ତ; ଯେ ହରିଭଜନ କରନ୍ତି, ସେ ନିଶ୍ଚୟ ଦୁସ୍ତର ଭବ-ସମୁଦ୍ର ତରି ଯାଆନ୍ତି ।

—ତୁଳସୀ ରାମାୟଣ—

ଯେ ହରି କଥା ନ ଶୁଣେ, ତାହାର କାନ ଦୁଇଟି ସର୍ପର ବିଳ ପରି ଅନିଷ୍ଟକାରକ ଅଟେ ।

ଯାହାର ଆଖି ଈଶ୍ୱର ଦର୍ଶନ ନ କଲା, ସେ ଆଖି ଦୁଇଟି ମୟୂରଚନ୍ଦ୍ରିକାପରି ନିଷ୍ଫଳ ।

ଯାହାର ଶିର ଭଗବାନଙ୍କ ଚରଣ ତଳେ ବା ପାଦପଦ୍ମରେ ନ ଲୋଟିଲା, ସେ ମୁଣ୍ଡଟି ଲାଉ ତୁମ୍ବାପରି ନିରର୍ଥକ ।

ଯାହାର ହୃଦୟରେ ହରି ଭକ୍ତି ନାହିଁ, ତାହାର ଦେହ ଶବ ସଙ୍ଗେ ସମାନ । ଯାହାର ଜିହ୍ୱା ରାମ ହରି ଗୁଣଗାନ ନ କରେ, ତାହାର ଜିହ୍ୱା ଭେକ (ବେଙ୍ଗ) ଜିହ୍ୱାପରି ତୁଚ୍ଛ । ହରିଚରିତ ଶୁଣି ଯାହାର ଆନନ୍ଦ ନ ଜନ୍ମେ, ତା' ଛାତି ବଜ୍ରପରି କଠୋର ଅଟେ ।

—ତୁଳସୀ ରାମାୟଣ—

ଯାଜ୍ଞବଲ୍‌କ୍ୟ କହିଲେ, ଶୁଣ ହେ ଭରଦ୍ୱାଜ ! ଯେ ରାମ ବା ଈଶ୍ୱରବିମୁଖ ହୁଏ, ମିତ୍ର ତା'ର ଶତ ଶତ୍ରୁର କାର୍ଯ୍ୟ କରେ । ତା' ପକ୍ଷରେ ଗଙ୍ଗାନଦୀ ଉତ୍ତପ୍ତ ବୈତରଣୀ ସମାନ ଦୁଃଖାବହ, ସମସ୍ତ ଜଗତ ତା'ପାଇଁ ଅଗ୍ନି ସମାନ ଜ୍ୱାଳାଦାୟକ ଓ ତା'ର କୌଣସି ସ୍ଥାନରେ ଶାନ୍ତି ନାହିଁ ।

—ତୁଳସୀ ରାମାୟଣ—

---

## ପୂଜା

ପୂଜା ଦୁଇ ପ୍ରକାର, ଯଥା—ବାହ୍ୟପୂଜା ଓ ମାନସ ପୂଜା; ପ୍ରତିମା ନିକଟରେ ଦୀପ, ଧୂପ, ପୁଷ୍ପ, ନୈବେଦ୍ୟଦ୍ୱାରା ଯେଉଁ ପୂଜା କରାଯାଏ, ତାହା ବାହ୍ୟ ପୂଜା, ଓ ମନଦ୍ୱାରା ଯେଉଁ ପୂଜା କରାଯାଏ ତାହା ମାନସିକ ପୂଜା ।

ଭଗବାନ ସର୍ବ ଭୂତରେ ଓ ଆତ୍ମାରେ ବିଦ୍ୟମାନ ଅଛନ୍ତି । ଏହା ଯେ ପର୍ଯ୍ୟନ୍ତ ଜାଣି ନାହଁ, ସେ ପର୍ଯ୍ୟନ୍ତ ନିଜ କର୍ତ୍ତବ୍ୟ-କର୍ମରେ ରତ ଥାଇ ଭଗବାନଙ୍କୁ ପ୍ରତିମାରେ ପୂଜାକରିବ । ଯେତେବେଳେ ଜାଣି ପାରିବ ଯେ ଭଗବାନ ସକଳ ଜୀବରେ, ଆତ୍ମାରେ (ସକଳ

ଘଣ୍ଟରେ ) ବିଦ୍ୟମାନ ଅଛନ୍ତି, ସେତେବେଳେ **ଅଳ୍ପ ପ୍ରତିମା** ପୂଜାର ଅବଶ୍ୟକ ପଡ଼ି ନ ପାରେ । ସେତେବେଳେ ମାନସପୂଜା ପ୍ରଶସ୍ତ ।

**ବ୍ୟାସଦେବଙ୍କ ମତ** :– "ପୂଜାଦିଷ୍ୱନୁରାଗ ଇତି ପାରାଶର୍ଯ୍ୟ" । ଭକ୍ତି ଅର୍ଜନ କରିବାକୁ ହେଲେ ଭଗବାନଙ୍କ ପୂଜା ଓ ଉପାସନାନିରତ ହେବାକୁ ହେବ । ଏହି ପୂଜା ପୁଣି ଦୁଇ ପ୍ରକାର, ଯଥା—ସ୍ଥୂଳ ବାହ୍ୟ ପୂଜା ଓ ମାନସ ପୂଜା ।

**ସ୍ଥୂଳ ବାହ୍ୟ ପୂଜା**:—ଭଗବାନଙ୍କ ବିଗ୍ରହ ସ୍ଥାପନା କରି ନବବିଧ ଉପାୟରେ ଉପାସନା କରିବାକୁ ହେବ । ନବବିଧ ଉପାୟ, ଯଥା—ଶ୍ରବଣ, ସ୍ମରଣ, ଅର୍ଚ୍ଚନ, ବନ୍ଦନ, କୀର୍ତ୍ତନ,ପାଦ-ସେବନ, ଦାସ୍ୟ, ସଖ୍ୟ ଓ ଆତ୍ମନିବେଦନ । ଏହି ନବବିଧ ଉପାୟ ମଧ୍ୟରୁ ଗୋଟିଏ ଉପାୟ ଯଜନ କରିବାଦ୍ୱାରା ବି ମନୋରଥ ସିଦ୍ଧ ହୋଇପାରେ । ପୂଜା ପଦ୍ଧତି ବହୁପ୍ରକାର ଥିଲେ ସୁଦ୍ଧା ତା' ମଧ୍ୟରୁ ଷୋଡ଼ଶୋପଚାର ଓ ପଞ୍ଚୋପଚାର ପ୍ରଧାନଭାବରେ ପ୍ରଚଳିତ । ଦେବାଳୟମାନଙ୍କରେ ଓ ନୈମିତ୍ତିକ କାର୍ଯ୍ୟୋପଲକ୍ଷେ ଷୋଡ଼ଶୋପଚାରରେ ପୂଜା ହୁଏ; କିନ୍ତୁ ନିତ୍ୟ ପୂଜା ସକାଶେ ପଞ୍ଚୋପଚାର ହେଉଛି ପ୍ରଚଳିତ ପ୍ରଥା । ପଞ୍ଚୋପଚାର, ଯଥା—ଗନ୍ଧ, ପୁଷ୍ପ, ଧୂପ, ଦୀପ ଓ ନୈବେଦ୍ୟ । କେହି କେହି ଏଥି ସହ ଆରତି ମଧ୍ୟ କରନ୍ତି । ଆରତିର ଭାବ ଅନୁଯାୟୀ ପ୍ରକାର ଭେଦ ଅଛି । ନିମ୍ନରେ ଦାସ୍ୟଭାବର ଉପାୟ ବା ପ୍ରଥା ଦିଆଗଲା ।

ଆରତିକୁ କିଛି ସମୟ ସାମନାରେ ସ୍ଥିରଭାବରେ ରଖି ପ୍ରଥମେ ବିଗ୍ରହଙ୍କ ପାଦ ପାଖରେ ଚାରିଥର, ନାଭି ପାଖରେ ଦୁଇ ଥର, ମୁଖମଣ୍ଡଳରେ ଥରେ (ଶଙ୍କରାଚାର୍ଯ୍ୟଙ୍କ ମତରେ ସାଢ଼େ ତିନି ଥର) ଓ ସର୍ବାଙ୍ଗ ଶରୀରରେ ସାତଥର କରିବାକୁ ହୁଏ । ଆରତିର

ଗତ ସର୍ପାକୃତି ହେବା ଦରକାର ଓ ସାଧକ ମଧ୍ୟ ନିଜ ଅବୟବକୁ ଆରତିର ତାଳେ ତାଳେ ତୁଳନା କରିବା ଦରକାର । ଆରତିକୁ ପଦାକୁ ଦେଖାଇ କିଛିଥର ଓ ନିଜ ଶରୀରକୁ ଦେଖାଇ କିଛିଥର କରିବାକୁ ହୁଏ । ବାମ ହାତରେ ଘଣ୍ଟାଧ୍ୱନି କରିବାକୁ ହେବ । ଘଣ୍ଟାଧ୍ୱନି ସାତଥର କରାଯାଏ । "ଅର୍ଦ୍ଧ୍ୟେ ଧୂପେ ଦୀପେ ଚୈବ ନୈବେଦ୍ୟ ଶଂଖଶୋଧନେ, ସ୍ନାନେ ନୀରାଜନେ ଚୈବ, ସପ୍ତଘଣ୍ଟା ପ୍ରକୀର୍ତ୍ତିତା" ।

ବିଗ୍ରହ ପୂଜା କରୁ କରୁ ତନ୍ମୟତା ଆସିଗଲେ, ଖାଲି ଏହି ପୂଜାଦ୍ୱାରା ବି ଭକ୍ତି ଜାତ ହୁଏ । ତନ୍ମୟତା ନ ଆସିଲେ, ଶରୀର ରୋମାଞ୍ଚ ନ ହେଲେ, ଶରୀରରେ କମ୍ପନ ଜାତ ନ ହେଲେ ବିଶେଷ ଉନ୍ନତି ଲାଭ କରି ହୁଏନାହିଁ । ପୂଜା କରିବାଦ୍ୱାରା ଯଦି ଭାବର ଉଦୟ ନ ହେଲା ତେବେ ପୂଜକ ମଧ୍ୟରେ ତ୍ରୁଟି ଲୁକ୍କାୟିତ ଭାବରେ ଅଛି ବୋଲି ଧରିନେବାକୁ ହେବ । ଏହି ତ୍ରୁଟିରୁ ସମୟରେ ଧର୍ମଧ୍ୱଜିତା ଭାବ ଉଦିତ ହୁଏ । ସାଧକ ତାହା ଜାଣି-ପାରେ ନାହିଁ । ତେଣୁ ନାନାବିଧ ଉପାୟରେ ସେବା ପୂଜାକଲେ ଆତ୍ମସମର୍ପଣ କରିବାଦ୍ୱାରା, ଧର୍ମଧ୍ୱଜିତାରୁ ରକ୍ଷାପାଇ ସାଧକ ଉନ୍ନତି ଲାଭ କରେ । ପୂଜା ଆରମ୍ଭ କରିବା ପୂର୍ବରୁ ଆଚମନ, ଆସନଶୁଦ୍ଧି, ଭୂତଶୁଦ୍ଧି, ନ୍ୟାସ, ମାତୃକା ଇତ୍ୟାଦି କରିବାର ବିଧି ଶାସ୍ତ୍ର ସମ୍ମତ ।

ଅବ୍ରାହ୍ମଣକୁ ଏ ସମସ୍ତ କରିବାକୁ ହୁଏ ନାହିଁ ଓ ଅବ୍ରାହ୍ମଣ-ମାନେ ଦେବତା ପୂଜା କରିବାର ଅଧିକାରୀ ନୁହଁନ୍ତି; କିନ୍ତୁ ବ୍ରାହ୍ମଣକୁଳ ଜାତ ବ୍ୟକ୍ତି ଏ ସମସ୍ତ ନ କରି ଦେବତା ପୂଜାକଲେ ପ୍ରତ୍ୟବାୟରେ ଭାଗୀ ହୁଅନ୍ତି । ବ୍ରାହ୍ମଣେତର ବ୍ୟକ୍ତିମାନେ କେବଳ ଇଷ୍ଟ କିମ୍ବା ଗୁରୁ ବିଗ୍ରହର ସେବାଅର୍ଚ୍ଚନା କରିବା ପ୍ରଶସ୍ତ

ସାଧକ ନିଜ ପିତାଙ୍କୁ, ଭ୍ରାତାଙ୍କୁ, ପୁତ୍ରକୁ ସେବା କଲାପରି କିମ୍ବା ସ୍ତ୍ରୀ ସ୍ୱାମୀକୁ ସେବା କଲାପରି ନିଜ ଇଷ୍ଟଙ୍କର ସେବା କଲେ ପୂଜାର ଫଳ ମଧ୍ୟ ଲାଭ କରି ପାରିବେ । ପୂଜା କରିବା ପୂର୍ବରୁ ଜଳକୁ ସଂସ୍କାର କରିବାକୁ ପଡ଼େ ଓ ତୁଳସୀକୁ ଶୁଦ୍ଧସ୍ନାନ କରାଇବାକୁ ପଡ଼େ । ନଚେତ୍ ପ୍ରତ୍ୟବାୟ ଘଟେ । କଥା ଅଛି ଜଳର ଛୁତକିଆ, ବ୍ରାହ୍ମଣର ମୃତକିଆ, ତୁଳସୀ ରଜୋବତୀ, ଦେବତା କିପରି ଏଥିରେ ପୂଜା ପାଆନ୍ତି । ବ୍ରାହ୍ମଣମାନେ ଅଚେତନ ବା ନିଦ୍ରିତ ହୋଇଗଲା ମାତ୍ରେ ସେମାନଙ୍କୁ ମୃତାଶୌଚ ଦୋଷ ଲାଗେ । ସ୍ନାନ କରି ଗାୟତ୍ରୀ ଜପକଲେ ଏ ମୃତାଶୌଚ ଦୋଷ ଯାଏ; ନଚେତ୍ ଏ ଦୋଷ ଅନ୍ୟ କେଉଁଥିରେ ଛାଡ଼େ ନାହିଁ । ଏ ଦୋଷ ନ ଛଡ଼ାଇ ବ୍ରାହ୍ମଣ ଯାହା କିଛି ପୂଜା ଇତ୍ୟାଦି କରନ୍ତୁ ସମସ୍ତ ବୃଥା ହୁଏ । ତୁଳସୀକୁ ଧୋଇଲା ପରେ ତାହା ଶୁଦ୍ଧ ହୁଏ ।

ଯେଉଁମାନେ ପିତୁଳା ପୂଜାକୁ ଘୃଣା କରନ୍ତି, ଏଣେ ଭଗବାନ୍ ସର୍ବବ୍ୟାପୀ ଓ ସର୍ବଶକ୍ତିମାନ୍ ବୋଲି କହନ୍ତି, ସେମାନେ ପୁଣି ଆରାଧନା କରିବାକୁ ଗୋଟିଏ ନିର୍ଦ୍ଦିଷ୍ଟ ସ୍ଥାନକୁ କାହିଁକି ଯାଆନ୍ତି ? ନିର୍ଦ୍ଦିଷ୍ଟ ସ୍ଥାନକୁ କାହିଁକି ଲକ୍ଷ୍ୟ କରନ୍ତି ? ସେହି ନିର୍ଦ୍ଦିଷ୍ଟ ସ୍ଥାନକୁ ଅତି ପବିତ୍ର ବୋଲି କାହିଁକି ମନେ କରନ୍ତି ? ସେମାନଙ୍କ ପକ୍ଷରେ ଗୋଟାଏ ନିର୍ଦ୍ଦିଷ୍ଟ ବୋଲି କିଛି ନ ଥାନ୍ତା । ସେମାନେ ତାହା କରିବାଦ୍ୱାରା ପ୍ରକାରାନ୍ତରେ ସୂକ୍ଷ୍ମ ପିତୁଳା ଉପାସନା କରୁ ନାହାନ୍ତି କି ? ମାନବର ଯେପରି ସ୍ଥୂଳ ସୂକ୍ଷ୍ମ ଶରୀର ଅଛି ଦେବତା-ମାନଙ୍କର ମଧ୍ୟ ସେହିପରି ସ୍ଥୂଳ ସୂକ୍ଷ୍ମ ଶରୀର ଅଛି ବୋଲି ଶାସ୍ତ୍ରରେ ବର୍ଣ୍ଣିତ ହୋଇଛି । ତେଣୁ ଯେ କୌଣସି ଧର୍ମର ଆସ୍ତିକ ମାନେ ହିଁ ପିତୁଳା-ପୂଜକ ।

## ଭଗବତ୍ ପୂଜାର ବିଭିନ୍ନ ସ୍ଥାନର ବର୍ଣ୍ଣନା

ମୋତେ ପୂଜିବ ଯେତେ ସ୍ଥାନେ, ଉଦ୍ଧବ ଶୁଣ ସାବଧାନେ ।
ଗୋରୁ, ବ୍ରାହ୍ମଣ, ସୂର୍ଯ୍ୟ, ରବି, ଗଗନ, ପବନ, ପୃଥିବୀ ।
ଜଳ, ବୈଷ୍ଣବ, ହୁତାଶନେ, ବିଷ୍ଣୁ ପୂଜିବ ଏତେ ସ୍ଥାନେ ।
ଯାହାକୁ ଯେମନ୍ତେ ପୂଜିବ, କହିବା ଶୁଣ ହେ ଉଦ୍ଧବ ।
ଶୀତଳ ଜଳ ତୃଣଦାନେ, ଗୋରୁଙ୍କୁ ପୂଜିବ ଗୋ-ସ୍ଥାନେ ।
ଅତିଥିମତେ ନାନା ଦ୍ରବ୍ୟେ, ବିପ୍ର ପୂଜିବ ବିଷ୍ଣୁଭାବେ ।
ସୂର୍ଯ୍ୟ ପୂଜିବ ମନ୍ତ୍ରତନ୍ତ୍ରେ, ସଂସ୍କାର ଦ୍ରବ୍ୟ ବେଦମନ୍ତ୍ରେ ।
ପବିତ୍ର ଦ୍ରବ୍ୟ ପୁଷ୍ପ ଅର୍ଘ୍ୟେ, ରବି ପୂଜିବ ବିଷ୍ଣୁଗର୍ଭେ ।
ଆକାଶ ବର୍ଣ୍ଣ ହୃଦେ ଧରି, ଧ୍ୟାନେ ପୂଜିବ ନରହରି ।
ପବନ ଗନ୍ଧ ଆମୋଦନେ, ପୂଜିବ ତତ୍ତ୍ୱ ସମାଧାନେ ।
ଅଭିଗମନ ଅନୁମାନେ, ଅନ୍ନଭୋଜନ ଜଳପାନେ ।
ଜଳେ ପୂଜିବ ମୋତେ ଭାବେ, ବିବିଧ ଜଳମୟ ଦ୍ରବ୍ୟେ ।
ଆରମ୍ଭ ସଂସ୍କାର ଅନଳେ, ଘୃତ ଇନ୍ଧନ ଚରୁ-ତିଳେ ।
ଅଗ୍ନି ପୂଜିବ ମୋର ଧ୍ୟାନେ, ନିର୍ମଳ ନିଷ୍ଠ ନିତ୍ୟ ଭୁବନେ ।
ସକଳ ଭୂତେ ମୁଁ ବସଇ, ଅନ୍ତରେ ଅନ୍ତର୍ଯ୍ୟାମୀ ହୋଇ ।
ଏଣୁ ଅନନ୍ତରୂପେ ମୋତେ, ଧ୍ୟାନେ ପୂଜିବ ସର୍ବଭୂତେ ।
ଆତ୍ମାକୁ ଆତ୍ମାଭାବେ ଧ୍ୟାଇ, ପୂଜିବ ନାନା ଭୋଗ ଦେଇ ।
ଏ ବିଧିମତେ ନାନା ଭାବେ, ମୋତେ ପୂଜିବ ପ୍ରିୟ ଭାବେ ।

## ସ୍ୱାମୀ ବିବେକାନନ୍ଦ କହନ୍ତି

ଦରିଦ୍ର-ନାରାୟଣ ପୂଜା ସର୍ବାପେକ୍ଷା ଶ୍ରେଷ୍ଠପୂଜା । ବାସ୍ତବରେ ଯଦି କୌଣସି ପୂଜା କରିବାକୁ ହୁଏ ତା'ହେଲେ ତାହାର ଅବସ୍ଥା ଅନୁଯାୟୀ, ଜଣେ, ଅଥବା ଛଅଜଣ ବା ବାରଜଣ ଦରିଦ୍ର

ଲୋକଙ୍କୁ ପ୍ରତିଦିନ ନିଜ ଗୃହକୁ ଆଣି ନାରାୟଣଜ୍ଞାନରେ ସେମାନଙ୍କୁ ସେବା କଲେ ଭଲହୁଅନ୍ତା । ଏହି ପ୍ରକାର ନାରାୟଣ ପୂଜାହିଁ ସର୍ବା-ପେକ୍ଷା ଶ୍ରେଷ୍ଠ ପୂଜା ଏବଂ ଭାରତବାସୀଙ୍କ ପକ୍ଷରେ ଏହା ସର୍ବାପେକ୍ଷା ଯୁଗୋପଯୋଗୀ । କେତୋଟି ଦରିଦ୍ର, ଅନ୍ଧ, କ୍ଷୁଧାର୍ତ୍ତ ନାରାୟଣଙ୍କୁ ପ୍ରତିଦିନ ପ୍ରତ୍ୟେକ ଗୃହରେ ଆଣି ପ୍ରତିମାରେ ଯେପରି ପୂଜା ହୁଏ ସେହିପରି ଆସନ, ବସନଦ୍ୱାରା ସେମାନଙ୍କର ପୂଜା କରିବା ଉଚିତ । ପୁଣି ତହିଁ ଆରଦିନ ସେହିପରି କେତେକ ଲୋକଙ୍କୁ ଆଣି ପୂଜା କରିବା ଆବଶ୍ୟକ । —ସ୍ୱାମୀ ବିବେକାନନ୍ଦ—

ଶ୍ରୀରାମକୃଷ୍ଣଦେବ କହିଅଛନ୍ତି, ଲୋକଙ୍କୁ ଖୁଆଇବା ଏକ ପ୍ରକାର ଈଶ୍ୱରଙ୍କ ପୂଜା ବା ସେବା କରିବା ସଙ୍ଗେ ସମାନ । ସବୁ ଜୀବ ମଧ୍ୟରେ ଈଶ୍ୱର ଅଗ୍ନି ରୂପେ ରହିଛନ୍ତି । ଜୀବକୁ ଭୋଜନ କରାଇବା ଯାହା ଈଶ୍ୱରଙ୍କୁ ଆହୂତି ଦେବା ତାହା; କିନ୍ତୁ ଅସତ୍, ଚୋର, ବଦମାସ୍ ଲୋକଙ୍କୁ ଖୁଆଇବା ଉଚିତ ନୁହେଁ । ଯେଉଁ ଲୋକମାନେ ଶଠତା ଓ ବ୍ୟଭିଚାର ଆଦି ମହାପାତକ କରିଅଛନ୍ତି ଓ ଘୋର ବିଷୟାସକ୍ତ ଲୋକମାନେ ଯେଉଁଠାରେ ବସି ଖାନ୍ତି, ସେ ସ୍ଥାନର ସାତହାତ ମାଟି ଅପବିତ୍ର । —ଶ୍ରୀରାମକୃଷ୍ଣାମୃତ—

## ପୂଜାହୀନ ଗୃହ

ଯାହାର ଗୃହରେ ଶ୍ରୀହରିଙ୍କ ପୂଜା ନାହିଁ
ତାହାର ଗୃହ ଶ୍ମଶାନ ସମାନ ଅଟଇ ।
ସେ ଗୃହେ କେବେ ଭକ୍ତ ପ୍ରବେଶିବେ ନାହିଁ,
ଅମଙ୍ଗଳ ବିନେ ଶୁଭ ନ ଘଟଇ ତହିଁ ।
ଶତେକ କାର୍ଯ୍ୟ ଥିଲେ ହେଁ ତାହା ଛାଡ଼ି କରି
ପୁଷ୍ପେ ପତ୍ରେ ଜଳେ ହେଉ ପୂଜିବ ଶ୍ରୀହରି ।

ଅବଶ୍ୟ ପରମ ଗତି ହୋଇବ ପ୍ରାପତ
ସକଳ ପାତକରାଶି ହେବ ଭସ୍ମୀଭୂତ ।
ମାତାପରି ଯେହୁ ପ୍ରତିପାଳନ କରନ୍ତି
ଯେହୁ ସୃଷ୍ଟିକରି ଶେଷେ ପୁଣି ସଂହାରନ୍ତି ।
ଏମନ୍ତ ପ୍ରଭୁଙ୍କୁ ଯେ ଅବା ଅର୍ଚ୍ଚନା ନ କରେ
ବ୍ରହ୍ମଘାତକ ବୋଲିଛି ଜାଣିବ ତାହାରେ ।
ଯାହାଙ୍କ ଚରଣ ଜଳ ଧରି ନିଜ ଶିରେ
ଶିବ ନୃତ୍ୟ କରୁଛନ୍ତି ସଦା ଆନନ୍ଦରେ ।
ଯାହାଙ୍କ ନାଭି କମଳୁ ବ୍ରହ୍ମାଙ୍କ ଜନମ
ଯାହାଙ୍କ ଇଚ୍ଛାଶକ୍ତିରେ ବ୍ରହ୍ମାଣ୍ଡ ସୃଜନ ।
ଯଦି ସେ ପରମପଦ ପାଇବାକୁ ଇଚ୍ଛ
ତେବେ ତାଙ୍କୁ ପୂଜ ସଦା ମନ କରି ସ୍ୱଚ୍ଛ ।
ଅନିତ୍ୟ ଅଟଇ ଏହୁ ଅସାର ସଂସାର
ଶ୍ରୀହରିଙ୍କ ଆରାଧନା ଏକମାତ୍ର ସାର ।
ବିଷ୍ଣୁ ଆରାଧନା ବିନା ମାନବ ଜୀବର ।
ଶ୍ରେଷ୍ଠ ମଙ୍ଗଳ କରମ ନାହିଁଛି ଆବର ।
ଏଣୁ ପାପ ଅନ୍ଧକାର ଆଚ୍ଛନ୍ନ କଳିରେ
ସର୍ବଦା ବିଷ୍ଣୁ ଅର୍ଚ୍ଚନା କରିବେ ସେ ନରେ ।
ତେବେ ଘୋର କଳିକାଳେ ପାଇବେ ନିସ୍ତାର
ବିଷ୍ଣୁ ଅର୍ଚ୍ଚିତ ବିହୀନେ ନାହିଁ ପ୍ରତିକାର ।

—ବୃହତ୍ ବ୍ରହ୍ମପୁରାଣ—

## ବିଷ୍ଣୁ ପୂଜା ବିଧି

ବିଷ୍ଣୁ ପୂଜା ବିଧି ବିଧାନ ଯେ ଶୁଣ ଏବେ
ଯେଉଁ ମାସେ ଯେଉଁ ପୁଷ୍ପେ ପୂଜିବ ସମ୍ଭବେ ।
ଚଇତ୍ରେ ଯେ ପୂଜେ ହରି ପଲାଶ ଫୁଲରେ
ଚିତ୍ରଗୁପ୍ତ ନ ଲେଖନ୍ତି ତା'ନାମ ପାଞ୍ଜିରେ ।
ଚଇତ୍ର ମାସରେ ଯେଉଁ ଭକ୍ତ ଭକ୍ତିଭାବେ
ସ୍ନାନ କରାଇ ମଧୁରେ ପ୍ରଭୁ ବାସୁଦେବେ ।
ପିଷ୍ଟକେ ମିଶାଇ ମଧୁ ବିଷ୍ଣୁଙ୍କୁ ଯେ ଦେଇ
ପାଞ୍ଜିରୁ ତା'ନାମ ବେଗେ କରଣ ପୋଛଇ ।
ଚୈତ୍ରେ ମଲ୍ଲୀ ବୈଶାଖେ କୁସୁମ ପାଟଳ
ଜ୍ୟେଷ୍ଠରେ ମନ୍ଦାର ମାଳା ଆବର କମଳ ।
ବୈଶାଖେ ହରିଙ୍କ ଗାତ୍ରେ ଲେପିଲେ ଚନ୍ଦନ
ଧନ ଜନ ଗୋପ ଲକ୍ଷ୍ମୀ ହୋଇଥାଏ ପୂର୍ଣ୍ଣ ।
ଆଷାଢ଼ରେ ଜବା ଫୁଲ ପଦ୍ମ ସହିତରେ
ମାଳତୀ ପୁଷ୍ପେ ପୂଜିବ ଶ୍ରାବଣ ମାସରେ ।
କାର୍ତ୍ତିକ ମାସରେ ଯେହୁ ତୁଳସୀ ମଞ୍ଜରୀ
ବିଷ୍ଣୁଙ୍କୁ ଅର୍ପଣ କରେ ଅନ୍ତ ଯନ୍ତ୍ର କରି ।
କାର୍ତ୍ତିକରେ ହରିଙ୍କୁ ଯେ ଘୃତ ଦୀପ ଦେବ
ମହାଧନୀ ଚକ୍ଷୁଷ୍ମାନ ଦୀପ୍ତିମନ୍ତ ହେବ ।
ଏକାଦଶୀ ଦିନ ପଞ୍ଚାମୃତ ଧେନୁ କରେ
ସ୍ନାହାନ କରାଏ ଯେହୁ ବିଷ୍ଣୁଙ୍କୁ ତହିଁରେ ।
ଏକାଦଶୀ ଦୁଆଦଶୀ କିବା ପୂର୍ଣ୍ଣିମାରେ
ଯେ ସ୍ନାନ କରାଏ ନାରିକେଳ ଉଦକରେ ।

ଦ୍ୱାଦଶୀ ତିଥିରେ ଅବା ପୂର୍ଣ୍ଣିମା ତିଥିରେ
ବିଷ୍ଣୁ ପ୍ରତିମାକୁ ସ୍ନାନ କରାଏ ଦୁଗ୍ଧରେ ।
ଯେ ପୂଜେ ବିଷ୍ଣୁଙ୍କୁ ପକ୍ୱ ତାଳମ୍ବ ଦେଇଣ
ଯେତେ ବୀଜ ତେତେ ଯୁଗ ବସେ ସେ ସ୍ୱର୍ଗେଣ ।
ଶର୍କରା ଘୃତ ପିଷ୍ଟକ ହରିଙ୍କି ଯେ ଦେଇ
କୋଟି କୋଟି ଅଶ୍ୱମେଧ ଫଳ ସେ ଲଭଇ ।
ମାଧବୀ ବକୁଳ ତିଳଫୁଲ ଆଦି କରି
ଧାତ୍ରୀ ଜମ୍ବୁ ବିଲ୍ୱଦଳେ ପୂଜଇ ଯେ ହରି ।
ଅଖଣ୍ଡିତ ଅର୍କଦଳ ପୁଷ୍ପ ଯେ କସ୍ତୁରୀ
ଯେ ଦେଇ ପୂଜଇ ବସେ ବଇକୁଣ୍ଠପୁରୀ ।
ଭକ୍ତିଭାବେ ବିଷ୍ଣୁ ପୂଜା ବସେ ବଇକୁଣ୍ଠେ
ଯମର ତରାସ ତା'ର ନ ଲାଗଇ ତଟେ ।
ସୁପ୍ରସନ୍ନେ ଆଲିଙ୍ଗନ କରନ୍ତି ଶ୍ରୀହରି
ଜନ୍ମ ମରଣ ନ ଲଭେ ସେହୁ ଭବ-ବାରି ।

## ଶିବ ପୂଜା ବିଧି

ଶିବଙ୍କର ପ୍ରିୟ ପୁଷ୍ପ କେ ଅଟେ ସଂସାରେ
କି ଫଳ ମିଳଇ ସେହି ପୁଷ୍ପେ ପୂଜା କଲେ ?
ତାହା ଶୁଣି କହିଲେ ଯେ ସନତ୍କୁମାର
ଯାହା ପୁଚ୍ଛା କଲ ଶୁଣ ତାହାର ଉତ୍ତର ।
ଗସ୍ତ୍ୟ ଫୁଲ ଅଟଇ ପ୍ରିୟ ଶିବଙ୍କର
ସେ ଫୁଲେ ପୂଜିଲେ ମିଳେ କୋଟି ଜନ୍ମ ଫଳ ।
ଥରେ ମାଘ ଗସ୍ତ୍ୟସରେ ଯେହୁ ପୂଜା କରେ
ତା'ର ସମ ପୁଣ୍ୟବନ୍ତ ନାହିଁ ଏ ମହୀରେ ।

ଦୁଦୁରା ଅଟଇ ପୁଣି ତାଙ୍କ ପ୍ରିୟ ଅତି
ଯେ ପୂଜଇ ସେହି ଫୁଲେ ନାଶେ ତା' ଦୁଷ୍କୃତି ।
ସକଳ ପାତକ ତା'ର ହୁଅଇ ଦହନ
ଈଶ୍ୱର କରନ୍ତି ତା'ର କାମନା ପୂରଣ ।
ବିଲ୍ୱପତ୍ର ଅଟେ ପୁଣି ତାଙ୍କ ଶଓହର
ଯେହୁ ପୂଜେ ନିତି ପ୍ରତି ଦେଇ ବିଲ୍ୱଦଳ ।
ସଂସାରେ ପ୍ରସିଦ୍ଧି ଲଭେ ଧନ ମାନେ ଅତି
ଅନ୍ତିମେ ତା' ଶିବଲୋକେ ହୁଅଇ ବସତି ।
କୋଟି ଗାଭୀ ଶହ ସ୍ୱର୍ଣ୍ଣ ଦ୍ୱିଜେ କଲେ ଦାନ
ଯେଉଁ ଫଳ ପାଇଥାନ୍ତି ଭବେ ଦାତାଗଣ ।
ଶ୍ୱେତ କରବୀର ପୁଷ୍ପେ ପୂଜିଲେ ଶଙ୍କର ·
ଅବହେଳେ ମିଳିଥାଏ ସେହି ସବୁ ଫଳ ।
ରକ୍ତ କରବୀରେ ଯେହୁ ଶିବଙ୍କୁ ପୂଜଇ
ତହୁଁ ଦୁଇଗୁଣ ପୂଣ୍ୟ ସେ ଜନ ଲଭଇ ।
ଶିରୀଷ ଫୁଲେ ପୂଜିଲେ ଭୋଳା ମହେଶ୍ୱର
ବହୁ ପୁଣ୍ୟ ପାଏ ସେହି ପୂଣ୍ୟବନ୍ତ ନର ।
ଗୟାତୀର୍ଥେ ପିଣ୍ଡ ଦେଲେ ହୁଏ ଯା ପ୍ରାପତ
ମୁରୁକୁନ୍ଦ ଫୁଲେ ଶିବ ସେ ପୁଣ୍ୟ ଦିଅନ୍ତି ।
ଚାନ୍ଦ୍ରାୟଣ ବ୍ରତ କଲେ ମିଳେ ଯେଉଁ ଫଳ
ଟଗର ପୁଷ୍ପରେ ପ୍ରାପ୍ତ ହୁଏ ତାହା ନର ।
ଶିବ ଅବା ବିଷ୍ଣୁଙ୍କୁ ଯେ ଭକ୍ତିସହକାରେ
ଘୃତଯୁକ୍ତ ଗୁଗ୍‌ଗୁଳର ଧୂପଦାନ କରେ ।
ତାର ଯେତେ ପାପଥାଏ ଶତ ଜନ୍ମାର୍ଜିତ
ସେହିକ୍ଷଣି ଶରୀରରୁ ହୁଏ ଦୂରୀଭୂତ ।

ସୋମବାର ଯୁକ୍ତ କୃଷ୍ଣ ଚତୁର୍ଦ୍ଦଶୀ ଦିନ
ଦୁଗ୍ଧରେ କରାଏ ଶଙ୍କରଙ୍କୁ ଯେ ସ୍ନାହାନ ।
ତା' ଅଙ୍ଗରୁ ଦୂର ହୁଏ ସକଳ ପାତକ
ଶିବଙ୍କ ସାଯୁଜ୍ୟ ଲଭ କରଇ ସେ ଲୋକ ।
ସୋମବାର ଯୁକ୍ତ ଶୁକ୍ଳ ଅଷ୍ଟମୀ ତିଥିରେ
ନାରିକେଳ ଜଳେ ଶିବଙ୍କୁ ଯେ ସ୍ନାନକରେ ।
କୃଷ୍ଣ ଚତୁର୍ଦ୍ଦଶୀ ଅଷ୍ଟମୀରେ ଯେଉଁ ଜନ
ଶିବଙ୍କୁ କରାଏ ମଧୁ ଘୃତ ଯୋଗେ ସ୍ନାନ ।
ଶିବଙ୍କ ସାଯୁଜ୍ୟ ତାଙ୍କୁ ହୁଅଇ ପ୍ରାପତ
ସଂସାର-ସାଗରେ ପଡ଼ି ନ ପାଏ ଦୁର୍ଗତ ।
ଇକ୍ଷୁରସେ ସ୍ନାନ କରାଇଲେ ମହେଶଙ୍କୁ
ଶିବଙ୍କ ଲୋକରେ ବାସ ମିଳେ ରହିବାକୁ ।

—ଶିବପୁରାଣ—

---

## ପ୍ରାର୍ଥନାର ଶକ୍ତି

ପ୍ରାର୍ଥନା ମନକୁ ଉନ୍ନତ କରେ ଓ ପବିତ୍ରତାଦ୍ୱାରା ପୂର୍ଣ୍ଣ କରେ । ଭଗବତ୍ ମହିମା ପ୍ରକାଶ ସହିତ ଏହା ସଂଶ୍ଳିଷ୍ଟ । ଏହା ମନକୁ ଈଶ୍ୱରଙ୍କ ସଙ୍ଗେ ଏକ ତାନରେ ରଖିପାରେ । ଯୁକ୍ତି ଯେଉଁ ସ୍ଥାନରେ ପ୍ରବେଶ କରିପାରେ ନାହିଁ, ପ୍ରାର୍ଥନା ସେ ସ୍ଥାନକୁ ସହଜରେ ଯାଇପାରେ । ପ୍ରାର୍ଥନାଦ୍ୱାରା ପର୍ବତକୁ ଠେଲାଇ ଦିଆଯାଇପାରେ । ଏହା ଅଲୌକିକ ଘଟଣା ମଧ୍ୟ ଘଟାଇପାରେ । ଏହା ଭକ୍ତକୁ ମୃତ୍ୟୁଭୟରୁ ରକ୍ଷାକରେ ।

ପ୍ରାର୍ଥନାର ବିରାଟ ଶକ୍ତି ଅଛି । ମହାତ୍ମାଗାନ୍ଧୀ ପ୍ରାର୍ଥନାର ପ୍ରଧାନ ଭକ୍ତ । ଯଦି ପ୍ରାର୍ଥନା ବିଶୁଦ୍ଧ ଓ ଆନ୍ତରିକ ହୁଏ, ଏହା ତତ୍‌କ୍ଷଣାତ୍ ଭଗବାନଙ୍କର ମନକୁ ଦ୍ରବୀଭୂତ କରିଦେବ । ଦ୍ରୌପଦୀଙ୍କର ହୃଦୟସ୍ପର୍ଶୀ ପ୍ରାର୍ଥନା ଶ୍ରବଣକରି ଶ୍ରୀକୃଷ୍ଣ ନଗ୍ନପାଦରେ ଦ୍ୱାରକାରୁ ଧାଇଁ ଆସିଥିଲେ । ତୁମ୍ଭେମାନେ ସମସ୍ତେ ଏହା ଜାଣ । ପ୍ରହ୍ଲାଦଙ୍କ ପ୍ରାର୍ଥନାରେ ଆସିବା ନିମନ୍ତେ ମୁହୂର୍ତ୍ତିଟିଏ ମାତ୍ର ବିଳମ୍ବ ଘଟିଥିବାରୁ ବିଶ୍ୱ ଶାସନକର୍ତ୍ତା ଭଗବାନ୍ ହରି ତାହାଙ୍କ ନିକଟରେ କ୍ଷମା ପ୍ରାର୍ଥନା କରିଥିଲେ । ଭଗବାନ୍ ଅପାର କରୁଣାମୟ ଓ ପ୍ରେମମୟ ।






## କାମ

କାମର ଦଶଟି ବନ୍ଧୁ ଅଛନ୍ତି—ମୃଗୟା, ତାସ, ପଶାଖେଳ, ଦିବାନିଦ୍ରା, ପରର ଦୋଷ କୀର୍ତ୍ତନ, ସ୍ତ୍ରୀସଙ୍ଗ, ସୁରାପାନ, ନୃତ୍ୟ, ଗୀତ, ବାଦ୍ୟ ଓ ବୃଥା ଭ୍ରମଣ ।

—ମନୁ—

**ଅଷ୍ଟାଙ୍ଗ ମୈଥୁନ**—ସ୍ମରଣ, କୀର୍ତ୍ତନ, କେଳି, ପ୍ରେକ୍ଷଣ, ଗୁହ୍ୟ ଭାଷଣ, ସଂକଳ୍ପ, ଅଧ୍ୟବସାୟ, କ୍ରିୟା ନିଷ୍ପତ୍ତି; ଅର୍ଥାତ୍ ପ୍ରଥମରେ କେବଳ କାମ ବିଷୟ ସ୍ମରଣ, ତତ୍ପରେ ବନ୍ଧୁବାନ୍ଧବ ସମକ୍ଷରେ ତାହାର ଗୁଣ କୀର୍ତ୍ତନ, ପରେ ସୁବିଧା ପାଇଲେ ତାହା ସହିତ କ୍ରୀଡ଼ା, ତଦନନ୍ତର ଅବସର ପାଇଲେ ତାହା ଅଙ୍ଗକୁ ଚାହିଁବା, ତାହାପରେ ସେ ସମ୍ବନ୍ଧରେ ଗୋପନରେ କଥାବାର୍ତ୍ତା, ପରେ ମିଳିତ ହେବାର ସଂକଳ୍ପ ଏବଂ ସେଥିଲାଗି ଅଧ୍ୟବସାୟ,

ଏହି ଅଧ୍ୟବସାୟ ଫଳରେ ଅବଶେଷରେ କିମ୍ବା ନିଷ୍ପତ୍ତି ବା କାମ୍ୟବସ୍ତୁ ଲାଭ ଓ ନିଜର ସର୍ବନାଶ ସାଧନା ।

**ସାବଧାନତା**

କାଷ୍ଠ ପାଷାଣ ନାରୀରୂପେ ଥୋଇବ ଯତିଙ୍କ ସମୀପେ ।
ଯତିଏ ତାର ମୁଖ ଚାହିଁ, ଚରଣ ଅଗ୍ର ଯେବେ ଛୁଇଁ ।
ମନ ମନ୍ଥଇ ତାହାଙ୍କର ତେଣୁ ମନ୍ମଥ ନାମ ତାର ।

ଅର୍ଥାତ୍ କାଷ୍ଠନିର୍ମିତ ନାରୀମୂର୍ତ୍ତି ଦର୍ଶନ, ସ୍ପର୍ଶନଦ୍ୱାରା ମଧ୍ୟ ଋଷି-ମୁନିମାନଙ୍କର କାମର ବିକାର ଜାତ ହୋଇଥାଏ ।

ସ୍ତ୍ରିରମାନଙ୍କର ବଚନକୁ କାନରେ
ନ ଶୁଣିବ ନ ଚାହିଁବଟି ନୟନରେ ।
ସ୍ତ୍ରିରଙ୍କି ଚାହିଁଲେ ତ କାମ ହୋଏ ଗୋଟି
ଏଥିକି ସବୁବେଳେ ଦେଇଥିବ ଦୃଷ୍ଟି ।
ଦୁଧରୁ ଯେଉଁରୂପେ ଘିଅ ଉପୁଜଇ
ସେ ରୂପେ କାମ ଦେହରି ଶୁକ୍ର ଜନମଇ ।
ଏହି ସକାଶୁଁ ଜାଣ ଶୁକ୍ରକୁ ଇନ୍ଦ୍ରିୟ
ବୋଲିକରି କହନ୍ତି ସର୍ବ ଋଷିଚୟ ।

× × ×

ଯେଉଁଲୋକ ଇନ୍ଦ୍ରିୟକୁ ବଶ କରିଅଛି
ଜାଣ ଇନ୍ଦ୍ରିୟ ତାର ସଙ୍ଗତେ ଗୋଡ଼ାଇଛି ।
ଅସ୍ଥି, ଚର୍ମ, ରକତ ପୂଜରେ ଗଠିତ
ହୋଇଣ ଏ ଦେହଟି ହୋଇଅଛି ଜାତ ।
ଯୌବନ, ସୁନ୍ଦରପଣ, ଧନରତ୍ନ,
ତାରେ ପଣ୍ଡିତମାନେ ନ କରନ୍ତି ଯତ୍ନ ।

—ମହାଭାରତ-ଶାନ୍ତିପର୍ବ—

## ଇନ୍ଦ୍ରିୟ ଲାଳସା

କୁରଙ୍ଗ ବ୍ୟାଧର ବଂଶୀ ଧ୍ୱନିରେ ଭୁଲି ଜାଲରେ ପଡ଼ି ମରେ । ହାତୀ ପୋଷା ହାତୁଣୀର ସ୍ପର୍ଶସୁଖ ଆଶାରେ ଯନ୍ତାରେ ଧରା ହୋଇ ଚିରଜୀବନ ବନ୍ଦୀ ହୁଏ । ପତଙ୍ଗ ଅଗ୍ନିଶିଖାର ସୌନ୍ଦର୍ଯ୍ୟରେ ଆକୃଷ୍ଟ ହୋଇ ଦୀପରେ ପୋଡ଼ି ହୋଇ ପ୍ରାଣ ହରାଏ । ଭ୍ରମର ପଦ୍ମଗନ୍ଧରେ ଭୋଳ ହୋଇ ସନ୍ଧ୍ୟାବେଳେ ସେଥିରେ ମୁଦି ହୋଇ ନଷ୍ଟ ହୁଏ । ମୀନ ଖାଦ୍ୟ ଲୋଭରେ ବନଶୀ ଥୋପ ଗିଳି ମରେ । ଇନ୍ଦ୍ରିୟ ଲାଳସା ମେଣ୍ଟାଇବାକୁ ଯାଇ ଏହିପରି ଏମାନେ ପ୍ରାଣ ହରାନ୍ତି । ଗୋଟିଏ ଗୋଟିଏ ଇନ୍ଦ୍ରିୟ ସେବାକରି ଯଦି ଏମାନଙ୍କର ଦଶା ଏପରି ହୁଏ, ତେବେ ଯେଉଁ ଜୀବ ପୂର୍ଣ୍ଣମାତ୍ରାରେ ପଞ୍ଚଇନ୍ଦ୍ରିୟର ସମବେତ ସେବା କରେ, ତା' ଦଶା କେତେଦୂର ଶୋଚନୀୟ ଥରେ ଭାବିଚିନ୍ତି ଦେଖ । —ଗରୁଡ଼ ପୁରାଣ—

ଇନ୍ଦ୍ରିୟର ଭୋଗ କ୍ଷଣସ୍ଥାୟୀ, ଯେପରି ବିଜୁଳିର ଚକମକ ଆଲୋକ କ୍ଷଣସ୍ଥାୟୀ । ତା'ପରେ ପୁଣି ଘୋର ଅନ୍ଧାର, ସେହିପରି ଇନ୍ଦ୍ରିୟଭୋଗ ସୁଖ ବା ବିଳାସ ସୁଖ କ୍ଷଣସ୍ଥାୟୀ ଓ ପରିଣାମ ଦୁଃଖ ଓ ବିନାଶ—ଇନ୍ଦ୍ରିୟସୁଖର ବାସନା ତ୍ୟାଗ ନକଲେ ଧର୍ମଲାଭ ହୁଏ ନାହିଁ । —ବିବେକାନନ୍ଦ—

ଇନ୍ଦ୍ରିୟ ଭୋଗରେ ଆମେ ସର୍ବସ୍ୱାନ୍ତ ହୋଇ ପଡ଼ୁଛୁ । ଏମାନେ ଗୃହଅଡ଼ୁଆ ଦସ୍ୟୁପରି ଆମ୍ଭମାନଙ୍କର ସର୍ବସ୍ୱ ଲୁଣ୍ଠନ କରି ନେଉଛନ୍ତି । ଇନ୍ଦ୍ରିୟ ଭୋଗଦ୍ୱାରା ଆମେ କିପରି ଦୁର୍ଦ୍ଦଶାଗ୍ରସ୍ତ ହୋଇଛୁ, ଆତ୍ମଚିନ୍ତାଦ୍ୱାରା ଯେ ଏହା ଭଲକରି ଦେଖି ପାରିବେ, ସେ କେବଳ ଅବିରତ ଲୋତକ ଢାଳି ଭଗବାନଙ୍କୁ କହିବେ—

"ହେ ଅଚ୍ୟୁତ, ଦେଖ ଏହି ଜିହ୍ୱାର ଏତେ ସେବା କଲି; ତଥାପି ସେ ତୃପ୍ତ ହେଲା ନାହିଁ, ଏ ମୋତେ ଏକ ଦିଗକୁ ଟାଣୁଛି, ଉପସ୍ଥ ଆଉ ଏକ ଦିଗକୁ ଟାଣୁଛି । ଉଦର, କର୍ଣ୍ଣ, ନାସିକା, ଚକ୍ଷୁ ପ୍ରତ୍ୟେକେ ଏକ ଏକ ଦିଗକୁ ଟାଣୁଛନ୍ତି । ବହୁ ବିବାହଗ୍ରସ୍ତ ପତିକୁ ତା'ର ସ୍ତ୍ରୀମାନେ ଯେପରି ବ୍ୟତିବ୍ୟସ୍ତ କରିପକାନ୍ତି, ଏହି ଇନ୍ଦ୍ରିୟମାନେ ସେହିପରି ମୋତେ ଉତ୍ପୀଡ଼ନ କରୁଛନ୍ତି । —ଭାଗବତ—

## ଭୋଗଦ୍ୱାରା କାମ ଦମନ

ଭୋଗଦ୍ୱାରା ଯେତିକି କାମ ଦମନ କରିବାକୁ ଇଚ୍ଛାକରିବ ତାହା ଦମନ ନହୋଇ ବରଂ ସେହି ଭୋଗଦ୍ୱାରା ନିଜ ଅନ୍ତରସ୍ଥ କାମାଗ୍ନି ସେତିକି ଉତ୍ତେଜିତ ହେବ ।

କାମ ଭୋଗଦ୍ୱାରା କାମପ୍ରବୃତ୍ତି ଚିଳେମାନେ ନଷ୍ଟ ହୁଏ ନାହିଁ । ବରଂ ଅଗ୍ନି ଯେପରି ଘୃତାହୁତିଦ୍ୱାରା ପ୍ରଜ୍ୱଳିତ ହୋଇଉଠେ, କାମ ସେହିପରି ଭୋଗଦ୍ୱାରା ବୃଦ୍ଧିପାଏ । ଅତଏବ ଭୋଗଦ୍ୱାରା କାମ ଦମନ ହୋଇ ନପାରେ ।

—ମହାଭାରତ-ଆଦିପର୍ବ—

# ଜିହ୍ୱା

ସବୁ ଇନ୍ଦ୍ରିୟମାନଙ୍କ ମଧ୍ୟରେ ଜିହ୍ୱା ଉତ୍ପାତକାରୀ ଇନ୍ଦ୍ରିୟ ଅଟେ । ଯଦି କେହି ଆପଣାକୁ ଧର୍ମପରାୟଣ ବୋଲି ମନେକରେ ଆଉ ଆପଣା ଜିହ୍ୱାକୁ ବଶୀଭୂତ ନକରି ନିଜ ହୃଦୟକୁ ପ୍ରବଞ୍ଚନା କରେ, ତାହାର ଧର୍ମପରାୟଣତା ବୃଥା ।

ଜିହ୍ୱା ଗୋଟିଏ କ୍ଷୁଦ୍ର ଅଙ୍ଗ; କିନ୍ତୁ ମହାଗର୍ବର କଥା କହେ । ଦେଖ, କେତେ କ୍ଷୁଦ୍ର ଅଗ୍ନି କଣିକାଦ୍ୱାରା କେତେ ବଡ଼ ଅରଣ୍ୟରେ ନିଆଁ ଲାଗିଯାଏ, ଜିହ୍ୱା ମଧ୍ୟ ଅଗ୍ନିସ୍ୱରୂପ; ତାହା ଆମ୍ଭମାନଙ୍କ ଅଙ୍ଗସମୂହ ମଧ୍ୟରେ ସମସ୍ତ ଅଧର୍ମର ମୂଳାଧାର ସ୍ୱରୂପ ଅବସ୍ଥିତ । ତାହା ସମସ୍ତ ଶରୀରକୁ ଅଶୁଚି କରେ ଓ ନିଜେ ନରକାନଳରେ ପ୍ରଜ୍ୱଳିତ ହୋଇ ପ୍ରକୃତିର ଚକ୍ରକୁ ଜଳାଏ । କାରଣ ସମସ୍ତ ପ୍ରକାର ପଶୁ, ପକ୍ଷୀ ସରୀସୃପ ଓ ଜଳଚର ପ୍ରାଣୀ-ମାନଙ୍କୁ ମାନବଦ୍ୱାରା ବଶରେ ରଖାଯାଇପାରେ । ପୁଣି ବଶରେ ରଖାଯାଇଅଛି; କିନ୍ତୁ ଜିହ୍ୱାକୁ କେହି ବଶରେ ରଖିପାରେ ନାହିଁ, ଅନିଷ୍ଟ ସାଧନରେ ତାହାର ବିରାମ ନାହିଁ; ମାରାତ୍ମକ ଗରଳରେ ତାହା ପରିପୂର୍ଣ୍ଣ । ତଦ୍ୱାରା ଆମ୍ଭେମାନେ ପ୍ରଭୁ ଓ ପିତାଙ୍କର ଧନ୍ୟବାଦ କରୁଥାଉଁ, ପୁଣି ତଦ୍ୱାରା ଈଶ୍ୱରଙ୍କ ସାଦୃଶ୍ୟରେ ସୃଷ୍ଟ ମନୁଷ୍ୟଙ୍କୁ ଅଭିଶାପ ଦେଉଥାଉଁ । —ବାଇବେଲ୍—

ମହାତ୍ମା ଗାନ୍ଧିଙ୍କ ଭାଷାରେ, ଯେ ନିଜର ଜିଭକୁ ଆୟତ୍ତରେ ରଖିପାରେନା, ସେ ତା'ର ଅନ୍ୟାନ୍ୟ ଇନ୍ଦ୍ରିୟକୁ କେବେହେଲେ ଆୟତ୍ତରେ ରଖିପାରିବ ନାହିଁ । ମଣିଷ ଯାହା ଖାଏ, ସେହି ଅନୁସାରେ ସେ ତିଆରି ହୁଏ । ଯେଉଁ ପେଟୁ ଖାଇବାରେ କୌଣସି ବାଛବିଚାର ବା କଟକଣା ରଖେ ନାହିଁ, ସେ ତା'ର ପଶୁ ପ୍ରବୃତ୍ତିର ଦାସଭଳି ରହେ । —ଗାନ୍ଧିବାଣୀ—

**The tongue is but three inches long, yet it can kill a man six feet high.**

**( Japanees proverb )**

ଜିହ୍ୱା ମଧୁର ରସ ପାଇ । ଲାଳସେ ଛାଡ଼ି ନପାରଇ ॥
ନରତେ ଲୋଡ଼େ ଭୋଗ ମନେ । ମୀନ ବଡ଼ଶୀ ଥୋପ ଯେହ୍ନେ

ଜିହ୍ୱାକୁ ବର୍ଜି ଇନ୍ଦ୍ରିଗଣ । ହେଲେ ଜିତଣ ପାରେ ମନ ।
ଏ ବୋଲ ବୁଝି ଯେଉଁ ପ୍ରାଣୀ । ଯେବେ ଜିହ୍ୱାକୁ ପାରେ ଜିଣି
ହେଲେ ଜିଣଇ ଇନ୍ଦ୍ରିଗଣ । ସେ ପ୍ରାଣୀ ନିଶ୍ଚେ ନାରାୟଣ

—ଭାଗବତ—

ମହାତ୍ମାଗାନ୍ଧୀଙ୍କ ଭାଷାରେ କେବଳ ବୀର୍ଯ୍ୟରକ୍ଷା ବ୍ରହ୍ମଚର୍ଯ୍ୟ ନୁହେଁ, ବରଂ ଏହା ହେଉଛି ବ୍ରହ୍ମଚର୍ଯ୍ୟର ପ୍ରଥମ ଚରଣ । ଏହା କେବଳ ଜନନେନ୍ଦ୍ରିୟ ସଂଯମ ନୁହେଁ । ବ୍ରହ୍ମଚର୍ଯ୍ୟର ଅର୍ଥ ହେଉଛି ମନ, ବଚନ ଓ କର୍ମରେ ଇନ୍ଦ୍ରିୟମାନଙ୍କର ସଂଯମ ।

ଇନ୍ଦ୍ରିୟମାନଙ୍କୁ ନିରଙ୍କୁଶ ଭାବେ ଛାଡ଼ିଦେବା ଅର୍ଥ ଜୀବନ ନୌକାକୁ କର୍ଣ୍ଣଧାରହୀନ କରି ଛାଡ଼ିବା ।

ଦେହର ସର୍ବୋତ୍କୃଷ୍ଟ ପଦାର୍ଥ ହେଉଛି . ଶୁକ୍ର ବା ବୀର୍ଯ୍ୟ । ଯେପରି ଖମ୍ବସବୁ ଗୃହକୁ ଧରି ରଖିଥାନ୍ତି ସେହିପରି ବ୍ରହ୍ମଚର୍ଯ୍ୟ ଶରୀରକୁ ପୋଷଣ କରିଥାଏ ।

ଶୁକ୍ରକ୍ଷୟ ବା ବୀର୍ଯ୍ୟପାତ ଯାହାର ଯେତେ ଶୀଘ୍ର ବନ୍ଦହୁଏ, ତାହାର ମସ୍ତିଷ୍କ ସେତେ ଶୀଘ୍ର ପୁଷ୍ଟି ହୁଏ ଏବଂ ମେଧା ଜାତହୁଏ ।

ସ୍ୱାମୀ ବିବେକାନନ୍ଦ ଥରେ କହିଥିଲେ ଯେ, ବାରବର୍ଷ ନିମାନ୍ୱୟରେ ବୀର୍ଯ୍ୟଧାରଣ କଲେ କେତେ ବିବେକାନନ୍ଦ ସୃଷ୍ଟି ହୋଇ ପାରନ୍ତି; ଅର୍ଥାତ୍ ବୀର୍ଯ୍ୟଧାରଣ ମେଧାବୀ ହେବାର ଏକମାତ୍ର ଉପାୟ ।

ସଯତ୍ନେ ବୀର୍ଯ୍ୟ ରକ୍ଷାକର । ବୀର୍ଯ୍ୟ ପ୍ରତ୍ୟକ୍ଷ ବା ଗତିଶୀଳ ଭଗବାନ ସଦୃଶ । ବୀର୍ଯ୍ୟ ବିଭୂତି, ବୀର୍ଯ୍ୟ ଶକ୍ତି, ବୀର୍ଯ୍ୟ ଅର୍ଥ, ବୀର୍ଯ୍ୟ ଜୀବନୀ ଶକ୍ତି, ଚିନ୍ତା ଶକ୍ତି ଓ ବୁଦ୍ଧି ଶକ୍ତିର ସାର ସ୍ୱରୂପ ।

ମନୁଷ୍ୟର ଜୀବନରକ୍ଷାକାରୀ ବୀର୍ଯ୍ୟ ବା ପ୍ରାଣଶକ୍ତି ମନୁଷ୍ୟପକ୍ଷରେ ପରମଧନ । ଏହା ରକ୍ତର ସାର । ବ୍ରହ୍ମଚର୍ଯ୍ୟ ପ୍ରକୃତ ମୂଲ୍ୟବାନ ରତ୍ନ ।

ରୋଗ, ଜରା ଓ ମୃତ୍ୟୁ ହସ୍ତରୁ ରକ୍ଷା କରିବାପାଇଁ ଏହା ପ୍ରତ୍ୟକ୍ଷ ଫଳପ୍ରଦ ଔଷଧ ବା ଅମୃତବିନ୍ଦୁ । ଏହି ଅମରଆତ୍ମା ବ୍ରହ୍ମଚର୍ଯ୍ୟର ରୂପ । ଆତ୍ମା ବ୍ରହ୍ମଚର୍ଯ୍ୟରେ ବାସକରେ । —ସ୍ୱାମୀ ଶିବାନନ୍ଦ—

ଘୃତ ଯେପରି ଦୁଗ୍ଧରେ, ଗୁଡ଼ ଯେପରି ଆଖୁ ରସରେ ସର୍ବତ୍ର ବ୍ୟାପି ରହିଥାଏ, ବୀର୍ଯ୍ୟ ସେହିପରି ମନୁଷ୍ୟର ସମସ୍ତ ଶରୀରରେ ବ୍ୟାପି ରହିଥାଏ ।

ମହୁଫେଣାରୁ ମହୁ ବୁପୁଡ଼ି ନେଲେ ଫେଣାର, ଜଳନ୍ତା ଦୀପରୁ ତେଲ ସରିଗଲେ ଦୀପର, ପୋଖରୀରୁ ପାଣି ଶୁଖିଗଲେ ମାଛର, ବଜ୍ର ଗଛକୁ ପୋଡ଼ି ପକାଇଲେ ଗଛର, ମଣି କାଢ଼ିନେଲେ ସର୍ପର ଯେଉଁ ଅବସ୍ଥା ହୁଏ, ମନୁଷ୍ୟର ବ୍ରହ୍ମଚର୍ଯ୍ୟ ବା ଶୁକ୍ରକ୍ଷୟ ହେଲେ ତାହାର ସେହିପରି ଅବସ୍ଥା ଘଟିଥାଏ ।

ଯେଉଁ ବ୍ୟକ୍ତି ଅବିଚଳିତଭାବରେ ବ୍ରହ୍ମଚର୍ଯ୍ୟ ପାଳନ କରନ୍ତି, ତାଙ୍କର ଶାରୀରିକ, ମାନସିକ ଶାନ୍ତି ଲାଭହୁଏ । ବ୍ରହ୍ମଚାରୀର ଅସାଧ୍ୟ ପୃଥିବୀରେ କିଛି ନାହିଁ । ସେ ସମସ୍ତ ବ୍ରହ୍ମାଣ୍ଡକୁ ଚଳାଇ କରିପାରେ । ବ୍ରହ୍ମଚର୍ଯ୍ୟ ରକ୍ଷାକରି ପୂର୍ବକାଳରେ ଋଷିମାନେ ଅମରତ୍ୱ ଲାଭ କରିଅଛନ୍ତି । ବ୍ରହ୍ମଚର୍ଯ୍ୟ ବଳରେ ରାଜା ରାଜତ୍ୱ କରନ୍ତି, ସମ୍ରାଟ ସାମ୍ରାଜ୍ୟ ଭୋଗ କରନ୍ତି ଏବଂ ଇନ୍ଦ୍ର ରାଜତ୍ୱ ପାଇଅଛନ୍ତି ।

ଅର୍ଜ୍ଜୁନ ସଙ୍ଗରେ ଯୁଦ୍ଧରେ ହାରି ଗନ୍ଧର୍ବ କହିଲା—"ଆପଣ କେବଳ ବ୍ରହ୍ମଚର୍ଯ୍ୟ ବଳରେ ମତେ ଜିଣିପାରି ଅଛନ୍ତି ।"

ଜ୍ଞାନୀ ଓ ପଣ୍ଡିତମାନେ ତପସ୍ୟାକୁ ତପସ୍ୟା ବୋଲି କହନ୍ତି ନାହିଁ, ସେମାନଙ୍କ ମତରେ ବ୍ରହ୍ମଚର୍ଯ୍ୟ ହେଉଛି ସର୍ବଶ୍ରେଷ୍ଠ ତପସ୍ୟା । ଯେ ଊର୍ଦ୍ଧ୍ୱରେତା ସେ ପ୍ରକୃତରେ ଦେବତା, ମନୁଷ୍ୟ ନୁହନ୍ତି ।

ଅନେକ ଋଷି ଓ ମୁନି ଅଖଣ୍ଡ ବ୍ରହ୍ମଚର୍ଯ୍ୟ ବଳରେ, ଧର୍ମ, ଅର୍ଥ, କାମ, ମୋକ୍ଷ, ଚତୁର୍ବର୍ଗ ଫଳପ୍ରାପ୍ତ ହୋଇଛନ୍ତି ।

ସଂଯମ ବିନା ବ୍ରହ୍ମଚର୍ଯ୍ୟ ମିଳିବ ନାହିଁ । ଆତ୍ମସଂଯମର ଅର୍ଥ ସବୁଯାକ ଇନ୍ଦ୍ରିୟକୁ ଆୟତ୍ତରେ ରଖିବା । ବ୍ରହ୍ମଚର୍ଯ୍ୟର ଅର୍ଥ ସ୍ତ୍ରୀସଙ୍ଗ ତ୍ୟାଗ ଓ ବୀର୍ଯ୍ୟଧାରଣ ବୋଲି ସାଧାରଣତଃ ବୁଝା ଯାଇଥାଏ । ସବୁ ଇନ୍ଦ୍ରିୟକୁ ସଂଯମ କରୁଥିବା ଲୋକ ପକ୍ଷରେ ବୀର୍ଯ୍ୟସଂଗ୍ରହ ସହଜ ଓ ସ୍ୱାଭାବିକ କ୍ରିୟା ହୋଇଥାଏ ।

ସହବାସ କରିବାପାଇଁ ଇଚ୍ଛା ରହିଥିବା ପର୍ଯ୍ୟନ୍ତ ଜଣେ ବ୍ରହ୍ମଚର୍ଯ୍ୟ ହାସଲ କରିନାହିଁ ବୋଲି ବୁଝିବାକୁ ହେବ । କାମ ବାସନାକୁ ପୂର୍ଣ୍ଣଭାବରେ ହୃଦୟରୁ ପୋଛିଦେଲେ ଯାଇଁ ଜଣେ ଜନନେନ୍ଦ୍ରିୟକୁ ଆୟତ୍ତ କରି ପାରିଛି ବୋଲି କୁହାଯାଇ ପାରିବ ।

—ଗାନ୍ଧିବାଣୀ—

# କ୍ରୋଧ

## କ୍ରୋଧର ଆଠଗୋଟି ସହଚର (ସଙ୍ଗୀ)

ଖଳତା, ଶଠତା, ପରର ଅନିଷ୍ଟଚିନ୍ତା ଓ ଅନିଷ୍ଟ ଆଚରଣ, ଅନ୍ୟର ଗୁଣ ସମ୍ବନ୍ଧରେ ଅସହିଷ୍ଣୁତା, ପରର ଗୁଣ ଭିତରୁ ଦୋଷ ଖୋଜିବା, ଯାହାଦେବା ଉଚିତ ତାହା ନଦେବା, ଦେବା ପଦାର୍ଥ ଅପହରଣ କରିବା, କଠୋର ଓ କଟୁବାକ୍ୟ ପ୍ରୟୋଗ ଏବଂ ନିଷ୍ଠୁରାଚରଣ ଏହି ଆଠଗୋଟି କ୍ରୋଧର ସହଚର ।

—ମନୁସଂହିତା—

କ୍ରୋଧ ସବୁ ପାପର ମୂଳ ଅଟେ । ସେହି କ୍ରୋଧର ବଶବର୍ତ୍ତୀ ହୋଇ ମନୁଷ୍ୟ ଅନୁଚିତ କର୍ମ କରେ ଓ ବିଶ୍ୱର ପ୍ରତିକୂଳତା ଆଚରଣ କରିଥାଏ ।

—ତୁଳସୀ ରାମାୟଣ—

ଇହ ଜଗତରେ କ୍ରୋଧ ମନୁଷ୍ୟର ସର୍ବନାଶର ହେତୁ । କ୍ରୋଧୀଲୋକ ସକଳ ପାପକାର୍ଯ୍ୟ କରିପାରେ—ସେ ପରମ ପୂଜ୍ୟ ଗୁରୁଦେବଙ୍କୁ ବଧ କରିପାରେ ଏବଂ ଯାହା ଜୀବନ ପ୍ରତି ପରମ ଶ୍ରେଷ୍ଠ ଓ ମଙ୍ଗଳକର ତାକୁ ମଧ୍ୟ ପାଦରେ ଦଳି ଦେଇପାରେ ।

ଯେଉଁଜନ କ୍ରୋଧକୁ ସର୍ପକାତି ପ୍ରାୟେ ।
ନ ରଖି ହୃଦୟରୁ ଅଲଗା କରିଦିଏ ॥
ସେହି ଜନକୁଟି ପୁରୁଷ ବୋଲି କହି ।
ମୋହଠାରୁ ଏବେ ଶୁଣି ଥାଅ ତୁହି ॥

—ଭୀଷ୍ମ ବଚନ—

ଲୋକ କ୍ରୋଧ-ରାକ୍ଷସର ବଶବର୍ତ୍ତୀ ହେଲେ, ତାହାର ଆଉ ଭଲମନ୍ଦ ବିଚାର ରହେ ନାହିଁ । ଜଗତରେ ଏପରି ପାପ ନାହିଁ ଯାହାକି କ୍ରୋଧୀଲୋକ ନ କରିପାରେ, ଏପରି ଦୁର୍ବାକ୍ୟ ନାହିଁ ଯାହାକି ସେ କହି ନ ପାରେ । କ୍ରୋଧର ଉତ୍ତେଜନାରେ ଲୋକ ଯାହା ଅବଧ୍ୟ ତାହା ବଧ କରିପାରେ ଏବଂ ଯାହା ବଧ୍ୟ ତାକୁ ପୂଜା ମଧ୍ୟ କରିଥାଏ । କ୍ରୋଧୀଲୋକ ଆଗ-ପଛକୁ ବିଚାର ନକରି ଆତ୍ମହତ୍ୟା ମଧ୍ୟ କରିପାରେ ଓ ଏପରି କି ଗର୍ଭବତୀ ନାରୀକୁ ତୀକ୍ଷ୍ଣ ଛୁରିକାରେ କାଟି ପକାଏ । କ୍ରୋଧାନ୍ଧ ହେଲେ କେଉଁ-କାର୍ଯ୍ୟର କି ଫଳ, ତାହା ଆଉ ମନେ ପଡ଼େ ନାହିଁ । ଏହା ମନୁଷ୍ୟର ମନୁଷ୍ୟତ୍ୱକୁ ନାଶ କରିଦିଏ । ପୃଥିବୀରେ ଯେତେ ଯେତେ ନୃଶଂସ କାର୍ଯ୍ୟମାନ ସଂଗଠିତ ହୋଇଅଛି ସେ ସମସ୍ତ ମୂଳରେ ଏହି କ୍ରୋଧ ରହିଅଛି । କ୍ରୋଧ ସମୟରେ କ୍ରୋଧୀ ଲୋକର ମୁଖ ବିକଟ, ଚକ୍ଷୁ ଆରକ୍ତ, ଅଧର କମ୍ପିତ, ନାସିକା ବିସ୍ଫାରିତ, ମୁଖରୁ ନିର୍ଗତ ଶ୍ୱାସ ତପ୍ତ ଓ ସମସ୍ତ ମୁଖମଣ୍ଡଳରେ ଏକ ପ୍ରକାର ପାପ-କାଳିମାର ଛାୟା ଘୋଡ଼ାଇହୋଇ ରହିଥାଏ ।

—ଭକ୍ତିଯୋଗ—

## କ୍ରୋଧର ବିଷମୟ ଫଳ

କ୍ରୋଧରୁ ମୋହ, ମୋହରୁ ସ୍ମରଣ ଶକ୍ତି ବିନାଶ ଓ ସ୍ମରଣ ଶକ୍ତି ବିନାଶରୁ ବୁଦ୍ଧି ନାଶ ହୁଏ । ବୁଦ୍ଧି ନାଶ ହେଲେ ପ୍ରାଣୀ ମୃତବତ୍ ନିଶ୍ଚେଷ୍ଟ ହୁଏ । କ୍ରୁଦ୍ଧ ବ୍ୟକ୍ତିର କାର୍ଯ୍ୟାକାର୍ଯ୍ୟ ଜ୍ଞାନ ରହେ-ନାହିଁ । ସୁତରାଂ ମୋହ ଉପସ୍ଥିତ ହୁଏ । ବୁଦ୍ଧି ବିନାଶ ହେଲେ ମନୁଷ୍ୟର ମୃତ୍ୟୁ ହୁଏ ।

ସମୁଦ୍ର ପାଣି ନିଆଁରେ ଉତ୍ତପ୍ତ ନ ହେଲା ପରି ସାଧୁମାନେ ବାହାରେ କୋପ ପ୍ରକାଶକଲେ ମଧ୍ୟ ସେମାନଙ୍କ ମନ ବିକୃତ ହୁଏ ନାହିଁ । ସାଧୁମାନେ ଯେଉଁ କ୍ରୋଧ ପ୍ରକାଶ କରନ୍ତି, ତାହା କେବଳ ଅନ୍ୟାୟକୁ ଶାସନ କରିବାପାଇଁ କ୍ରୋଧର ଛଳନା କରିଥାନ୍ତି । ତଦ୍ଦ୍ୱାରା ମନର ବ୍ୟତିକ୍ରମ ଘଟେ ନାହିଁ । —ଭକ୍ତିଯୋଗ—

ଦରକାର ପଡ଼ିଲେ ସାଧୁମାନଙ୍କ ପରି ଅବିକୃତ ହୃଦୟରେ କ୍ରୋଧ ପ୍ରକାଶ କରିପାର, ପରନ୍ତୁ ଅନ୍ୟାୟରୁ ନିବୃତ୍ତ କରିବାପାଇଁ ରାଗରେ ଫଁ ଫଁ ହୋଇପାର, କିନ୍ତୁ କେତେବେଳେ ହେଲେ କାହାକୁ ରାଗରେ ଦଂଶନ କରିବାକୁ ଯିବ ନାହିଁ ।

କ୍ରୋଧ ଆରମ୍ଭ ହୁଏ ନିର୍ବୋଧତାରୁ ଓ ଶେଷ ହୁଏ ଅନୁତାପରେ । —ପାଇଥ ଗୋରା—

---

## ଲୋଭ

ଲୋଭ ଅଟଇ ପରମ ରାକ୍ଷସ
ଯେତେ ପାଇଲେ ସେ ନୁହଁଇ ତୋଷ ।
ଲୋଭରୁ କାମ, କ୍ରୋଧ, ହିଂସା ଜାତ
ଲୋଭ ହେତୁରୁ ପାପର ସମ୍ଭୂତ ।

ପରମ ଦାରୁଣ ଲୋଭ ଅଟଇ
ସର୍ବ ଧର୍ମ କର୍ମକୁ ବିନାଶଇ ।
- ଭୀଷ୍ମ ବଚନ-ବୃହତ୍ ଇତିହାସ ପୁରାଣ—

ଅଳ୍ପମାତ୍ର ଧବଳକୁଷ୍ଠ ରୋଗ ଯେପରି କମନୀୟ ରୂପକୁ ବିକୃତ କରି ପକାଏ; ସେହିପରି ଲୋଭ ଅଳ୍ପମାତ୍ର ହେଲେହେଁ ତାହା ଯଶସ୍ୱୀମାନଙ୍କର ବିଶୁଦ୍ଧ ଯଶକୁ ଏବଂ ଗୁଣବାନ୍ ଲୋକର ପ୍ରଶଂସନୀୟ ଗୁଣମାନଙ୍କୁ ନଷ୍ଟ କରିଦିଏ ।

ଧନଲୋଭ, ଯଶଲୋଭ, ମାନ-ସମ୍ମାନ ଲୋଭ ମନୁଷ୍ୟକୁ ଏପରି ଅସ୍ଥିର କରିଦିଏ ଯେ, ସେଥିରେ ତାହାର ବୁଦ୍ଧି ବିଚଳିତ ହୋଇଯାଏ ।

ଲୋଭଦ୍ୱାରା ପ୍ରଜ୍ଞା ନଷ୍ଟହୁଏ । ଏହିକ୍ରମରେ ପ୍ରଜ୍ଞା ନଷ୍ଟ ହେଲେ ଲଜ୍ଜା, ଲଜ୍ଜା ନଷ୍ଟହେଲେ ଧର୍ମ, ଧର୍ମ ନଷ୍ଟ ହେଲେ ଶ୍ରୀ ଅର୍ଥାତ୍ ଯାହା ଶୁଭ, ତାହା ସମସ୍ତ ନଷ୍ଟହୁଏ ।

—ମହର୍ଷି ଦ୍ୱୈପାୟନ ବଚନ—

---

# ମୋହ-ମାୟା

ମୋ ପିତା, ମୋ ମାତା, ମୋ ଗୃହିଣୀ ଏହିପରି 'ମୋର' 'ମୋର' ଜ୍ଞାନକୁ ମୋହ କୁହାଯାଏ ।

- ଭକ୍ତିଯୋଗ—

ମୋହ ନ ଥିଲେ ଏହି ସଂସାରର ଅନିତ୍ୟ ବିଷୟ ପ୍ରତି କାହାର ହେଲେ ଲୋଭ ନ ଥାନ୍ତା । ଏହି ପାର୍ଥିବ ଧନ, ମାନ ଯୌବନ କାହାର ଗର୍ବ ଅସନ୍ତା ନାହିଁ । ପରଶ୍ରୀକାତରତା ପ୍ରଭୃତି ଦୋଷ ଆମ୍ଭମାନଙ୍କ ଜୀବନକୁ ଜର୍ଜରିତ କରି ପାରନ୍ତା ନାହିଁ,

କାମପ୍ରବୃତ୍ତି ଅତି ଜଘନ୍ୟ, ଅତି ବିଗର୍ହିତ, ପୈଶାଚିକ ରଙ୍ଗଭୂମିକୁ ସୁବର୍ଣ୍ଣ ରଙ୍ଗରେ ରଞ୍ଜିତ କରିପାରନ୍ତି ନାହିଁ । ସମସ୍ତ ପାପ, ଦୁରାଗ୍ରହ ଏହି ମୋହ ଅର୍ଥାତ୍ ଅଜ୍ଞାନରୁ ଜାତହୁଏ ।

ଏ ଶରୀର କ'ଣ ଆମର ? ଯଦି ଆମର ହୋଇଥାନ୍ତା, ତାହାହେଲେ ଏହାର ଗୋଟିଏ ମାତ୍ର ଶୁକ୍ଳ କେଶକୁ କୃଷ୍ଣ କରିବାର ଅଧିକାର କ'ଣ ଆମର ନ ଥାନ୍ତା ? ଏ ଗୃହ-ସଂସାର କ'ଣ ଆମର ? ଯେବେ ଆମର ତେବେ କାହିଁକି ବା ଚିରଦିନ ଆମେ ଏଥିରେ ବାସ କରି ରହିପାରୁ ନାହୁଁ ? ଏସବୁ କିଛି ଆମର ନୁହେଁ । ଏପରି କି, ଘରର ଏକ ଧୂଳିକଣା ସୁଦ୍ଧା ଆମ ନିଜର ନୁହେଁ । ଅଥଚ, ଧନରାଜି ଗୃହଆଦି ଯାହା ଦେଖୁଛେ, ସେ ସବୁ 'ଆମର', 'ଆମର' କହି ଚିତ୍କାର କରି ବୁଲୁଛେ । ପିତା ମାତା, ସ୍ତ୍ରୀ ପୁତ୍ର, ଭାଇ ଭଉଣୀ ଏସବୁ କେହି ନିଜର ନୁହଁନ୍ତି, ଅଥଚ, 'ସମସ୍ତେ ମୋର' ବୋଲି କଏ ଯେପରି ହୃଦୟ ଭିତରେ ରହି ନିରନ୍ତର ପାଠି କରୁଛି । ଯେ ଏହି ଭାବ ଜନ୍ମାଉଛି, ତାହାର ନାମ ମୋହ ।

ମମ ପିତା ମମ ମାତା ମମେୟଂ ଗୃହିଣୀ ଗୃହଂ ।
ଏବମ୍ବିଧଂ ମମତ୍ୱଂ ଯତ୍ ସ ମୋହ ଇତି କୀର୍ତ୍ତିତଃ ॥

—ପଦ୍ମପୁରାଣ—

ଏ ଶରୀର ମୋର ନୁହେଁ, ଯେଉଁଥିରେ ମୁଁ ବାନ୍ଧି ହୋଇ ରହିଛି, ତାହା ମାୟା ମାତ୍ର । ଏଭଳି ତତ୍ତ୍ୱ ଆଲୋଚନାରେ ଯେତେ ଅଗ୍ରସର ହେବ, ମୋହ-ରାକ୍ଷସକୁ ବିନାଶ କରିବା ଲାଗି ତେତିକି ସମର୍ଥ ହେବ । "ମୁଁ ତ ଦୁଃଖୀ ନୁହେଁ, ମୋର ବନ୍ଧନ କପରି

ହେବ ?" ଏହିପରି ଭାବି ସଂସାର କାର୍ଯ୍ୟରେ ଲାଗିଲେ ମନୁଷ୍ୟ ମୋହ-ପାପରୁ ମୁକ୍ତ ହୁଏ ।"

ମୁଁ ମାଂସ ନୁହେଁ, 'ମୁଁ ଅସ୍ଥି ନୁହେଁ, ମୁଁ ଦେହରୁ ଭିନ୍ନ, ମୁଁ ଆତ୍ମା । ଏହିପରି ନିଷ୍ଠାପୂର୍ବବୋଧଦ୍ୱାରା ଅନ୍ତରରୁ ଯାହାର ଅବିଦ୍ୟା କ୍ଷୟ ପାଇଛି, ସେହି କେବଳ ମୁକ୍ତ ।

କର୍ମଯୋଗର ଅର୍ଥ ଏହି ଯେ, ଜଗତର ସମୁଦାୟ ସୌନ୍ଦର୍ଯ୍ୟ ସମ୍ଭୋଗ କର, କିନ୍ତୁ ସେଥିରେ ଲିପ୍ତ ହୁଅ ନାହିଁ । "ମୋର" ବୋଲି କହନାହିଁ । "ମୋର" ବୋଲି କହିବା ମାତ୍ରେ ଦୁଃଖ ଆସିବ । 'ମୋର' ପୁତ୍ର 'ମୋର' ସ୍ତ୍ରୀ, 'ମୋର' ଧନ ଏହା କହନାହିଁ । ପୁତ୍ରକୁ ଆଦର କର, ତାହାକୁ ଘେନି ଆନନ୍ଦ କର, କିନ୍ତୁ ମୋର ବୋଲି କହନାହିଁ । ମୋର ଘର, ମୋର ଦେହ ବୋଲି କହ ନାହିଁ । କାରଣ ଦେହଟା ତୁମ୍ଭର ନୁହେଁ. ମୋର ନୁହେଁ, କାହାର ନୁହେଁ । ଏଗୁଡ଼ିକ ପ୍ରକୃତିର ନିୟମ— ଆସେ, ଯାଏ; କିନ୍ତୁ ଆମ୍ଭେ ମୁକ୍ତସାକ୍ଷୀ ସ୍ୱରୂପ ।

—ବିବେକାନନ୍ଦ—

## ଦୟା ଓ ମାୟା

'ମୋର ଜିନିଷ' 'ମୋର ଜିନିଷ' କରି କୌଣସି ପଦାର୍ଥକୁ ଭଲ ପାଇବାର ନାମ ମାୟା । ସମସ୍ତଙ୍କୁ ଭଲ ପାଇବାର ନାମ ଦୟା । ସମସ୍ତଙ୍କୁ ଭଲପାଇବା ଦୟାରୁ ହୁଏ, ଭକ୍ତିରୁ ହୁଏ । ମାୟାରେ ମନୁଷ୍ୟ ବଦ୍ଧ ହୋଇଯାଏ, ଭଗବାନଙ୍କଠାରୁ ବିମୁଖ ହୋଇଯାଏ । ଦୟାରୁ ଈଶ୍ୱର ଲାଭ ହୁଏ । ଶୁକଦେବ ନାରଦ ପ୍ରଭୃତି ଦୟା ରଖିଥିଲେ ।

ମାୟା ବଳେ କୋଟି ସୂର୍ଯ୍ୟ କୋଟି ଚନ୍ଦ୍ର ତାରା
କୋଟି କୋଟି ବ୍ରହ୍ମାଣ୍ଡ ଯେ ହୋନ୍ତି ଅମ୍ବର ।
ମାୟାରେ ଧରନ୍ତି ଗ୍ରହ ମାୟାରେ ବିଧାତା
ବିମୋହିତ ମାୟାବଳେ ଶିବ ଯେ ଅଶାନ୍ତା ।
ମାୟାବଳେ ଶୋଭାପାନ୍ତି ଗଗନ ପବନ
ମାୟାବଳେ ଜଳ ବର୍ଷା କରୁଥାଏ ଘନ ।
ମାୟାରେ ସାଗର ଧୈର୍ଯ୍ୟ ରହିଛି ସଂସାର
ମାୟାରେ ଅଛନ୍ତି ପିତା ଯେ ସୋଦର ।
ସ୍ତ୍ରୀ ପୁତ୍ର କନ୍ୟା ଭାଇ ଭଗ୍ନୀ ମାୟାବଳେ
ବାନ୍ଧି ରଖିଛନ୍ତି ଏହି ମାୟାର ସଂସାରେ ।
ମାୟାରେ ଯେ ଛଟପଟ ହୁଅନ୍ତି ସକଳେ
କୋଟି କୋଟି ମୀନ ଯେହ୍ନେ ଅଗାଧ ସାଗରେ ।
ସେହି ମାୟାମୟଙ୍କର ମାୟା ଅଗୋଚର
ତାକୁ ବର୍ଣ୍ଣିବାକୁ ଶକ୍ତି ଜଗତେ କାହାର ।
କୋଟି ସରସ୍ୱତୀ ଲକ୍ଷ ଲକ୍ଷ କୋଟି ନରେ
ମାୟା ବର୍ଣ୍ଣି ନ ପାରିବେ ଯେତେ ଇଚ୍ଛା କଲେ ।
କୋଟିଏ ବିଧାତା ଇଚ୍ଛା କରିବେକ ଯେବେ
ମାୟା ଅନ୍ତ ନ ପାଇବେ ଲକ୍ଷଯୁଗେ ଲବେ ।
ଏପରି ମାୟାସାଗର ବ୍ରହ୍ମାଣ୍ଡ ଈଶ୍ୱର
ମାୟାରେ ମୋହିତ କରିଛନ୍ତି ଏ ସଂସାର ।

## ମାୟା କେଉଁ କେଉଁ ସ୍ଥାନରେ କିପରି ଭାବରେ ଥାଏ ।

ସେ ମାୟା ପୁରୁଷ କଥା ଶୁଣ ଅରେ ବାବା
ସେ ଯେପରି ଯେଉଁଠାରେ ଥାଏ ତା କହିବା ।
ମହାଜନ ଘରେ ଥାଏ କଉଡ଼ି ରୂପରେ
ଭୁଲାଇ ପକାଏ ପ୍ରାଣୀ ସଦା ଲାଳସାରେ ।
ନାରାଚ ରୂପରେ ଥାଇ କ୍ଷତ୍ରିୟଙ୍କ ଘରେ
ପେଶନ୍ତେ ପ୍ରାଣୀଙ୍କି ନାଶଯାଏ ସେ ଧନୁରେ ।
ରାଜାଙ୍କର ଘରେ ଥାଏ ହୋଇ ପାଟରାଣୀ
ସେ ମାୟା ଦାଉଁ ବର୍ତ୍ତିବେ ନାହିଁ ନୃପମଣି ।
ଚୌଷଠି ରୋଗ ରୂପରେ ମାୟା ଦେହେ ଥାଇ
କ୍ଷଣକରେ ମନ କଲେ ପ୍ରାଣୀଙ୍କି ନାଶଇ ।
ମାୟାଟି ଲୋଭ ରୂପରେ ସବୁ ହୃଦେ ବସେ
ପକାଇ ନାନାମାର୍ଗରେ ବେଳସରି ନାଶେ ।
ମାୟା ହୀରା, ନୀଳା, ମୋତି, ମାଣିକ୍ୟ ସ୍ୱରୂପେ
ସୁବର୍ଣ୍ଣ ସ୍ୱରୂପୀ ହୋଇ ସୃଷ୍ଟି ଯାକ ବ୍ୟାପେ ।
ମାୟାଟି ପଦାର୍ଥ ବୋଲି ନ ଜାଣନ୍ତି କେହି
ପଦାର୍ଥ ଥିବା ଠାବରେ ସବୁ ହୃଷ୍ଟ ହୋଇ ।
ରାଜାହିଁ ବନ୍ଧନଏ ବା ଅଗ୍ନି ଖାଇଯାଏ
ଚୋର ବନ୍ଧନଏ ଅବା ଶତ୍ରୁ କରେ କ୍ଷୟେ ।
ମାୟାଟି ଅବିଦ୍ୟା କଥା ବହୁତ କରଇ
ମାୟାକୁ ଜିଣି କାର୍ଯ୍ୟ ନ କରିପାରେ କେହି ।
କାମିନୀ ଶୀତ ଦାଢ଼ରେ ପଡ଼ିହୁଏ ମୋହି
ଏପରି ମାୟା ପୁରୁଷ ନର ପ୍ରାଣ ଖାଇ ।

——— —ନୃସିଂହ ପୁରାଣ—

# ମଦ, ଗର୍ବ, ଅହଂକାର

ଅହଂକାର କଥାଗୁଡ଼ାକ ବେଶି ଦିନ ସ୍ଥାୟୀ ନୁହେଁ । ଏ ନାଶ୍ୱର ଶରୀରରେ ଯେ ଯାହା ଅହଂକାର କରୁ ପଛକେ, ମୃତ୍ୟୁ ଆସି ଦିନେ ସକଳ ଅହଂକାର ଚୂର୍ଣ୍ଣ କରିଦେବ; ଏ କଥା ଚିନ୍ତା କଲେ ମନରୁ ଅହଂକାର ଚାଲିଯାଏ ।

ନିଜ ପ୍ରଶଂସା ଶୁଣିବ ନାହିଁ । ଶୁଣିଲେ ମନରେ ଅହଂକାର ଆସେ । ତେଣୁ ସାଧୁମାନେ ନିଜ ଗୁଣକୀର୍ତ୍ତନ ହେଉଥିବା ସ୍ଥାନରୁ ସବୁବେଳେ ଦୂରରେ ରହନ୍ତି ।

ମନରେ ଅହଂକାର ଆସିଲ ମାତ୍ରେ ଆକାଶକୁ ଚାହିଁବ । ଅସୀମ ଅନନ୍ତ ଆକାଶର ତୁଳନାରେ ମାନବ ଯେ କେଡ଼େ କ୍ଷୁଦ୍ର, ଉପଲବ୍ଧି କରିପାରିଲେ ମନରେ ଅହଂକାର ସ୍ଥାନ ପାଇପାରିବ ନାହିଁ । ଧନ, ମାନ, ଜ୍ଞାନ, ଧର୍ମ, ଶୌର୍ଯ୍ୟ କୌଣସି ବିଷୟରେ ହେଲେ ନିଜେ ସମସ୍ତଙ୍କଠାରୁ ଶ୍ରେଷ୍ଠ ବୋଲି ଗର୍ବ କରିବା ଉଚିତ ନୁହେଁ । ମନୁଷ୍ୟ ସେତେ ଦୂର ଅନ୍ଧ ନ ହେଲେ ଏପରି ଭାବେ ନାହିଁ । କେହି କୌଣସି ବିଷୟରେ ପୃଥିବୀରେ ସର୍ବଶ୍ରେଷ୍ଠ ହେଲେ ମଧ୍ୟ କେତେକ ବିଷୟରେ ସେ ଯେ ଅନ୍ୟ ଲୋକଙ୍କଠାରୁ ନିକୃଷ୍ଟ—ଏକଥା କେହି ଅସ୍ୱୀକାର କରିବେ ନାହିଁ । ଆମେ ନିଜ କ୍ଷୁଦ୍ର ସୀମା ମଧ୍ୟରେ ରହି ନିଜକୁ ବଡ଼ ଭାବୁ । ମାତ୍ର ସୀମା ପାର ହୋଇ ବାହାରକୁ ଦୃଷ୍ଟି ପକାଇଲେ ଦେଖିବା ଆମଠାରୁ ସହସ୍ର ଗୁଣରେ ଶ୍ରେଷ୍ଠ ଅସଂଖ୍ୟ ଲୋକ ଅଛନ୍ତି । ଗାଁରେ ବସି ଯେଉଁ ଲୋକ ନିଜକୁ ବଡ଼ ବୋଲି ଭାବେ, କୌଣସି ସହରକୁ ଗଲେ ତା'ର ସେ ମୋହ ତୁଟିଯାଏ ଏବଂ କୌଣସି ରାଜଧାନୀରେ ପହଞ୍ଚିଲେ ଦେଖେ, ସେ ଅନ୍ୟାନ୍ୟ

ଲୋକଙ୍କ ତୁଳନାରେ ଅତି ନଗଣ୍ୟ । ସେତେବେଳେ ଗାଁରେ ତା'ର ବଡ଼ତ୍ୱ କଥା ମନେ ପଡ଼ିଲେ, ଲାଜରେ ମୁଣ୍ଡ ତଳକୁ ନଇଁଯାଏ ।

ଅନ୍ୟ ଲୋକ ଆଦର ସମ୍ମାନ ପାଉଥିବାର ଦେଖିଲେ, ଅହଂକାରୀର ଦେହ ସହେ ନାହିଁ ; ସେ ବିଚାରେ, ଅନ୍ୟ କେହି ସମ୍ମାନ ପାଇଲେ ତା' ନିଜ ସମ୍ମାନ କମିଯିବ । ତେଣୁ ସେ ଈର୍ଷାରେ ଅସ୍ଥିର ହୋଇପଡ଼େ ଏବଂ ସେହି ଲୋକର ଗୌରବ ନାଶ କରିବାପାଇଁ ବିଷପୂର୍ଣ୍ଣ ହୃଦୟରେ ମନ୍ତ୍ରଣା କରେ ।

---

# ମାତ୍ସର୍ଯ୍ୟ

ମାତ୍ସର୍ଯ୍ୟର ଅନ୍ୟ ନାମ ପରଶ୍ରୀକାତରତା ବା ଈର୍ଷା । ତ୍ରିଭୁବନରେ ଏହାର ଅସାଧ୍ୟ କିଛି ନାହିଁ । କାର୍ଯ୍ୟ ମଧ୍ୟରେ ଦୋଷାନ୍ୱେଷଣ ତାହାର ପ୍ରଧାନତମ ପ୍ରିୟକାର୍ଯ୍ୟ ।

ମାତ୍ସର୍ଯ୍ୟବାନ୍ ଲୋକ ଚନ୍ଦ୍ରରେ କେବଳ କଳଙ୍କ, ଫୁଲରେ କୀଟ, ସମୁଦ୍ରରେ ଲବଣାମ୍ବୁ ଭିନ୍ନ ଅନ୍ୟ କିଛି ଦେଖେ ନାହିଁ ।

'ମହାଯାନା'ରେ ମାତ୍ସର୍ଯ୍ୟର ଅବିକଳ ଛବି ଅଙ୍କିତ ହୋଇଅଛି ।

ପରଦୋଷ ଚିନ୍ତା, ପରଦୋଷ କୀର୍ତ୍ତନ ଯାହାର ବ୍ୟବସାୟ ତା'ପରି ହତଭାଗ୍ୟ ଆଉ କେହି ନାହାନ୍ତି । ତା' ଅବସ୍ଥା କଥା ବିଚାରିଲେ ଦେହର ରୋମ ଠାକ୍ କରି ଉଠୁଛି । ଯେ ଚନ୍ଦ୍ରଙ୍କଠାରେ କଳଙ୍କ ଛଡ଼ା ଆଉ କିଛି ଦେଖେ ନାହିଁ, ଫୁଲଦେହରେ କୀଟ ଥିବା ଛଡ଼ା ଆଉ କିଛି ଥିବାର ଭାବିପାରେ ନାହିଁ, ପଦ୍ମରେ କଣ୍ଟା ଛଡ଼ା ଆଉ କିଛି ଚହ୍ନେ ନାହିଁ, ତା'ପରି ଦୁଃଖୀ ଏ ଜଗତରେ

ଅଜ କିଏ ଅଛି ? ଈର୍ଷାର ହୃଦୟ ସବୁବେଳେ ମେଘାଛନ୍ନ, କଣ୍ଟକାକୀର୍ଣ୍ଣ ଓ କ୍ଳେଦପୂର୍ଣ୍ଣ । ଭଗବାନ ସମସ୍ତଙ୍କୁ ଈର୍ଷା ହସ୍ତରୁ ରକ୍ଷା କରନ୍ତୁ, ଏହାହିଁ ଆମର କାମନା ।

ପରନିନ୍ଦା ମାତ୍ସର୍ଯ୍ୟର ପ୍ରଧାନ ସହଚର । ହୃଦୟରେ ମାତ୍ସର୍ଯ୍ୟ ଯେତକ ପ୍ରଭାବ ବିସ୍ତାର କରିବ, ଜିହ୍ୱା ସେତକ ପରନିନ୍ଦା ରଚନା କରିବ । ପରନିନ୍ଦା ପ୍ରବୃତ୍ତି ଲୋପ ପାଇଲେ ମାତ୍ସର୍ଯ୍ୟ ବଳେ ଦୂର ହୋଇଯିବ । ପରନିନ୍ଦା ଛାଡ଼ିବାପାଇଁ ଦୁଇଟି ଉତ୍କୃଷ୍ଟ ଉପାୟ ଅଛି:—(୧) ନିନ୍ଦୁକର ସବୁବେଳେ ନିଜ ଦୋଷଗୁଡ଼ିକ ମନେ ପକାଇବା ଉଚିତ । ଯେ ନିଜ ଦୋଷ ବିଷୟରେ ସବୁବେଳେ ସତର୍କ ଦୃଷ୍ଟି ଦେଇଥାନ୍ତି, ସେ କେବେ ପରନିନ୍ଦା କରିବାକୁ ଆଗ୍ରହ ପ୍ରକାଶ କରିବେ ନାହିଁ, ବରଂ ପରନିନ୍ଦା କରିବାକୁ ଗଲେ ଲାଜରେ ତାଙ୍କ ମୁହଁ ପାଣି ମୁହଁରେ ମରିବ । ସେ ପରଦୋଷ ଆଲୋଚନା କରିବେ କ'ଣ ? (୨) ପରର ଦୋଷ ନ ଦେଖି ଗୁଣ ଦେଖିଲେ ପରନିନ୍ଦା ପ୍ରବୃତ୍ତି ବଳେ କମିଯିବ ।



# ନାରୀ

୧ । ସ୍ତ୍ରୀମାନଙ୍କୁ ଚନ୍ଦ୍ର ଶୌଚପ୍ରଦାନ କରିଅଛନ୍ତି, ଗନ୍ଧର୍ବ ମଧୁର ବଚନ ଦେଇଅଛନ୍ତି ଏବଂ ଅଗ୍ନି ସମସ୍ତ ଦ୍ରବ୍ୟ ଅପେକ୍ଷା ପବିତ୍ର କରିଅଛନ୍ତି । ଅତଏବ ସ୍ତ୍ରୀମାନେ ସର୍ବଦା ପବିତ୍ର ।

—ଯାଜ୍ଞବଲ୍କ୍ୟ ସଂହିତା—

୨ । ଯେଉଁ ରମଣୀ ସର୍ବଦା ହୃଷ୍ଟଚିତ୍ତ, ଧୀର ସ୍ୱଭାବ, ସୌଭାଗ୍ୟଶାଳିନୀ, ରୂପ-ଲାବଣ୍ୟ-ସମ୍ପନ୍ନା, ଆଜ୍ଞାବର୍ତ୍ତିନୀ, ପୁତ୍ରବତୀ ଓ ମିଷ୍ଟଭାଷିଣୀ—ଏପରି ସ୍ତ୍ରୀ ବହୁଭାଗ୍ୟରୁ ମିଳେ ।

—ଯାଜ୍ଞବଲ୍କ୍ୟ ସଂହିତା—

୩ । ନାରୀକୁ ମୁଁ ସେବା ଓ ତ୍ୟାଗଧର୍ମର ଅବତାର ରୂପେ ପୂଜା କରି ଆସିଅଛି । ନିସ୍ୱାର୍ଥ ସେବା କରିବା ନାରୀଜାତିର ପ୍ରକୃତିଗତ ଗୁଣ ; ପୁରୁଷ କେବେ ଏଥିରେ ନାରୀଜାତିକୁ ବଳିଯାଇ ପାରିବ ନାହିଁ ; କେଉଁଠି କାହାକୁ କଷ୍ଟ ସହୁଥିବାର ଦେଖିଲେ ସ୍ତ୍ରୀର କୋମଳ-ପ୍ରାଣ ସଙ୍ଗେ ସଙ୍ଗେ ତରଳିଯାଏ ।

—ହରିଜନ ପତ୍ରିକା—ଗାନ୍ଧି ୮-୧୨-୩୬—

ଭାର୍ଯ୍ୟାର ସମାନ ଆଉ ବନ୍ଧୁ ନାହିଁ, ଭାର୍ଯ୍ୟାର ସମାନ ଆଉ ଗତି ନାହିଁ, ଇହଲୋକରେ ଧର୍ମସାଧନ ପକ୍ଷରେ ଭାର୍ଯ୍ୟାର ସମାନ ଆଉ ସହାୟ ନାହିଁ ।

—ମହାଭାରତ, ଶାନ୍ତି ପର୍ବ—୧୪୪।୧—

## ନାରୀଜାତି ମଧ୍ୟରେ ଉପଯୁକ୍ତ ପତ୍ନୀର ସ୍ଥାନ

ପତ୍ନୀ ଗୃହରେ ଲକ୍ଷ୍ମୀ ଏବଂ ନୟନର ଅମୃତବର୍ତ୍ତିକା ପରି । ପତ୍ନୀର ଗାତ୍ର ସ୍ପର୍ଶରେ ଶରୀରରେ ଅପାର ପୁଲକ ଖେଳିଯାଏ ଏବଂ ଆପଣାର ଶରୀରରେ ଚନ୍ଦନ ପରି ଶୀତଳତା ଆସେ । ପତ୍ନୀର

ବାହୁ ଆଲିଙ୍ଗନ ଶୀତଳ ମୁକ୍ତାମାଳା ପରି ବୋଧହୁଏ । ଏପରି ପତ୍ନୀ ସର୍ବଦା ଓ ସର୍ବ ପ୍ରକାରରେ ପ୍ରିୟତମା ।

—ଭବଭୂତି, ଉତ୍ତର ଚରିତ—

ପତି-ପତ୍ନୀ ଦହେଁ ସମାନ । ପୁରୁଷ ଯେପରି ଗୃହସ୍ୱାମୀ, ସ୍ତ୍ରୀ ସେହିପରି ଗୃହସ୍ୱାମିନୀ । ପତି-ପତ୍ନୀ ଭିନ୍ନ ନୁହନ୍ତି । ସେ ଦହେଁ ଶରୀରରେ ପୃଥକ ଥିଲେ ହେଁ ଏକାତ୍ମା । ପତ୍ନୀହିଁ ଗୃହ-ରାଜ୍ୟର ସାମ୍ରାଜ୍ଞୀ; ଉଭୟଙ୍କ ମଧ୍ୟରେ ପ୍ରଭୁ ଭୃତ୍ୟ ସମ୍ବନ୍ଧ ନାହିଁ । ଏକ ଅପରେକର ପ୍ରିୟତମ ସଖା ।

ପତ୍ନୀ ପୁରୁଷର ଅର୍ଦ୍ଧାଙ୍ଗ ଅଟେ । ଏହି ସଂସାରରେ ସବୁଠାରୁ ଶ୍ରେଷ୍ଠମିତ୍ର । ଭାର୍ଯ୍ୟା ଅଟେ ଧର୍ମପଥର ଭଗିନୀ ସଙ୍ଗିନୀ ଏବଂ ହିତକର କର୍ମରେ ମିତ୍ରପରି ସହାୟୀ । ପତ୍ନୀ ଅଟେ କାର୍ଯ୍ୟାଙ୍ଗୀ ପରି ସଙ୍ଗିନୀ ଏବଂ ଚକ୍ରବାକ ଚକ୍ରବାକୀ ପରି ସହଚାରିଣୀ ।

—ଅଥର୍ବ ବେଦ—

କାୟ ମନୋବାକ୍ୟରେ ସ୍ୱାମୀର ସେବା କରିବା ଛଡ଼ା ସ୍ତ୍ରୀ-ଜାତିର କଲ୍ୟାଣକର କାର୍ଯ୍ୟ ଆଉ କିଛି ନାହିଁ । ଏକଥା ହୃଦୟଙ୍ଗମ କରି ଯେ ନାରୀ ପତିସେବା କରେ, ତା' ଉପରେ ସବୁଦେବତା ଓ ମୁନିମାନେ ପ୍ରସନ୍ନ ହୁଅନ୍ତି ।

—ତୁଳସୀ ଦାସ—

(କ) ସ୍ତ୍ରୀ ହେଉଛି ତ୍ୟାଗର ମୂର୍ତ୍ତିମନ୍ତ ପ୍ରତୀକ । (ଗାନ୍ଧୀ)

(ଖ) ସ୍ତ୍ରୀ ପୁରୁଷର କିଙ୍କରୀଣୀ ନୁହେଁ—ସହଧର୍ମିଣୀ, ଅର୍ଦ୍ଧାଙ୍ଗିନୀ ଓ ମିତ୍ର । (ଗାନ୍ଧୀ)

(ଗ) ସାଂସାରିକ ଜୀବନକୁ ସ୍ତ୍ରୀମାନେ ସୁଖମୟ କରିଥାନ୍ତି । (ଗାନ୍ଧୀ)

(ଢ) ସଦାଚାରିଣୀ ଓ ଅଜ୍ଞାକାରିଣୀ ସ୍ତ୍ରୀ ମିଳିବା ପୁରୁଷ ପକ୍ଷରେ କମ୍ ଭାଗ୍ୟର କଥା ନୁହେଁ ।

(ଗାନ୍ଧୀ)

(ଣ) ପତିର ଦୁର୍ବଳତା ସମୟରେ ସାହାଯ୍ୟ କରିବା ହେଉଛି ସ୍ତ୍ରୀର ପ୍ରଧାନ କର୍ତ୍ତବ୍ୟ ।

(ଗାନ୍ଧୀ)

**a—Woman is the heart of man.**
**b—Woman is the flower of life.**
**c—Woman is the husband's treasury.**
**d—Wife is the key of the house.**
**e—Man's best possession is a loving wife.**

## ନାରୀ (ଅନ୍ୟଦିଗ)

ଜଗତରେ ମଣିଷର ଈଶ୍ୱରଙ୍କୁ ପାଇବା ବାଟରେ ଯେତେ ବିପଦ ବିଘ୍ନ ରହିଛି, ସବୁ ବିପଦ ଭିତରେ 'ଅର୍ଥ' ଆଉ 'ନାରୀ' ହେଲେ ସବୁଠୁ ଶ୍ରେଷ୍ଠ ବାଧା । ଏ ଦୁଇଟି ଭିତରେ ନାରୀ ଶ୍ରେଷ୍ଠ । ନାରୀ କଟାକ୍ଷରେ ମୁଗ୍‌ଧ ନ ହୋଇ କୌଣସି ନର ନାହିଁ କହିଲେ ବାହୁଲ୍ୟ ହେବନାହିଁ । ଦୁର୍ବାର କାମରିପୁ ଜ୍ୱାଳାରେ ସାଧୁ ଅସାଧୁ ସମସ୍ତେ ଅସ୍ଥିର ହୋଇ ପଡ଼ନ୍ତି ।

—ବିବେକାନନ୍ଦ—

### ସନ୍ନ୍ୟାସୀ ପକ୍ଷରେ କାମିନୀ-କାଞ୍ଚନ ତ୍ୟାଗ

ସନ୍ନ୍ୟାସୀ ସ୍ତ୍ରୀଲୋକର ଚିତ୍ରପଟ ସୁଦ୍ଧା ଦେଖିବେ ନାହିଁ । ସ୍ତ୍ରୀଲୋକ କିପରି ଜାଣ, ଯେପରି ଅଚାର ତେନ୍ତୁଳି । ଅଚାର ତେନ୍ତୁଳି

ମନେକଲେ ମୁହଁରୁ ପାଣିଗଡ଼େ; ସମ୍ମୁଖକୁ ଅଣିବାକୁ ହୁଏ ନାହିଁ । —ରାମକୃଷ୍ଣ ଦେବ—

କାମିନୀ-କାଞ୍ଚନ ହିଁ ମାୟା । ସାଧୁର ସ୍ତ୍ରୀଲୋକଠାରୁ ବହୁ ଦୂରରେ ରହିବା ଉଚିତ । ସେଠାରେ ସମସ୍ତେ ବୁଡ଼ିଯାନ୍ତି । ସେଠାରେ ବ୍ରହ୍ମାଦି ଦେବତା ପର୍ଯ୍ୟନ୍ତ ହତବୁଦ୍ଧି ।

ଯେପରି ଅଲକାତରା ଦାଅ ଘରରେ ଯେତେ ସାବଧାନ ହୋଇ ଚଳିଲେ ସୁଦ୍ଧା ଟିକିଏ ହେଲେ କେଉଁଠି କଳା ଲାଗିଯାଏ, ସେହିପରି ଯୁବତୀ ସ୍ତ୍ରୀଲୋକ ସହିତ ଆଳାପାଦି କଲେ ଟିକିଏ ହେଲେ ମନର ଚାଞ୍ଚଲ୍ୟ ଉପସ୍ଥିତ ହୁଏ ।

—ରାମକୃଷ୍ଣ ଦେବ—

କାଷ୍ଠ ପାଷାଣ ନାରୀରୂପେ ଥୋଇବ ଯତିଙ୍କ ସମୀପେ ।
ଯତିଏ ତା'ର ମୁଖଚାହିଁ ଚରଣ ଅଗ୍ର ଯେବେ ଛୁଇଁ ।
ମନ ମଜିବ ତାହାଙ୍କର ଏଣୁ ମନ୍ମଥ ନାମ ତାର ।

—ଭାଗବତ—

ସାଧୁମାନେ ନାରୀମାନଙ୍କଠାରୁ ଦୂରରେ ରହନ୍ତି । ତାହା ଯେ ନ କରନ୍ତି ତା'ର ଦୁର୍ଦ୍ଦଶାର ସୀମା ରହେନାହିଁ । ସ୍ୱୟଂ ଭଗବାନ କହନ୍ତି ଆତ୍ମବାନ୍ ବ୍ୟକ୍ତି ସ୍ତ୍ରୀ ଓ ସ୍ତ୍ରୀସଙ୍ଗୀ ପୁରୁଷଗଣଙ୍କ-ଠାରୁ ଦୂରରେ ରହି ନିରାପଦରେ ନିର୍ଜ୍ଜନ ସ୍ଥାନରେ ସମାସୀନ ହୋଇ ନିରଳସଭାବରେ ମୋର ଧ୍ୟାନ କରିବେ । ନାରୀ ସଙ୍ଗେ ଓ ନାରୀସଙ୍ଗୀ-ପୁରୁଷ ସଙ୍ଗେ ସଙ୍ଗ ହେଲେ ଯେପରି ଦୁଃଖୀ ହୁଏ, ସଂସାର ବନ୍ଧନ ହୁଏ, ସେପରି ଅନ୍ୟ କେଉଁ ସଂସର୍ଗରେ ହୁଏ ନାହିଁ । ସେଥିପାଇଁ ସାଧୁ ସାବଧାନ ।

ସ୍ତ୍ରୀ ସଙ୍ଗ ସ୍ତ୍ରୀ-ସଙ୍ଗୀଙ୍କ ସଙ୍ଗ
ଦୂରେ କରିବ ପରିତ୍ୟାଗ । —ଭାଗବତ—

ସ୍ତ୍ରୀଲୋକଙ୍କ ନିକଟରୁ ଭିକ୍ଷା ଆଣିଥିବା ଅପରାଧରେ ଶ୍ରୀ ଗୌରାଙ୍ଗ ଦେବ ହରିଦାସ ନାମକ ଜନୈକ ଭକ୍ତଙ୍କୁ ତ୍ୟାଗ କରିଥିଲେ ।

ମହାବୀର ନେପୋଲିଅନ ବାଲ୍ୟକାଳରେ ସ୍ତ୍ରୀଲୋକ ସମ୍ବନ୍ଧରେ ବଡ଼ ସାବଧାନ ଥିଲେ ।

ଯୀଶୁଖ୍ରୀଷ୍ଟ କହିଅଛନ୍ତି—ମନକୁ କହିବ, ନା ମୁଁ କୌଣସି ସ୍ତ୍ରୀଲୋକଙ୍କ ଅଙ୍ଗକୁ ଅନାଇବି ନାହିଁ । ଏହା ମୋର ଦୃଢ଼ ସଂକଳ୍ପ । ଯେ କେହି ସ୍ତ୍ରୀ ପ୍ରତି କାମଭାବରେ ଦୃଷ୍ଟିପାତ କରେ ସେ ତାହା ସଙ୍ଗେ ମନେ ମନେ ବ୍ୟଭିଚାର କରେ ।

—ବାଇବେଲ୍—

ସ୍ତ୍ରୀରି ମାନଙ୍କର ବଚନକୁ କାନରେ
ନ ଶୁଣିବ, ନ ଚାହିଁବଟି ନୟନରେ ।
ସ୍ତ୍ରୀରିକୁ ଚାହିଁଲେତ କାମହୁଏ ଗୋଟି
ଏଥିକି ସବୁବେଳେ ଦେଇଥିବ ଦୃଷ୍ଟି ।
ଦୁଧରୁ ଯେଉଁ ରୂପେ ଘିଅ ଉପୁଜଇ
ସେହିରୂପେ କାମ ଦେଖି ଶୁଣି ଜନମଇ ।
ଏହି ସକାଶୁଁ ଜାଣି ଶୂନ୍ୟକୁ ଇନ୍ଦ୍ରିୟ
ବୋଲିକରି କହନ୍ତି ସର୍ବ ଋଷିଚୟ । —ଭକ୍ତବଚନ

## ନାରୀର ଚରିତ

ମହାତ୍ମା ତୁଳସୀ ଦାସ କହନ୍ତି "ନାରୀର ଚରିତ ଅଗାଧ, ଅଗମ୍ୟ ଓ ଦୁଷ୍‌ପ୍ରବେଶ୍ୟ" । ନିଜର ପ୍ରତିବିମ୍ବ ଦର୍ପଣରେ ଦେଖି ହୁଏ, ମାତ୍ର ନାରୀର ଚରିତ କୌଣସିମତେ ଜାଣି ହୁଏ ନାହିଁ ।

**ଅଗ୍ନି କାହାକୁ ନ ପୋଡ଼େ ?**
**ସମୁଦ୍ର କାହାକୁ ନ ବୁଡ଼ାଏ ?**
**କାଳ କାହାକୁ ନ ଖାଏ ?**
**ନାରୀ ପ୍ରବଳା ହେଲେ କ'ଣ କରି ନ ପାରନ୍ତି ?**

ସ୍ତ୍ରୀକୁ ଅବଜ୍ଞା କରିବ ନାହିଁ ଓ ଅତି ମାତ୍ରାରେ ବିଶ୍ୱାସ କରିବ ନାହିଁ, ଗୋପନୀୟ ବିଷୟ କହିବ ନାହିଁ, ପୁଣି ଅଧିପତ୍ୟ କରାଇ ଦେବ ନାହିଁ । ଜନଗହଳି ସ୍ଥାନରେ ରଖାଇବ ନାହିଁ, ରାତ୍ରିକାଳରେ ଅପରିଚିତ ସ୍ଥାନରେ ତାକୁ ନେଇ କେଉଁଆଡ଼େ ବୁଲିବ ନାହିଁ । —ମନୁ—

ଯେଉଁ ସ୍ତ୍ରୀ ପାପକର୍ମରତା, ନିଷ୍ଠୁରସ୍ୱଭାବା, ସ୍ୱାଧୀନା, କୁଚରିତ୍ରା, ନିଜ ପତିକୁ ପରାଭବ କରିବାପାଇଁ ଚେଷ୍ଟା ପ୍ରଦର୍ଶନ କରେ—
ଏପରି ସ୍ତ୍ରୀ ବହୁ ପାପ ଫଳରେ ମିଳିଥାଏ ।
—ଯାଜ୍ଞବଲ୍କ୍ୟ ସଂହିତା—

ବିବାହିତା ସ୍ତ୍ରୀକୁ ବେଶିଦିନ ବାପଘରେ ରଖିବ ନାହିଁ ।
ଯୁବା ଝିଅ, ତିତଲି ଘିଅ
ବିନା ନିଅଁରେ ଦହନ୍ତି ଦେହ ।
ଝିଅ-ଘିଅ, ବହୁତ ଦିନ ରହିଲେ ସମ୍ଭାଳି ହୁଏ ନାହିଁ ।
କାଣୀ, କୁଜୀ, ଛୋଟିକୁ ବିବାହ କରିବ ନାହିଁ ।
ଯୋରୁ (ସ୍ତ୍ରୀ) ଗୋରୁ ଧାନ
ଏ ତିନି ନଜର ଗଜରାମ
ଅଶ୍ୱ (ସାଇକେଲ୍), ଅସ୍ତ୍ର, ଅବଳା
(ଏହାଙ୍କୁ) ଉଧାର ନ ଦେବ ରେ ବଳା ।
— ପ୍ରବାଦ-ବଚନ—

## —ପୁରୁଷ ଓ ନାରୀ ଦୁହିଁଙ୍କ ଆସନ ସମାନ ହେଲେହେଁ ଏକ ନୁହେଁ—

ଦୁହେଁ ଗୋଟିଏ ଅତୁଳନୀୟ ଯୁଗ୍ମ । ଏକ ଅପରର ପରିପୂରକ । ପୁରୁଷ ପରିବାରର ଭରଣପୋଷଣର ଭାର ନେବ, ସ୍ତ୍ରୀ ପରିବାରର ଅଭ୍ୟନ୍ତରୀଣ ପରିଚାଳନା କରିବ । ଏହାଦ୍ୱାରା ଉଭୟେ ଉଭୟର ପରିପୂରକ ହେବେ । —ଗାନ୍ଧିବାଣୀ—

ଜୀବନର ପ୍ରତ୍ୟେକ କ୍ଷେତ୍ରରେ ନାରୀ ପୁରୁଷ ସହିତ ପ୍ରତି-ଯୋଗିତା କରିବା ଉଚିତ ନୁହେଁ । ନାରୀର ପ୍ରତିଯୋଗିତା ଶକ୍ତି ଥିଲେ ମଧ୍ୟ ପୁରୁଷଙ୍କୁ ଅନୁକରଣ କଲେ, ତା'ର ସେବା ସେତେ ମହତ୍ ହୋଇ ପାରିବ ନାହିଁ ।

ମୁଁ ଯେଉଁ ନୂଆ ସମାଜର କଳ୍ପନା କରୁଅଛି ତହିଁରେ ଆଂଶିକଭାବରେ ନାରୀକୁ ଶ୍ରମ କରିବାକୁ ହେବ; କିନ୍ତୁ ନାରୀର ମୁଖ୍ୟ କର୍ତ୍ତବ୍ୟ ହେବ ଘର ସମ୍ଭାଳିବା ।

—ଗାନ୍ଧି ବାଣୀ—

ବିଜାତୀୟ ଆଦର୍ଶରେ ସଂସ୍କାରର ଚେଷ୍ଟା ନ କରି ହିନ୍ଦୁ ରମଣୀମାନଙ୍କୁ ଜାତୀୟ ପଦ୍ଧତିରେ ଶିକ୍ଷା ପ୍ରଦାନ କରିବା ଆଶୁ କର୍ତ୍ତବ୍ୟ ।

ସେମାନେ ସୁଶିକ୍ଷିତା ହେଲେ ନିଜର ଭଲ ମନ୍ଦ ନିଜେ ଠିକ୍ କରିନେବେ । ଧର୍ମକୁ କେନ୍ଦ୍ରକରି ସ୍ତ୍ରୀଶିକ୍ଷାର ପ୍ରଚାର କରିବାକୁ ହେବ । ଧର୍ମହୀନ ହେଲେ ସେଥିରେ ଗଲତ୍ ନିଶ୍ଚେ ରହିବ ।

—ସ୍ୱାମୀ ବିବେକାନନ୍ଦ—

ସ୍ୱାମୀ ଶ୍ରୀ ସୀତାରାମ ଦାସ ଓଁକାରନାଥଙ୍କ ଭାଷାରେ— ହିନ୍ଦୁ କୁଳସ୍ତ୍ରୀ ଯଦି ଆଚାର ବ୍ୟବହାର ଛାଡ଼େ, ତାକୁ ସେଥିପାଇଁ ସର୍ବଦା ନାନାଦି ଯନ୍ତ୍ରଣା ଭୋଗିବାକୁ ପଡ଼େ । ପୁଅ

ଙ୍ଗିଅଙ୍କଠୁଁ, ସ୍ୱାମୀଠୁଁ କେବଳ ଯନ୍ତ୍ରଣା ପାଇବା ଧ୍ରୁବ ସତ୍ୟ । ଏ ଦେଶ ସୀତା ସାବିତ୍ରୀଙ୍କ ଦେଶ । ଏଠାରେ ଯଥେଚ୍ଛାଚାରପାଇଁ ବିଷମୟ ଫଳ ଭୋଗିବାକୁ ହୁଏ—ବିଷଫଳ ଫଳେ । ଦଣ୍ଡ ମଧ୍ୟ ଆରମ୍ଭ ହୋଇଯାଇଛି—ନାନା ବିଚିତ୍ର ପ୍ରକାର ସ୍ତ୍ରୀ ବ୍ୟାଧି ଆକ୍ରମଣ କରୁଛି, ଅସଂଯମୀ ପୁରୁଷଦଳ କେତେପ୍ରକାର ରୋଗ ଭୋଗୁଛନ୍ତି—ମୃତ୍ୟୁ ଲକ୍ଷଣ ପ୍ରକାଶ ହେବା ଆଗରୁ ମରି ଯାଉଛନ୍ତି । ବସୁ ବସୁ, ଗୁଳି ଗୁଳି, ଠିଆ ହେଉ ହେଉ ମରୁଛନ୍ତି । ଏହା ହେବ ନାହିଁ ତ କ'ଣ ହେବ ? ଯେଉଁମାନଙ୍କ ଦେହ ଯେ ଉପାଦାନରେ ତିଆରି ତା'ର ଓଲଟା ଆଚରଣ କଲେ ଦଣ୍ଡ ପାଇବ ନାହିଁ ?

## ସତୀତ୍ୱ ଓ ପ୍ରେମ ବିବାହ

**(Love marriage)**

ସତୀତ୍ୱ ହେଉଛି ଜାତିର ଜୀବନୀଶକ୍ତି । ଅସତୀତ୍ୱର ମଧ୍ୟଦେଇ ଜାତିର ବିନାଶ ସମ୍ଭବ—ଏହା କ'ଣ ଇତିହାସରେ ତୁମ୍ଭେ ଦେଖିନାହଁ ? ଯେତେବେଳେ ଜାତୀୟ ଜୀବନରେ ଏହା ପ୍ରବେଶ କରେ, ଜାତିର ସମ୍ମୁଖରେ ଅଧଃପତନ ଦେଖାଯାଏ । ଏସବୁ ଦୁଃଖର ସୀମା କେଉଁଠି ?

ଯଦି ପିତା ଓ ମାତା ନିଜ ନିଜ ସନ୍ତାନମାନଙ୍କପାଇଁ ପାତ୍ର ବା ପାତ୍ରୀ ନିର୍ବାଚନ କରନ୍ତି, ତାହାହେଲେ ଏହି ତଥାକଥିତ ପ୍ରେମାନୁରାଗ ଦୋଷ ନିବାରିତ ହେବ । ଭାରତର କନ୍ୟାମାନେ ଭାବୁକତା ଅପେକ୍ଷା ଅଧିକ କାର୍ଯ୍ୟକୁଶଳା । ସେମାନଙ୍କ ଜୀବନରେ କଳ୍ପନାପ୍ରିୟ ଅଧିକ ସ୍ଥାନ ପାଏ ନାହିଁ । ଏସବୁସତ୍ତ୍ୱେ ଯଦି ଲୋକେ ନିଜ ନିଜର ସ୍ୱାମୀ ବା ସ୍ତ୍ରୀ ନିଜେ ନିଜେ ନିର୍ବାଚନ କରନ୍ତି, ତଦ୍ଦ୍ୱାରା କଦାପି ଅଧିକ ସୁଖ ମିଳେ ନାହିଁ । ଭାରତର

ନାରୀମାନେ ବେଶ୍ ସୁଖୀ, **ସ୍ତ୍ରୀ-ସ୍ୱାମୀ** ପରସ୍ପର ଭିତରେ ପ୍ରାୟ କଳହ କରନ୍ତି ନାହିଁ ।

ପକ୍ଷାନ୍ତରେ ଯୁକ୍ତରାଜ୍ୟରେ ଯେଉଁଠାରେ ସ୍ୱାଧୀନତାର ପ୍ରାଚୁର୍ଯ୍ୟ ବିଦ୍ୟମାନ, ସେଠାରେ ସୁଖୀ ପରିବାର ପ୍ରାୟ ନାହିଁ ବୋଲି କହିଲେ ଚଳେ । ସୁଖୀ ପରିବାର ଅତି ସାମାନ୍ୟ ପରିମାଣରେ ଥିଲେ ସୁଦ୍ଧା, ଅସୁଖୀ ପରିବାର ଓ ଅସୁଖକର ବିବାହର ସଂଖ୍ୟା ଏତେ ଅଧିକ ଯେ ତାହା ବର୍ଣ୍ଣନାତୀତ । ମୁଁ ଯେଉଁ ସଭାକୁ ଯାଉଛି ସେଠାରେ ଉପସ୍ଥିତ ଥିବା ଏକ ତୃତୀୟାଂଶ ସ୍ତ୍ରୀଲୋକ ନିଜ ନିଜ ସ୍ୱାମୀ ଓ ପିଲାମାନଙ୍କୁ ପରିତ୍ୟାଗ କରିଥିବାର ଦେଖିଛି ।

—ଜ୍ଞାନଯୋଗ-ସ୍ୱାମୀ ବିବେକାନନ୍ଦ—

## ପ୍ରେମ-ବିବାହ-ରେଜେଷ୍ଟ୍ରି ବିବାହ

## (Love marriage & Registered marriage)

ଋଷିଙ୍କ ବଚନ ହୋଇଲା ପୁରୁଣା
ରଦ୍ଦ ହେଲା ବେଦବାଣୀ
ପାଶ୍ଚାତ୍ୟର ଶିକ୍ଷା ପୂରିବ ମୁଲକେ
ଧରିଲାଣି ଏବେ ଠାଣି ।
କଲେଜ ଭିତରେ ପଢ଼ନ୍ତି ଏକାଠି
ପୁଅ ଝିଅ ରୁଣ୍ଡ ହୋଇ
ଘର ପରିବାରେ ଘୋର ଦୁଃଖ ଆଜ
ପ୍ରେମର ବିବାହ ନେଇ ।
ବୟସ ଟପିଲେ ଝିଅଙ୍କ ଜୀବନ
ହୋଇଯାଏ ପଶୁସଢ଼ା ।

ଗ୍ରାମ ହୁଅଁ ସହର ଯୁବକ ଯୁବତୀ
ସବୁ ଅଜ ପାଠପଢ଼ା ।
ରେଜେଷ୍ଟ୍ରେସି ବିଭା ଥରେ କରିଦେଲେ
ଅବିଭା ଦୋଷଟି କଟେ
ଅମୁକ ଜାଗାରେ ସିଭିଲ ମ୍ୟାରେଜ୍
'ସମାଜ' ପେପର ରଟେ ।
ପ୍ରଣୟ ବିବାହେ ଦେବୀ ସ୍ୱରୂପିଣୀ
ଦାନବୀ ସାଜନ୍ତି ଅଜ
ଯଉତୁକ ମୁହେଁ କାଳିଅଁନ୍ତି ନିଅଁ
ନିଠୁରି ପାଷାଣୀ ସାଜ ।
ବିବାହ ସମସ୍ୟା ସମାଧାନ ପାଇଁ
କେହି ନ ପାଅନ୍ତି ବାଟ
ଅଧୁନା ବିଦୂଷୀ ଅଜର ସମାଜେ
ଦେଉଛନ୍ତି ଅସଲ୍ ଘାଟ ।

—କବି ବିଦ୍ୟୁତ୍‌ପ୍ରଭା—

---

## ଯୌତୁକ

ଶିକ୍ଷିତ ଯୁବକ ବିବାହପାଇଁ ଯୌତୁକ ଦାବୀ କରିବା ଅର୍ଥ, କେବଳ ଶିକ୍ଷାକୁ ଅବମାନନା କରିବା ନୁହେଁ, ସ୍ତ୍ରୀ ଜାତିର ଅବମାନନା କରିବା ।

ଯେଉଁ ଯୁବକ ଯୌତୁକ ଦାବୀ କରୁଛି, ତାକୁ ସମାଜରୁ ବାସନ୍ଦ କରିଦେବା ଉଚିତ । —ଗାନ୍ଧୀ—

## ନାରୀର କର୍ତ୍ତବ୍ୟ

ମହାତ୍ମା ଯୀଶୁଖ୍ରୀଷ୍ଟ କହନ୍ତି—

ଯୁବତୀ ସ୍ତ୍ରୀମାନେ ପରନିନ୍ଦୁକା ନ ହୋଇ ସୁଗୃହିଣୀ, ପତି-ବ୍ରତା, ସନ୍ତାନବତ୍ସଳା, ସୁବୁଦ୍ଧି, ସତୀ, ସୁଗୃହିଣୀ, ସୁଶୀଳା ଓ ଆପଣା ଆପଣା ସ୍ୱାମୀର ବଶୀଭୂତା ହେବାକୁ ଶିକ୍ଷା କରନ୍ତୁ । ହେ ସ୍ତ୍ରୀମାନେ ! ତୁମ୍ଭେମାନେ ଯେପରି ପ୍ରଭୁଙ୍କର ବଶୀଭୂତା ସେହିପରି ଆପଣା ଆପଣା ସ୍ୱାମୀର ବଶୀଭୂତା ହୁଅ । ସ୍ୱାମୀ ସ୍ତ୍ରୀର ମସ୍ତକ ସ୍ୱରୂପ, ସ୍ତ୍ରୀମାନେ ସବୁ ବିଷୟରେ ଆପଣା ଆପଣା ସ୍ୱାମୀର ବଶୀଭୂତା ହୁଅନ୍ତୁ । ସେହିପରି ସ୍ୱାମୀମାନେ ମଧ୍ୟ ଆପଣା ଆପଣା ସ୍ତ୍ରୀମାନଙ୍କୁ ନିଜ ନିଜ ଶରୀର ସଦୃଶ ପ୍ରେମ କରିବା ଉଚିତ । ଯେ ନିଜ ସ୍ତ୍ରୀକୁ ପ୍ରେମ କରେ ସେ ଆପଣାକୁ ପ୍ରେମ କରେ । କେହି ତ ଆପଣା ଶରୀରକୁ କେବେ ଘୃଣା କରେ ନାହିଁ, ମାତ୍ର ତାହାର ଭରଣପୋଷଣ ଓ ଲାଳନପାଳନ କରେ । ଆପଣା ଆପଣା ସ୍ତ୍ରୀକୁ ଆତ୍ମତୁଲ୍ୟ ପ୍ରେମ କର, ସେମାନଙ୍କ ପ୍ରତି କଟୁ ବ୍ୟବହାର କର ନାହିଁ । ଆଉ ସ୍ତ୍ରୀମାନେ ମଧ୍ୟ ଆପଣା ସ୍ୱାମୀକୁ ଭକ୍ତି କରନ୍ତୁ—ଯେ କେହି ଆପଣା ସ୍ତ୍ରୀକୁ ବ୍ୟଭିଚାର ଦୋଷ ବିନା ଅନ୍ୟ କାରଣରୁ ପରିତ୍ୟାଗ କରେ, ସେ ତାହାକୁ ବ୍ୟଭିଚାରିଣୀ କରାଏ ଓ ଯେ ଏହି ପରିତ୍ୟକ୍ତା ସ୍ତ୍ରୀକୁ ବିବାହ କରେ ସେ ବ୍ୟଭିଚାର କରେ ।

ନାରୀର କର୍ତ୍ତବ୍ୟ ହେଉଛି ସ୍ୱାମୀସେବା । ସ୍ୱାମୀହିଁ ତା’ର ଗୁରୁ ଓ ସ୍ୱାମୀ ହିଁ ତା’ର ଇଷ୍ଟ । ସ୍ୱାମୀଙ୍କୁ ଭଗବାନ ଜ୍ଞାନରେ ସେବା କରିବାକୁ ହେବ । ସର୍ବଶକ୍ତିମାନ ଭଗବାନଙ୍କର ଯେତେବେଳେ ଅନନ୍ତ ରୂପ ସେତେବେଳେ ‘ମୋ ସ୍ୱାମୀ ଯେ ସେହି ନୁହନ୍ତି’ ଏ କଥା ଧାରଣାକୁ ଆଣିବ କାହିଁକି ? ଆଦର୍ଶ ନାରୀ ପ୍ରତିଦିନ ଅତି

ପ୍ରତ୍ୟୁଷରୁ ସ୍ୱାମୀ ଶଯ୍ୟାତ୍ୟାଗ କରିବା ପୂର୍ବରୁ ନିଦ୍ରାରୁ ଉଠି ଗୃହ ସମାର୍ଜନ କରିବେ । ଅତିଥି ଅଭ୍ୟାଗତ ଓ ଭିକ୍ଷୁକମାନଙ୍କୁ ନିରାଶ ନ କରି ଯଥାଶକ୍ତି ସତ୍କାର କରୁଥିବେ । ଶକ୍ତି ନ ଥିଲେ ମିଷ୍ଟ ଓ ମଧୁର ବାକ୍ୟ କହି ନିଜର ଅକ୍ଷମତା ସେମାନଙ୍କୁ ଜଣାଇ ଦେବେ । ସର୍ବଦା କର୍କଶଭାଷିଣୀ ନ ହୋଇ ମଧୁରଭାଷିଣୀ ହେବେ । ନିଜ ପିଲାଙ୍କଠାରୁ ବଳି ପର ପିଲାଙ୍କୁ କିମ୍ବା ସପତ୍ନୀଙ୍କ ପିଲାମାନଙ୍କୁ ଆଦର ଯତ୍ନ କରୁଥିବେ । ପରନିନ୍ଦା ଓ ପରଚର୍ଚ୍ଚାରେ ମନ ଦେଇ ନ ଥିବେ; ପରପୁରୁଷଙ୍କୁ ନିଜର ବାପ ଭାଇ ପରି ଧାରଣା କରୁଥିବେ । ସମବୟସ୍କ ପୁରୁଷଙ୍କୁ ନିଜର ଭ୍ରାତୃତୁଲ୍ୟ ଜ୍ଞାନ କରି ତାଙ୍କର ପାଦକୁ ଅନାଇ ତାଙ୍କ ସହ କଥୋପକଥନ କରିବେ । ସମବୟସ୍କ ହୁଅନ୍ତୁ ଅଥବା ଅଧିକ ବୟସ୍କ ଯୁବକ ହୁଅନ୍ତୁ, ଏକାକିନୀ ତାଙ୍କ ସହିତ ସମ୍ଭାଷଣ କରିବେ ନାହିଁ ।

—ମହାତ୍ମା ତୁଳସୀ ଦାସ—

## ନାରୀର ନିନ୍ଦା ଓ ପ୍ରଶଂସା

ତାହା ଶୁଣି କହୁଛନ୍ତି ସନତ୍କୁମାର
ସ୍ତ୍ରୀଙ୍କ ଚରିତ ଅଟେ ଦେବେ ଅଗୋଚର ।
ମାନବ, ଗନ୍ଧର୍ବ, ଦେବ, ନାଗ ବା କିନ୍ନର,
ଋଷି, ଯତି, ସିଦ୍ଧ, ଦ୍ୱିଜ ଆଦି ଯେତେ ନର ।
ସ୍ତ୍ରୀଙ୍କ ଚରିତ ଜାଣିବାକୁ ନୁହନ୍ତି ସକ୍ଷମ
ହୁତାଶନ ପ୍ରାୟ ଅଟନ୍ତି ଯେ ସ୍ତ୍ରୀଙ୍କ ଜାଣ ।
ନିମିଷକେ ଦାହ କରି ପାରିବେ ସକଳ
ପୁନଃ ଅଟନ୍ତି ଯେସନ୍ତେ ଭାଗିରଥୀ ଜଳ ।

ପତ୍ନୀ ଶାନ୍ତ ଅପ୍ରମଦାତ୍ମକ ଜଗତେ
ଅମୃତ କ୍ଷଣକେ ବିଷ ହୁଅଇ ସ୍ବହାନ୍ତେ ।
ଅତ୍ୟନ୍ତ ଚଞ୍ଚଳ ପୁଣି ଅଛନ୍ତି ଯେ ଧୀର
ଯେତକ କୋମଳ ନାରୀ ସେତକ ନିଷ୍ଠୁର ।
ଯେଉଁ ପରି ଜ୍ଞାନୀ ସେହୁ ମୂର୍ଖ ତହୁଁ ବଳି
କୃତଘ୍ନ ଅପର ଯେ ଅଛନ୍ତି ଦୋଷୀ ।

ମହର୍ଷି ଦ୍ୱୈପାୟନ କହନ୍ତି:—

ଅଛନ୍ତି ସାଧବୀ ନାରୀ ପଣ୍ଡିତା ଅପର
ତାଙ୍କ ଯୋଗେ ସୁଖ ପାଉଥାନ୍ତି ସଦା ନର ।
ସୁଖ ଶାନ୍ତିବିଧାୟିନୀ ଅପ୍ରମଦାତ୍ମିନୀ
ଚରଣସେବିକା ଆଜ୍ଞାବହ ଯେ ରମଣୀ ।
ମାତର ଏପରି ସ୍ତ୍ରୀ ଅଛନ୍ତି ଦୁର୍ଲ୍ଲଭ
କଦାଚନ ଭାଗ୍ୟବଳେ ହୋଇଥାନ୍ତି ଲଭ୍ୟ ।
ଲକ୍ଷ୍ମୀସ୍ୱରୂପିଣୀ ସେହୁ ସାକ୍ଷାତ କମଳା
ଶକ୍ତିରୂପା ସରସ୍ୱତୀ ସ୍ୱାମୀ ଗଳାମାଳା ।
ତାଙ୍କ ଯୋଗେ ନର ପାଇଥାନ୍ତି ଗତି ମୁକ୍ତି
ତାଙ୍କ ବଳେ ଇହକାଳେ ମିଳେ ସଦା ଶାନ୍ତି ।
ତାଙ୍କପାଇଁ ନର ଭୁଲେ ଦୁଃଖ ସୁଖ ହେଲେ
ମାତର ଏପରି ନାରୀ ଅଳପ ସଂସାରେ ।
ହୁତାଶନ ଯେଉଁ ପରି ପତଙ୍ଗ ନାଶଇ
ମାତର ବହୁତ ହିତ କରେ ଅନ୍ୟପାଇଁ ।
ନାରୀ ବିନା ଏ ସଂସାର ନ ଚଳନ୍ତା ଭଲେ
ସେହିପରି ଜାଣ ନାରୀ ଲୋଡ଼ା ଏକାନ୍ତରେ ।
ସାକ୍ଷାତେ ଗରଳ ହେଲେ ଅବା କିସ ହେବ
ନାରୀ ବିନା ଏ ସଂସାର ଅଟେ ଅସମ୍ଭବ ।

ସ୍ନେହ, ପ୍ରେମ, ବାତ୍ସଲ୍ୟ ଯେ ମମତା ସହୃତେ
ନାରୀ ବଳେ ଲୋପ ପାଇଯିବ ତ କହିତେ ।
ମାତାରୂପେ ନାରୀ କରେ ଲାଳନ ପାଳନ
ସ୍ତ୍ରୀରୂପେ ଶକତି ଯେ କରଇ ପ୍ରଦାନ ।
ଆବର ରକତ ଶୋଷେ ହୋଇ ମାୟାବତୀ
ଧନଜନ ନାଶ କରେ ପୁଣି ଯେ ଶକତି ।
ମାତାରୂପେ ପୁରୁଷର ସୃଷ୍ଟିକର୍ତ୍ତ୍ରୀ ସେହୁ
ସ୍ନେହ ଦାନେ ବହୁ ଯତ୍ନେ ପାଳନ୍ତ ଏ ମହୀ ।
ପତ୍ନୀରୂପେ ସୃଷ୍ଟି ପୁଣି କରନ୍ତ ସର୍ଜନ
ପ୍ରେମଦାନେ ପୁରୁଷଙ୍କ ହରୁଥାନ୍ତ ମନ ।
କନ୍ୟାରୂପେ ପୁଣି ଭକ୍ତି ପ୍ରଦାନ କରନ୍ତ
ଭଗ୍ନି ଦେବୀ ସ୍ନେହ ପ୍ରେମ ପୁଣି ଜାଣ ଭକ୍ତି ।
ବୃଦ୍ଧକାଳେ ସେବିକା ସେ ବହୁ ହିତ କରେ
ନାରୀ ବିନେ ନର ରହି ନ ପାରେ ସଂସାରେ ।
ଅଜ୍ଞେୟ ନାରୀ ଚରିତ୍ର ଅଟେ ଉକ୍ତିବର
ଜାଣି ନ ପାରନ୍ତ ନିଜେ ବେଦ-ବ୍ରହ୍ମା ହର ।
ଯେତିକି ସୁନ୍ଦର ତେତେ ଜାଣ ଅସୁନ୍ଦର
ଯେତେ ଭଲ ମନ୍ଦ ତେତେ ସମ ଦୁଇକୂଳ ।
ପାପ ତ ଯେତିକି ପୁଣ୍ୟ ରହିଥାଏ ତେତେ
ଜ୍ଞାନୀ ଯେତେ ମୂର୍ଖ ପୁଣି ସେତିକି ଜଗତେ ।
ନିଷ୍ଠୁରୀ ଯେତିକି ଦୟାବତୀ ସେହୁପରି
ଏପରି ଅବୋଧ ଭବେ ଅଟନ୍ତ ତ ନାରୀ ।
ଜଗତରେ ନାରୀ ସର୍ବ ମାୟାର ଜଞ୍ଜାଳ
ନାରୀଯୋଗୁ ରସାତଳ ଯାଏ ଧରାତଳ ।

ନାରୀ ଯୋଗୁ ଅଧମ ଯେ ହୁଅଇ ତାପସ
ନାରୀ ଯୋଗୁ କେତେ ରାଜ୍ୟ ହୋଇଯାଏ ଧ୍ୱଂସ ।
ନାରୀ ଯୋଗୁ କେତେ ପ୍ରାଣୀ ହୁଅନ୍ତି ନିଧନ
ସେହି ନାରୀ ଯୋଗୁ ବୁଦ୍ଧି ହୁଅଇ ସଂଭ୍ରମ ।
ସେହି ନାରୀ ଯୋଗୁ ପୁଣି ବଂଶ ଯାଏ ନାଶ
ସେହି ନାରୀ ଯୋଗୁ ବଢ଼ୁଥାଏ କେତେ ଯଶ ।
ସେହି ନାରୀ ଯୋଗୁ ଅପବାଦ ବହୁ ମିଳେ
ସେହି ନାରୀ ଯୋଗୁ ଦେହେ ଶକତ ସଞ୍ଚରେ ।
ସେହି ନାରୀ ଯୋଗୁ ଶକ୍ତିହୀନ ହୁଏ ପ୍ରାଣୀ
ଏହିପରି ବିଜଡ଼ିତ ଅଟନ୍ତି ରମଣୀ ।

—ମହର୍ଷି ଦ୍ୱୈପାୟନ, ଶିବପୁରାଣ—

## ଗାର୍ହସ୍ଥ୍ୟ-ଜୀବନ

ଯେଉଁ ଯୁବକ ଗୃହସ୍ଥାଶ୍ରମର ପ୍ରକୃତ ସୁଖଭୋଗ କରିବାକୁ ଇଚ୍ଛା କରନ୍ତି, ସେ ପ୍ରଥମତଃ ନିଜେ ଉପଯୁକ୍ତ ଗୃହସ୍ଥ ହେବାଭଳି ଯତ୍ନ କରିବାରେ ହେଳା କରିବେ ନାହିଁ । ସୁଶିକ୍ଷା ଲଭିକରି ଧନୋପାର୍ଜନ କରିବାର ସମ୍ପୂର୍ଣ୍ଣ ଦକ୍ଷତା ଲଭି ହେଲା କି ନାହିଁ, ଏହାର ପରୀକ୍ଷା ହେଲା ପରେ କୌଣସି ସତ୍କୁଳୋଦ୍ଭବା ସୁଶୀଳା କନ୍ୟାର ପାଣିଗ୍ରହଣ କରିବା ବିହିତ ।

ସଚ୍ଚରିତ୍ରା ସ୍ତ୍ରୀଲାଭଠାରୁ ବଳି ସଂସାରରେ ଅଉ ଅନ୍ୟ କୌଣସି ସୁଖ ନାହିଁ ଏବଂ ଅସଚ୍ଚରିତ୍ରା ସ୍ତ୍ରୀଲାଭଠାରୁ ବଳି ଅଉ ଦୁଃଖ ନାହିଁ ।

ଆନନ୍ଦମୟ ଗୃହ ସ୍ୱର୍ଗତୁଲ୍ୟ । ପତିର ସକଳ କର୍ମରେ ପତ୍ନୀ ଯେପରି ସାହାଯ୍ୟ ଦେଇପାରେ ସେପରି ପରିବାରର ଅନ୍ୟ

କୌଣସି ବ୍ୟକ୍ତି ସାହାଯ୍ୟ ଦେଇ ପାରନ୍ତି ନାହିଁ, କାରଣ ଅନ୍ୟ କାହାକୁ ସେହିପରି ସୁଯୋଗ ମିଳି ନଥାଏ । ପତି ହିଁ ସ୍ତ୍ରୀର ସର୍ବସ୍ୱ ଅଟେ । ଏକମାତ୍ର ସାଧ୍ୱୀ ସ୍ତ୍ରୀ ଗୃହସ୍ୱାମିନୀ ପଦବାଚ୍ୟା । ସ୍ଥୂଳତଃ ଗୃହସ୍ଥାଶ୍ରମରେ ଦୁହିଁଙ୍କର ସମାନ ଅଧିକାର ଏବଂ ଏକକୁ ଅନ୍ୟର ସାହାଯ୍ୟ ଅତ୍ୟାବଶ୍ୟକ ।

ଗୃହସ୍ଥ ଓ ଗୃହିଣୀ ଉଭୟେ ମିଶି ଗୃହସ୍ଥାଶ୍ରମ ଧର୍ମ ପାଳନ କରନ୍ତି । ଏକର ଅଭାବରେ ଅନ୍ୟଦ୍ୱାରା ଏହି ଆଶ୍ରମବିଧି ପାଳିତ ହୋଇପାରେ ନାହିଁ । ପରସ୍ପର ସାହଚର୍ଯ୍ୟ, ସହାନୁଭୂତି, ପ୍ରସନ୍ନତା ଓ ମନୋଯୋଗ ଆବଶ୍ୟକ । ଯେଉଁ ଗୃହରେ ଭର୍ତ୍ତା ଓ ଭାର୍ଯ୍ୟା ପରସ୍ପର ପ୍ରତି ସର୍ବଦା ପ୍ରସନ୍ନ ରହନ୍ତି ସେହି ଗୃହର ନିଶ୍ଚୟ ଅଭ୍ୟୁଦୟ ହୁଏ । ଯଦି ସେମାନେ ପରସ୍ପର ପ୍ରତି ଅସନ୍ତୁଷ୍ଟ ଏବଂ ଅପ୍ରସନ୍ନ ରହନ୍ତି ତେବେ ସେହି ଗୃହରେ କଳହ ଜାତ ହୁଏ, ସୁଖ ନ ଥାଏ ।

ବିବାହ କରିବା ପୂର୍ବରୁ ସ୍ତ୍ରୀର ଦାୟିତ୍ୱ, ପୁତ୍ରର ଦାୟିତ୍ୱ, କନ୍ୟାର ଦାୟିତ୍ୱ, ପିତା-ମାତାଙ୍କର ଦାୟିତ୍ୱ, ବନ୍ଧୁବାନ୍ଧବଙ୍କର ଦାୟିତ୍ୱ ଇତ୍ୟାଦି ସମସ୍ତ ଦାୟିତ୍ୱ ସମ୍ପୂର୍ଣ୍ଣରୂପେ ହୃଦୟଙ୍ଗମ କରିବା ଉଚିତ । ତାହା ନ କରି ସମାଜକୁ ଭାରାକ୍ରାନ୍ତ ଏବଂ କଳଙ୍କିତ କରିବା ସୁଧୀଲୋକର କାର୍ଯ୍ୟ ନୁହେଁ । କେହି କେହି ବିବାହ କରି ସ୍ତ୍ରୀ ପୁତ୍ରଙ୍କୁ ପୋଷି ନ ପାରି ହାଟ ବସାଇ, ସେମାନଙ୍କୁ ବାଟରେ ଥୋଇ ବୈରାଗୀ ହୋଇ ଚାଲିଯାନ୍ତି । ଏମାନଙ୍କର ନା ହୁଏ ବୈରାଗ୍ୟ, ନା ହୁଏ ସଂସାର । ଅଶାନ୍ତିର ଶିର ସହଚର ହୋଇ ଏମାନଙ୍କୁ କାଳାତିପାତ କରିବାକୁ ହୁଏ । ବର୍ତ୍ତମାନ ସାମାଜିକ ବିଶୃଙ୍ଖଳା ଏ ସମସ୍ତ ଅନ୍ୟାୟର କାରଣ । ସାମାଜିକ ଶକ୍ତି ଏପରି ପ୍ରବଳ ହେବା ଉଚିତ ଯେ ଯେଉଁମାନେ

ସମର୍ଥ ନ ହେବେ, ସେମାନଙ୍କ ବିବାହରୂପ ଦାୟିତ୍ୱର ବ୍ୟବସ୍ଥା କେବେହେଁ ଦିଆଯିବ ନାହିଁ । ଏହିସବୁ କଥା ଭାବିଲେ ଯେ କି ଦୁଃଖ, କି ପରିତାପ ଏବଂ କି କଷ୍ଟ ହୁଏ, ତାହା ଅନୁଭବୀ ମାନେ ଜାଣିଥିବେ ।

—ଶ୍ରୀରାମକୃଷ୍ଣ ଉପଦେଶାମୃତ—

## ଗୃହସ୍ଥର କର୍ତ୍ତବ୍ୟ

ଗୃହସ୍ଥର କର୍ତ୍ତବ୍ୟ ଅଛି । ପିଲାମାନଙ୍କୁ ମଣିଷ କରିବାକୁ ହେବ, ସ୍ତ୍ରୀକୁ ଭରଣପୋଷଣ କରିବାକୁ ହେବ ଏବଂ (ନିଜର) ଅବର୍ତ୍ତମାନରେ ସ୍ତ୍ରୀର ଭରଣପୋଷଣର ଯୋଗାଡ଼ କରି ରଖିବାକୁ ହେବ । ତାହା ଯଦି ନ କର, ତେବେ ତୁମ୍ଭେ ନିର୍ଦ୍ଦୟ । ଶୁକଦେବାଦି ଋଷିମାନେ କହିଛନ୍ତି ଯାହାର ଦୟା ନାହିଁ, ସେ ମନୁଷ୍ୟ ନୁହେଁ ।

ସଂସାରନିର୍ବାହ ଶବସାଧନବତ୍ । ଏଠାରେ ଟିକିଏ କିଛି ତ୍ରୁଟି ହେଲେ ଆଉ ରକ୍ଷା ନାହିଁ । ଏ ଗୋଟାଏ କଥା, ପୁଣି ନିଜର ସ୍ତ୍ରୀ ପୁତ୍ରମାନଙ୍କ ପ୍ରତି ଦୟା ଆଉ ଗୋଟାଏ କଥା । ଯେଉଁମାନେ କହନ୍ତି ଯେ ଆମ୍ଭେମାନେ ଯାହା ଅର୍ଜନ କରିବୁ, ତାହା ଉଡ଼ାଇଦେଇ ଯିବୁ । ସେମାନଙ୍କର ଏତିକି ଭାବିବା ଉଚିତ ଯେ ଯୋଗ୍ୟପୁତ୍ର ଏବଂ ବିଷୟ ସମ୍ପତ୍ତି ଯଦି ନ ଥାଏ ଏବଂ କଣେ ଯଦି ଯାହା ଅର୍ଜନ କରେ ସେସବୁ ଉଡ଼ାଇଦିଏ, ତେବେ ତାହା ଅନ୍ତେ ତାହାର ପରିବାରର କି ଶୋଚନୀୟ ଅବସ୍ଥା ହେବ ? ସଂସାରରେ ଏ ଗୋଟାଏ ଅସହ୍ୟ ବିଭୀଷିକା । ଆଜି ମୁଁ ମର୍ତ୍ତ୍ୟଧାମ ପରିତ୍ୟାଗ କଲି, କାଲି ମୋର ସ୍ତ୍ରୀ ପୁତ୍ର ପଥର ଭିଖାରୀ ହୋଇ ଦ୍ୱାରେ ଦ୍ୱାରେ ବୁଲିବେ, ଏହାଠାରୁ ଆଉ ଭୀଷଣତର କାଣ୍ଡ କ'ଣ ହୋଇ

ପାରେ ? ସୁତରାଂ ନିଜର ଅର୍ଜନରୁ ଗୋଟିଏ ଭାଗ ସମୟ ଅସମୟ ସକାଶେ ସଞ୍ଚିତ କରିବା ଆବଶ୍ୟକ । ସନ୍ନ୍ୟାସୀ ପକ୍ଷରେ ସଞ୍ଚୟ ଯେପରି ଦୋଷାବହ, ସଂସାରୀପକ୍ଷରେ ସଞ୍ଚୟ ନ କରିବା ମଧ୍ୟ ସେହିପରି ଦୋଷାବହ । ଅନେକେ ସଂସାରରେ ଥାଇ ପୁତ୍ର କନ୍ୟା ଲାଭ କରି ପୁଣି ସନ୍ନ୍ୟାସୀର ଆଚରଣ କରିବାକୁ ଯାନ୍ତି । ଏମାନଙ୍କର ଅବସ୍ଥା ଯେ କି ଶୋଚନୀୟ, ତାହା ଅନୁଭବୀମାନେ ବୁଝି ପାରୁଥିବେ । ସୁତରାଂ ପ୍ରତ୍ୟେକ ବିଷୟୀର ଉଚିତ ଯେ ସେ ନିଜର ଅର୍ଜନର କିୟଦଂଶ ଭବିଷ୍ୟତ୍ ସକାଶେ ସଞ୍ଚୟ କରିବେ; କିନ୍ତୁ ତାହା ବୋଲି କୃପଣ ହେବା ଅଥବା ଅସଦୁପାୟରେ ଅର୍ଥ ଉପାର୍ଜନ କରିବା ଉଚିତ ନୁହେଁ ।

—ରାମକୃଷ୍ଣ ଉପଦେଶାମୃତ—

ଯାହାହେଉ ଆଦର୍ଶ ଗାର୍ହସ୍ଥ୍ୟ ଜୀବନ ଗଠନ କରିବା ସକାଶେ ପତିବ୍ରତା ସ୍ତ୍ରୀ ନିହାତି ଦରକାର । ନାରୀ ଉପଯୁକ୍ତ ନ ହେଲେ ପୁରୁଷ ଆଦର୍ଶ ଗୃହୀ ହୋଇପାରିବା ବଡ କଠିନ କଷ୍ଟ । ପୁରୁଷ ତ ସର୍ବଦା ଗୃହରେ ଉପସ୍ଥିତ ନ ଥିବ; ତେଣୁ ଅତିଥି, ଅଭ୍ୟାଗତ ବନ୍ଧୁ ବାନ୍ଧବ, ସନ୍ନ୍ୟାସୀ, ବ୍ରହ୍ମଚାରୀମାନଙ୍କର ସତ୍କାର-ସକାଶେ ନାରୀର ଯେ କେତେ ଦାୟିତ୍ୱ ତାହା ସମସ୍ତେ ଅନୁମାନ କରି ପାରୁଥିବେ ।

ଆଦର୍ଶ ଗୃହସ୍ଥ କହିଲେ—ସ୍ୱାମୀ ଓ ସ୍ତ୍ରୀ ଉଭୟଙ୍କୁ ଆଦର୍ଶଭାବରେ ଚଳିବାକୁ ହେବ । ଆଦର୍ଶ ଗାର୍ହସ୍ଥ୍ୟ ଜୀବନଯାପନ ସକାଶେ ଦରକାର ବୁଦ୍ଧିଯୋଗ, ଗୁରୁକୃପା, ସତ୍ ଅନୁଶୀଳନ ଓ ପତିବ୍ରତା ସାଧ୍ୱୀ ସ୍ତ୍ରୀ ।

ଆଦର୍ଶ ଗୃହୀ ଏପରିଭାବରେ ଚଳିବ ଯେ ଯେପରି ତା ସ୍ତ୍ରୀ କହିବ ମୋ ସ୍ୱାମୀଠାରୁ ସ୍ୱାମୀ ନାହିଁ, ବାପ କହିବ ମୋ ପୁଅ-

ଠାରୁ ପୁଅ ନାହିଁ, ଭାଇ କହିବ ମୋ ଭାଇଠାରୁ ଭାଇ ନାହିଁ, ପଡ଼ୋଶୀ କହିବ ମୋ ପଡ଼ୋଶୀଠାରୁ ପଡ଼ୋଶୀ ନାହିଁ, ରାଜା କହିବେ ମୋ ପ୍ରଜାଠାରୁ ପ୍ରଜା ନାହିଁ, ଇତ୍ୟାଦି । ଅର୍ଥାତ୍ ମୋହ୍‌ଉପରେ କ୍ରମାନ୍ୱୟେ ସମସ୍ତଙ୍କୁ ଆପଣାର କରିନେବାକୁ ହେବ । ତେଣୁ ଉପର୍ଯ୍ୟୁକ୍ତ କଥାଗୁଡିକ କି ପ୍ରକାର କ୍ରମରେ କୁହା ହୋଇଅଛି, ଲକ୍ଷ୍ୟ କରିବାର କଥା । ମୂଳଆଠାରୁ ଆରମ୍ଭକରି ରାଜା ପର୍ଯ୍ୟନ୍ତ ସମସ୍ତେ ଗୃହସ୍ଥାଶ୍ରମ କରୁଛନ୍ତି; କିନ୍ତୁ ସେ ପ୍ରକାର ଚଳିବାକୁ ଆଦର୍ଶ ଗୃହସ୍ଥ କୁହାଯାଏ ନାହିଁ । ସୃଷ୍ଟିରେ ମଣି ଗୁଚ୍ଛା ହେଲି ପରି ସମସ୍ତେ ଏକ ଆଦର୍ଶରେ, ଏକ ଉଦ୍ଦେଶ୍ୟରେ ଧାବିତ ହେବା ଦରକାର ।



## ଗୃହସ୍ଥାଶ୍ରମ

ମାନବଠାରେ ଅନୁକରଣ ଭାବ, ସହନଶୀଳତାଭାବ, ଧନ ସଞ୍ଚୟ ଭାବ, ଗ୍ରହଣ କରିବା ଭାବ, ଦାନ କରିବା ଭାବ, ପ୍ରଜନନ ଭାବ, ଆଶ୍ରୟ ଦାନ ଭାବ, ପୁଣ୍ୟ ଅର୍ଜନ ଭାବ, ଦେବତ୍ୱ ଅର୍ଜନ ଭାବ ଓ ଦ୍ୱିଜତ୍ୱ ଅର୍ଜନ ଭାବ ଇତ୍ୟାଦି ବହୁଭାବ ବା ଶକ୍ତି ଅଛି । ସେହି ଭାବଗୁଡ଼ିକ ଭଗବତ୍‌ମୁଖୀ କରାଇ ପାରିଲେ ଗାର୍ହସ୍ଥ୍ୟ ଜୀବନ ଯାପନ କରି ମଧ୍ୟ ଭଗବାନଙ୍କୁ ଲାଭ କରି ହେବ । ବରଂ କଠୋର ସନ୍ନ୍ୟାସ ବ୍ରତ ଅବଲମ୍ବନ କରି ଭଗବାନଙ୍କୁ ପାଇବା ଅପେକ୍ଷା, ଗୃହରେ ସୁଖ ସ୍ୱାଚ୍ଛନ୍ଦରେ ରହି ତାଙ୍କୁ ପାଇବା ମାନବର ସ୍ୱଭାବ ଅନୁକୂଳ ସାଧନା ହେବ । ତେଣୁ ଶ୍ରୀକୃଷ୍ଣ ଅର୍ଜୁନଙ୍କୁ ଏ ପ୍ରକାର ଯୋଗ ବା ଭାବ କାହିଁକି ନ ଧରିବୁ ବୋଲି ଉପଦେଶ ଦେଇଥିଲେ । —ଭଗବତ୍ ଗୀତା—

ମା'ର (ପୃଥିବୀର) ଆଶ୍ରୟରେ ସମସ୍ତ ଜନ୍ତୁ ଯେପରି ଜୀବିତ ଥାନ୍ତି, ସେହିପରି ଗୃହସ୍ଥାଶ୍ରମର ଆଶ୍ରୟରେ ଅନ୍ୟ ଆଶ୍ରମସବୁ ରହିଅଛି ।

ମନୁ ଗୃହସ୍ଥାଶ୍ରମକୁ ସାଗର ଏବଂ ଅନ୍ୟ ଆଶ୍ରମଗୁଡ଼ିକୁ ନଦୀ ବୋଲି କହିଛନ୍ତି :—

ସବୁ ଆଶ୍ରମରେ ଗୃହସ୍ଥାଶ୍ରମ ମୂଳ
ଆଉ ତିନି ଆଶ୍ରମ ଗଣ୍ଡି, ଡାଳ, ଫଳ ।

—ମହାଭାରତ—

## ସନ୍ନ୍ୟାସାଶ୍ରମ

ସନ୍ନ୍ୟାସ ଗ୍ରହଣ କରିବାର ସମୟ ଅଛି । ମନୁ ମଧ୍ୟ ବୁଝିଥିଲେ ଯେ, ସନ୍ନ୍ୟାସ ଆଶ୍ରମପାଇଁ ଲୋକଙ୍କର ଅତିରିକ୍ତ ପ୍ରବୃତ୍ତି ହେଲେ ସଂସାରର କର୍ତ୍ତବ୍ୟ ନଷ୍ଟ ହେବ ଓ ସମାଜ ପଙ୍ଗୁ ହୋଇ ପଡ଼ିବ । ତେଣୁ ମନୁ ସୀମା ନିର୍ଦ୍ଦେଶ କରି କହିଛନ୍ତି—

ଏ ମନୁଷ୍ୟ ଜନ୍ମ ହେବା ସଙ୍ଗେ ସଙ୍ଗେ ନିଜ ପିଠି ଉପରେ ଋଷି-ଋଣ, ପିତୃ-ଋଣ ଓ ଦେବ-ଋଣ ଏହି ତିନି ପ୍ରକାର ଋଣଭାର (କର୍ତ୍ତବ୍ୟ) ବହନ କରି ଆସିଥାଏ । ତେଣୁ, ବେଦାଧ୍ୟୟନଦ୍ୱାରା ଋଷି-ଋଣ, ପୁତ୍ରୋତ୍ପାଦନଦ୍ୱାରା ପିତୃ-ଋଣ ଏବଂ ଯଜ୍ଞକର୍ମଦ୍ୱାରା ଦେବ-ଋଣ ପ୍ରଥମେ ପରିଶୋଧ ନ କରି ସଂସାର ଛାଡ଼ି ସନ୍ନ୍ୟାସ ଗ୍ରହଣ କରିବା ଅସଙ୍ଗତ । ତଦ୍ଦ୍ୱାରା ଅଧୋଗତି ଲାଭ କରିବାକୁ ହେବ । ଯାହାର ଋଣ ରଖି ମରିବା ଦୁର୍ଗତି ବୋଲି ସ୍ୱୀକୃତ ହୋଇଥାଏ । —ମନୁ—

ଏଥିରୁ ଉପଲବ୍ଧି ହୁଏ ଯେ, ଗାର୍ହସ୍ଥ୍ୟ ଜୀବନ ଯଥାଶାସ୍ତ୍ର ସମ୍ପୂର୍ଣ୍ଣ କରି ପୁନି ସସ୍ତ୍ରୀକ କର୍ତ୍ତା ହେବା ପରେ ନିଜେ

ମୋକ୍ଷପରାୟଣ ହୋଇ ଆନନ୍ଦରେ ସଂସାରରୁ ନିବୃତ୍ତ ହେବ, ଏହାହିଁ ଏହି ଆଶ୍ରମ ବ୍ୟବସ୍ଥାର ମୂଳ କାରଣ ଥିଲା । ବିଦୁର ଧୃତରାଷ୍ଟ୍ରଙ୍କୁ କହିଛନ୍ତି—

ଗୃହସ୍ଥାଶ୍ରମରେ ପୁତ୍ରୋତ୍ପାଦନ କରି, ସେମାନଙ୍କୁ ଅଋଣୀ କରି, ସେମାନଙ୍କ ଜୀବିକାର ସୁବିଧା କରିଦେଇ ଏବଂ କନ୍ୟା-ମାନଙ୍କୁ ଯୋଗ୍ୟପାତ୍ରରେ ନ୍ୟସ୍ତ କରି ପରେ ବାନପ୍ରସ୍ଥ ହୋଇ ସନ୍ନ୍ୟାସ ଗ୍ରହଣ କରିବ ।

—ମହାଭାରତ—

## ସଂସାରରେ ରହି ମଧ୍ୟ ନିର୍ଲିପ୍ତଭାବରେ ରହିବା ସମ୍ଭବ ହୋଇପାରେ

ଶ୍ରୀ ରାମକୃଷ୍ଣଦେବ କହିଅଛନ୍ତି, "ସଂସାର କରିବାରେ ଦୋଷ ନାହିଁ—ମାତ୍ର ସଂସାରରେ ଦାସୀପରି ରହିବା ଦରକାର । ବାବୁଙ୍କଘରେ ଦାସୀ ଥାଏ ଓ ବାବୁଙ୍କଘରକୁ ମୋ ଘର, ବାବୁଙ୍କ ପିଲାଙ୍କୁ ମୋ ପିଲା ବୋଲି କହୁଥାଏ; ମାତ୍ର ମନମଧ୍ୟରେ ଥାଏ ଏ ଘର ଏ ପିଲାସବୁ ମୋର ନୁହନ୍ତି । ମୋ ପିଲା ମୋ ଘର ମୁଁ ଛାଡ଼ି ଆସିଅଛି । ପଦ୍ମପତ୍ରରେ ଜଳ ରହିବା ପରି ସଂସାରରେ ନିର୍ଲିପ୍ତ ଭାବରେ ରହିଲେ ହେଲା । ଅନିତ୍ୟ ପଦାର୍ଥପ୍ରତି ମମତା ବଢ଼ାଇବା ଉଚିତ ନୁହେଁ, କାରଣ ମରିଯିବାପରେ ସେ ସବୁ ସଙ୍ଗରେ ଯାଏ ନାହିଁ ।"

ପ୍ରଭୁ ରାମକୃଷ୍ଣ ଦେବଙ୍କର ଏହି ଉପଦେଶଟି ମଧ୍ୟରେ କି ମାଧୁର୍ଯ୍ୟ ପ୍ରଚ୍ଛନ୍ନଭାବରେ ରହିଅଛି, ତାହା ଭାବୁକମାନେ ବୁଝି ପାରିବେ । ଯେ ସଂସାରରେ ରହି ଠିକ ଠିକ ମନରେ ଧାରଣା କରି ପାରନ୍ତି ଯେ, ଭଗବାନ୍ ମାତୃରୂପେ ସ୍ନେହପସରା ନେଇ

ବସିଅଛନ୍ତି, ପିତୃରୂପେ ଅନ୍ନାଦି ଦାନ କରି ସ୍ନେହରେ ପାଳନ କରୁଅଛନ୍ତି, ଭ୍ରାତା-ଭଗିନୀରୂପେ କଷ୍ଟମୟ ଜୀବନକୁ ସ୍ୱାଚ୍ଛନ୍ଦ୍ୟମୟ କରିବାପାଇଁ ଚେଷ୍ଟା କରୁଅଛନ୍ତି, ମିତ୍ରରୂପେ ଉତ୍ସବ ଏବଂ ବ୍ୟସନ କାଳରେ ପାଖରେ ଠିଆ ହେଉଅଛନ୍ତି, ସେ ପ୍ରକୃତ ଧନ୍ୟ; ସଂସାର ତାହାଙ୍କ ପକ୍ଷରେ ସ୍ୱର୍ଗଭୁବନ ଏବଂ ସଂସାରର ଜ୍ୱାଳା ତାହାଙ୍କ ପକ୍ଷରେ ଚନ୍ଦନପ୍ରଲେପ ମାତ୍ର ।

## ବିଷୟାସକ୍ତି

ଚିଲ, ସାଗୁଣା ଅନେକ ଉଚ୍ଚକୁ ଉଠନ୍ତି; କିନ୍ତୁ ସେମାନଙ୍କର ନଜର ମଶାଣି ଉପରେ । ସେହିପରି ଅନେକ ଲୋକ ଅଛନ୍ତି ସେମାନେ ଈଶ୍ୱରଙ୍କ ସମ୍ବନ୍ଧରେ ଲମ୍ବା ଲମ୍ବା କଥା କହନ୍ତି; ମାତ୍ର ସେମାନଙ୍କ ମନ ମଶାଣି ଉପରେ ଅର୍ଥାତ୍ (ବିଷୟ) କାମିନୀ-କାଞ୍ଚନ-ଠାରେ ଥାଏ । ସେମାନଙ୍କର ମନ ଟଙ୍କାକଉଡ଼ି, ଜମିବାଡ଼ି, କୋଠା, ଯଶ, ଉପାଧି, ସମ୍ମାନଠାରେ ଥାଏ ।

—ଶ୍ରୀ ରାମକୃଷ୍ଣ ଉପଦେଶାମୃତ—

## ବିଷୟୀ ଲୋକ

ହଜାର କଥା କହ, ବିଷୟୀ ଲୋକର କିଛି ଉପକାର କରି-ପାରିବ ନାହିଁ । ପଥରପାଚେରିରେ କି କଣ୍ଟା ମରିଯାଏ ? କଣ୍ଟାର ମୂନ ଭାଙ୍ଗିଯିବ, ପାଚେରିର କିଛି ହେବନାହିଁ । ଖଣ୍ଡାର ଆଘାତରେ କୁମ୍ଭୀରର କଅଣ ହେବ ? ସାଧୁର କମଣ୍ଡଳୁ ଚାରିଧାମ ବୁଲିଆସେ; କିନ୍ତୁ ତାହାର ସ୍ୱାଦ ଯେପରି ତିକ୍ତ ସେହିପରି ତିକ୍ତ ଥାଏ । ବିଷୟୀଲୋକର ମନ ସାଧୁ ସନ୍ଥମାନଙ୍କ କଥା ଗ୍ରହଣ କରି ପାରେ ନାହିଁ । ସେମାନଙ୍କର କଥା ତାହାର ଏ କାନରେ ପଶି ସେ କାନ ଦେଇ ବାହାରି ଯାଏ । ମଳୟ-ପବନ ବହିଲେ ନିମ୍ବଗଛ ଚନ୍ଦନ-

ବୃକ୍ଷରେ ପରିଣତ ହୁଏ, ମାତ୍ର ଅନ୍ୟବୃକ୍ଷର କିଛି ପରିବର୍ତ୍ତନ ହୁଏ ନାହିଁ । ସେହିପରି ବିଷୟୀବ୍ୟକ୍ତି ଯେତେ ଭଲକଥା ଶୁଣିଲେ ମଧ୍ୟ ତାହାର ମାନସିକ ପରିବର୍ତ୍ତନ ଅସମ୍ଭବ । ବିଷୟୀଲୋକଙ୍କୁ ଭଗବତ୍ କଥା କହିଲେ ସେ ତାହା ଧାରଣା କରିବା ତେଣେ ଥାଉ ବରଂ ବିରକ୍ତହୁଏ । —ଶ୍ରୀରାମକୃଷ୍ଣ ଉପଦେଶାମୃତ—

## କାମିନୀ-କାଞ୍ଚନ

କାମିନୀ-କାଞ୍ଚନ ଜୀବକୁ ବଦ୍ଧକରେ । ଜୀବର ସ୍ୱାଧୀନତା ଚାଲିଯାଏ ।

କାମିନୀ ଥିବାରୁ କାଞ୍ଚନର ଦରକାର । ଏହି କାଞ୍ଚନ ସକାଶେ ପରର ଦାସତ୍ୱ କରିବାକୁ ହୁଏ । ସ୍ୱାଧୀନତା ଚାଲିଯାଏ । ମନ ମୁତାବକ କାର୍ଯ୍ୟ କରି ହୁଏ ନାହିଁ ।

ସଂସାରୀ ମନେ କରନ୍ତି ଯେ, ଏହି ସଂସାରରେ କାମିନୀ-କାଞ୍ଚନ ଦ୍ୱାରା ସୁଖ ପାଇବେ ଏବଂ ନିର୍ଭୟରେ ରହିବେ । ସେମାନେ ଜାଣନ୍ତି ନାହିଁ ଯେ, ତହିଁରେ ମୃତ୍ୟୁ ହେବ । କାମିନୀ-କାଞ୍ଚନ ଅନିତ୍ୟ, ଈଶ୍ୱରହିଁ ଏକମାତ୍ର ନିତ୍ୟ ବସ୍ତୁ । ଟଙ୍କାରେ କଅଣ ହୁଏ ? ଭାତ, ଡାଲି ହୁଏ, ଲୁଗାହୁଏ, ରହିବା ସ୍ଥାନ ହୁଏ, କିନ୍ତୁ ଏଥିରେ ଭଗବାନ ଲାଭ ହୁଏ ନାହିଁ । ସେଥିପାଇଁ ଟଙ୍କା କେବେହେଁ ଜୀବନର ଉଦ୍ଦେଶ୍ୟ ହୋଇ ନ ପାରେ ।

—ରାମକୃଷ୍ଣ ଉପଦେଶାମୃତ—

ଗୀତାରେ—ଶ୍ରୀକୃଷ୍ଣ ଅର୍ଜୁନଙ୍କୁ ବୁଝାଇଅଛନ୍ତି ।

ଏ କାମିନୀ-କାଞ୍ଚନ କ'ଣ ? କେତେଦିନ ଅବା ରହିବ । ଯେଉଁ କାମିନୀର ରୂପରେ ମନ ଧାଏଁ, ତା ଭିତରେ କ'ଣ ଅଛି ଦେଖ । ମଳ, ମୂତ୍ର, ପୂଜ, ରକ୍ତରେ ତା' ଦେହ ପୂର୍ଣ୍ଣ । ଆଜି ଅଛି

କାଲି ଆଖି ବୁଜିଲେ ତା ଦେହର ଅବସ୍ଥା କ'ଣ ହେବ ଦେଖ । ସେଥିରୁ ପୋଗ୍ଧ ଗନ୍ଧ ବାହାରିବ । ମାଛି ଭଣ ଭଣ ହୋଇ ବେଢ଼ିବେ, ଯେଉଁ ସୁନ୍ଦର ମୁଖ ଦେଖି ମମତା ପଛରେ ଏତେ ଧାଉଁଥିଲ ସେହି ମୁହଁ କଳା ପଡ଼ିଯିବ । ତାପରେ ପୋଡ଼ା ସରିଲେ ଖାଲି ହାଡ ଦିଖଣ୍ଡି ପଡ଼ିରହିବ । ପୋଡ଼ା ନ ହେଲେ କୁକୁର ଶାଗୁଣା ତା ମାଂସ ଖାଇ ଉଡ଼ୁଥିବେ । ଯେଉଁ ଦେହର ଅବସ୍ଥା ଶେଷରେ ଏପରି ହୁଏ ତା ପଛରେ ମିଛଟାରେ ଧାଇଁ କି ଲଭ ?

ସରଳ ନହେଲେ ଈଶ୍ୱରଙ୍କ ଠାରେ ହଠାତ୍ କରି ବିଶ୍ୱାସ ହୁଏ ନାହିଁ । ବିଷୟ-ବୁଦ୍ଧି ଠାରୁ ଈଶ୍ୱର ଅନେକ ଦୂର । ବିଷୟ ବୁଦ୍ଧି ଥିଲେ ନାନା ସଂଶୟ ଉପସ୍ଥିତ ହୁଏ ଏବଂ ନାନା ପ୍ରକାର ଅହଂକାର ଆସି ପଡ଼େ—ପାଣ୍ଡିତ୍ୟର ଅହଂକାର, ଧନର ଅହଂକାର, ଏହି ସବୁ । —ରାମକୃଷ୍ଣାମୃତ—

ବିଷୟ-ବିତୃଷ୍ଣା ନ ଆସିଲେ କାକ-ବିଷ୍ଠା ପରି କାମିନୀ କାଞ୍ଚନ ତ୍ୟାଗ ନ କଲେ ବ୍ରହ୍ମାଙ୍କ କୋଟି କଳ୍ପରେ ମଧ୍ୟ ଜୀବର ମୁକ୍ତି ନାହିଁ । ବିଷୟ-ଭୋଗ ତ୍ୟାଗ ନ କଲେ ଅନ୍ତରର ଐଶୀ ଶକ୍ତି କିପରି ଜାଗ୍ରତ ହେବ । ଯାହାର ଏହି ତ୍ୟାଗଭାବ ଆସିନାହିଁ ସେ ଯେତେ ପୂଜା, ହୋମ, ତପସ୍ୟା କରୁ ପଛକେ ତାହାଠାରେ ଆତ୍ମଜ୍ଞାନର ଉଦୟ ହେବା ଅସମ୍ଭବ । ଯେପରି ନଙ୍ଗର ପକାଇ ଡଙ୍ଗାର ମଙ୍ଗଧରି ଟାଣିବା ।

—ସ୍ୱାମୀବିବେକାନନ୍ଦ—

## ଅଧିକାଂଶ ମାନବ ଦେହ-ସର୍ବସ୍ୱ

ଅଧିକାଂଶ ମାନବ ଦେହ-ସର୍ବସ୍ୱ । ଦେହ ହିଁ ସେମାନଙ୍କ ଚକ୍ଷୁରେ ସମଗ୍ର ଜଗତ୍ ତୁଲ୍ୟ, ଦେହର ସୁଖହିଁ ସେମାନଙ୍କ ନିକଟରେ ସମସ୍ତ । ଏହି ଦେହ ଓ ଦୈହିକ ଭୋଗ୍ୟ ବସ୍ତୁର

ଉପାସନା ରୂପକ ମହା ଅସୁର ଆମ ସମସ୍ତଙ୍କ ଭିତରେ ପ୍ରବେଶ କରିଛି। ଆମେ ଖୁବ୍ ବଡ଼ ବଡ଼ କଥା କହିପାରୁ, ଉଚ୍ଚ ଉଚ୍ଚ ଆଦର୍ଶର କଥା ଉଲ୍ଲେଖ କରିପାରୁ, କିନ୍ତୁ ତଥାପି ଆମେ ସମସ୍ତେ ଶକୁନି ପରି; ଆମେ ଯେତେ ଉଚ୍ଚକୁ ଉଠୁଛୁ ବୋଲି ମନେ କରୁନା କାହିଁକି, ଆମର ମନ କିନ୍ତୁ ଶକୁନି ପରି ଶବର ଗଳିତ ମାଂସ ଖଣ୍ଡ ପ୍ରତି ଆକୃଷ୍ଟ । × × × ×

ଆମେ ସମସ୍ତେ ଅଳ୍ପାଧିକ ସମୟ ପାଇଁ ଶରୀରକୁ ବଞ୍ଚାଇ ରଖିପାରୁ ଏବଂ ଅଳ୍ପାଧିକ ସ୍ୱାସ୍ଥ୍ୟ ସମ୍ଭୋଗ ମଧ୍ୟ କରିପାରୁଁ; କିନ୍ତୁ ତଦ୍ଦ୍ୱାରା ହେଲା କ'ଣ ? ଶରୀରତ ଦିନେ ନା ଦିନେ ଚାଲିଯିବ। ଶରୀରରତ କୌଣସି ନିତ୍ୟତା ନାହିଁ । ଧନ୍ୟ ସେହିମାନେ ! ଯେଉଁମାନଙ୍କର ଶରୀର ଅନ୍ୟର ସେବାରେ ନିୟୋଜିତ ହୁଏ । ସାଧୁ ବ୍ୟକ୍ତି କେବଳ ଅନ୍ୟର ସେବା ଲାଗି ଧନ ଏପରିକି ପ୍ରାଣ ପର୍ଯ୍ୟନ୍ତ ଉତ୍ସର୍ଗ କରିବାକୁ ସର୍ବଦା ପ୍ରସ୍ତୁତ ଥାଆନ୍ତି । ଏ ଜଗତରେ ମୃତ୍ୟୁ ହିଁ ଏକମାତ୍ର ସତ୍ୟ—ଏପରିସ୍ଥଳେ ଯଦି ଆମ ଦେହ କୌଣସି ମନ୍ଦ କାର୍ଯ୍ୟରେ ନ ଯାଇ ଭଲ କାର୍ଯ୍ୟରେ ଚାଲିଯାଏ, ତେବେ ତାହା ଖୁବ୍ ଭଲ ବୋଲି କହିବାକୁ ହେବ। ଆମେ କୌଣସି ପ୍ରକାର ପଚାଶ ଷାଠିଏ ବା ଶହେବର୍ଷ ବଞ୍ଚିପାରୁ କିନ୍ତୁ ତାହାପରେ କଅଣ ହେବ ?

ଜଗତରେ ସକଳ ବଡ଼ ବଡ଼ ମହାପୁରୁଷ ଓ ଆଚାର୍ଯ୍ୟଗଣ ମରିଛନ୍ତି । ବୁଦ୍ଧ ମରିଛନ୍ତି । ମହମ୍ମଦ ମରିଛନ୍ତି, ଈଶା ମରିଛନ୍ତି । ଭକ୍ତ କହନ୍ତି—"ଏହି କ୍ଷଣସ୍ଥାୟୀ ଜଗତରେ ଯେତେବେଳେ ସମସ୍ତ କ୍ରମଶଃ କ୍ଷୟପ୍ରାପ୍ତ ହେଉଛି, ଏଠାରେ ଆମେ ଯେତିକି ସମୟ ପାଉଁ ତାହାର ସଦ୍‌ବ୍ୟବହାର କରିବା ଆବଶ୍ୟକ" ।

(ସ୍ୱାମୀ ବିବେକାନନ୍ଦ—ଭକ୍ତିଯୋଗ)

# ପ୍ରକୃତ ସାଧୁ କିଏ ?

ଯେଉଁ ସାଧୁଙ୍କର ବିଷୟ ଲାଳସା ନ ଥାଏ, ଯେ ସାଧୁ ପର ଦୁଃଖରେ ଦୁଃଖିତ ଓ ପର ସୁଖ ଦେଖି ସୁଖୀ ହୁଅନ୍ତି; ଯେଉଁ ସାଧୁଙ୍କର କେହି ଶତ୍ରୁ ନ ଥାନ୍ତି ଓ ଯେ ନିରହଂକାର, ନିର୍ଲୋଭୀ, କ୍ରୋଧଶୂନ୍ୟ ଓ ଭୟଶୂନ୍ୟ—ସେହି କେବଳ ପ୍ରକୃତ ସାଧୁ ।

—ତୁଳସୀ ରାମାୟଣ—

ପ୍ରକୃତ ସାଧୁ ପ୍ରଣତ ସମଦର୍ଶୀ, ନିର୍ମମ, ନିରହଂକାର, ଦୁଃଖ ସହନଶୀଳ, ଦୟାର୍ଦ୍ର ହୃଦୟ, ସକଳ ଜୀବଙ୍କ ବନ୍ଧୁ, ଅଜାତଶତ୍ରୁ, ଶାନ୍ତ ଓ ସୁଶୀଳ ଅଟନ୍ତି ।

—ଭାଗବତ—

ସଂସାରରେ ସବୁଠାରେ ଆଦର୍ଶ ସାଧୁ ନ ଥାଇ ପାରନ୍ତି । ମାତ୍ର ପୂର୍ବୋକ୍ତ ଗୁଣ ରାଶି ମଧ୍ୟରୁ କଥିତ ଗୁଣସମ୍ପନ୍ନ ଅନେକ ସାଧୁ ଦେଖିବାକୁ ମିଳନ୍ତି । ଉକ୍ତ ଗୁଣଗୁଡ଼ିକ ମଧ୍ୟରୁ ଯାହାଙ୍କ ଜୀବନରେ ଯେତିକି ଗୁଣ ପ୍ରକାଶିତ ହୋଇଛି ତାକୁ ସେହି ପରିମାଣରେ ସାଧୁ ମନେ କରିବାକୁ ହେବ; ଏପରି ସାଧୁମାନଙ୍କ ସଙ୍ଗ ଲାଭକଲେ ମଧ୍ୟ ଜୀବନ ଧନ୍ୟ ହେବ । ମୁକ୍ତିକାମନା ସହଜ ହୋଇ ପଡ଼ିବ । ଯେଉଁ ବ୍ୟକ୍ତି ମନ ପ୍ରାଣ ଲଗାଇ ଭଗବାନଙ୍କ ମହିମା ଗାନ କରନ୍ତି, ତାଙ୍କର ଚରଣ ଧୂଳି ଗ୍ରହଣ କରିବା ଆମ୍ଭମାନଙ୍କର କର୍ତ୍ତବ୍ୟ । ସାଧୁସଙ୍ଗ ଲାଭପାଇଁ ଯେଉଁମାନଙ୍କର ସୁବିଧା ସୁଯୋଗ ନାହିଁ ଭାଗବତ ପାଠ କଲେ ସେମାନଙ୍କର ସେହି ଅଭାବ କେତେକ ପରିମାଣରେ ପୂରଣ ହୋଇ ପାରିବ ।

# କୁସଙ୍ଗ

କୁସଙ୍ଗ ସର୍ବଥା ପରିତ୍ୟାଜ୍ୟ । କୁସଙ୍ଗ କହିଲେ ଖାଲି ଖରାପ ଚରିତ୍ର ଲୋକଙ୍କ ସହିତ ମିଳାମିଶା ବା ଆଳାପ ବ୍ୟବହାର ନୁହେ—ଅସତ୍ ଗ୍ରନ୍ଥ ଅଧ୍ୟୟନ, କୁତ୍ସିତ ଚିତ୍ର ଦର୍ଶନ, କୁବାକ୍ୟ କିମ୍ବା କୁସଙ୍ଗୀତ ଶ୍ରବଣ, ଏ ସବୁଗୁଡ଼ିକ ମଧ୍ୟ କୁସଙ୍ଗ ଭିତରେ ଯାଆନ୍ତି । ଯେଉଁମାନେ ପବିତ୍ର ହେବାକୁ ଚାହାନ୍ତି, ଶାସ୍ତ୍ର ଅନୁସାରେ ସେମାନେ ଅନ୍ୟ କୌଣସି ପ୍ରାଣୀର ମୈଥୁନ ଦେଖିବା ମଧ୍ୟ ଅନୁଚିତ । ଯାହା ଦେଖିଲେ, ଶୁଣିଲେ, ଉଚ୍ଚାରଣ କଲେ କିମ୍ବା ଚିନ୍ତାକଲେ ମନରେ ଖରାପ ଭାବର ଉଦୟହୁଏ, ସେ ସମସ୍ତ ବର୍ଜନୀୟ । ଖାଲି ବାହାରେ ଗର୍ବକଲେ କ'ଣ ହେବ, ଏପରି ଅନେକ ଲୋକ ଅଛନ୍ତି, ଯେଉଁମାନେ କି କୌଣସି ଇତର ପ୍ରାଣୀର କିଛି ଅବସ୍ଥା-ବିଶେଷ ଦେଖିଲେ ମନକୁ ପୈଶାଚିକ ଭାବରେ କଳୁଷିତ କରିପକାନ୍ତି । କୁଚିତ୍ର ଦର୍ଶନ, କୁସଙ୍ଗୀତ ଶ୍ରବଣ କିମ୍ବା କୁଗ୍ରନ୍ଥ ପାଠଦ୍ୱାରା ତ ଚିତ୍ତ କଳଙ୍କିତ ହେବା ବିଶେଷ ସମ୍ଭବ । ଯଦି ସଦ୍‌ଗ୍ରନ୍ଥ ପାଠକଲେ ମଧ୍ୟ ଉନ୍ନତ, ପବିତ୍ର ହୁଏ, ତେବେ ଅସତ୍ ଗ୍ରନ୍ଥ ପଢ଼ିଲେ ମନ କାହିଁକି ଅପବିତ୍ର ନ ହେବ ? ସୁଚିତ୍ର ଦର୍ଶନରେ ମନରେ ଯଦି ପବିତ୍ର ଭାବ ଆସେ, କୁଚିତ୍ର ଦର୍ଶନରେ କାହିଁକି ବା ଅପବିତ୍ର ଭାବର ଉଦ୍ରେକ ନ ହେବ ? ଯଦି ସୁସଙ୍ଗୀତ ବା ସୁବାକ୍ୟ ଶ୍ରବଣରେ ହୃଦୟ ମଧୁର-ଭାବରେ ବିହ୍ୱଳ ହୁଏ, ତେବେ କୁ ସଙ୍ଗୀତ କିମ୍ବା କୁ ବାକ୍ୟ ଶ୍ରବଣରେ ଚିତ୍ତ କୁତ୍ସିତ ଭାବରେ ବିଭ୍ରାନ୍ତ ନ ହେବ ବା କାହିଁକି ?

ଆଜର ଏ ବସ୍ତୁବାଦୀ ଯୁଗରେ ବିଜ୍ଞାନୀ ମଣିଷ ଭଗବାନଙ୍କ ସତ୍ତା ଖୋଜୁଛି । ଜୀବନର ଚରମ ଲକ୍ଷ୍ୟ ଓ ପରମ କର୍ତ୍ତବ୍ୟ ଭୁଲି କେବଳ ଶରୀର ସେବା କରିବାରେ ଲାଗିଛି । ଅନ୍ତରରେ ଶାନ୍ତି ନାହିଁ, ହୃଦୟରେ ପବିତ୍ରତା ନାହିଁ, ମନରେ ଦିବ୍ୟଚେତନାର ଅଭାବ, ଏଣେ ଚାରିଆଡ଼େ ଅନାଚାର, ଦୁର୍ନୀତି, କ୍ଷୁଧା, ଅଭାବ ଅନାଟନ ମଧ୍ୟରେ ମନୁଷ୍ୟ ତଟଲ ତଟଲ ସଢ଼ୁଛି ।

—ସ୍ୱାମୀଶିବାନନ୍ଦ—

## ସୁଖ ଓ ଦୁଃଖ ଯମଜ ଭ୍ରାତ

ସଂସାର ସୁଖ ଓ ଦୁଃଖ ମଙ୍ଗଳ ଓ ଅମଙ୍ଗଳର ମିଶ୍ରଣ । ସୁଖ ସହିତ ଦୁଃଖ ଏକ ମାଳାରେ ଗୁନ୍ଥା ହୋଇଅଛି । ଯେଉଁଠି ମଙ୍ଗଳ, ସେଠାରେ ଅମଙ୍ଗଳ ରହିଛି; ଯେଉଁଠି ଅମଙ୍ଗଳ ସେଠାରେ ମଙ୍ଗଳ ମଧ୍ୟ ରହିଛି । ଯେଉଁଠି ଜୀବନ ଅଛି, ମୃତ୍ୟୁ, ସେଠାରେ ଛାୟାପରି ତାହାକୁ ଅନୁସରଣ କରୁଛି । ଯେ ହସୁଛି, ତାକୁ କାନ୍ଦିବାକୁ ହିଁ ପଡ଼ିବ; ଯେ କାନ୍ଦୁଛି, ସେ ପୁଣି ହସିବ, ଏହି ବ୍ୟାପାର ପରିବର୍ତ୍ତିତ ହେବାର ନୁହେଁ । ଆମେ ଅବଶ୍ୟ ଏହିପରି ସ୍ଥାନ କଳ୍ପନା କରି ପାରିବା ଯେଉଁଠି କେବଳ ମଙ୍ଗଳ ଥିବ ଅମଙ୍ଗଳ ନଥିବ; ଯେଉଁଠି ଆମେ କେବଳ ହସିବା ସିନା, କାନ୍ଦିବା ନାହିଁ, କିନ୍ତୁ ଯେତେବେଳେ ଏହିସବୁ କାରଣ ସର୍ବଦା ସମଭାବରେ ବିଦ୍ୟମାନ, ସେପରି ସ୍ଥାନରେ ଏଭଳି ଘଟଣା ସ୍ୱତଃ ଅସମ୍ଭବ । ଯେଉଁଠାରେ ଆମ୍ଭମାନଙ୍କୁ ହସାଇବାର ଶକ୍ତି ରହିଛି, କନ୍ଦାଇବାର ଶକ୍ତି ମଧ୍ୟ ସେଠାରେ ପ୍ରଚ୍ଛନ୍ନ ଭାବରେ ରହିଛି । ଯେଉଁଠି ସୁଖୋଦ୍ଦୀପକ ଶକ୍ତି ବର୍ତ୍ତମାନ, ସେଠାରେ ଦୁଃଖଦାୟିନୀ ଶକ୍ତି ମଧ୍ୟ ଲୁକ୍କାୟିତ । (ସ୍ୱାମୀ ବିବେକାନନ୍ଦ—ଭକ୍ତିଯୋଗ)

# ସାଧୁ ସଙ୍ଗ

ଭକ୍ତିମାର୍ଗ ସ୍ୱତନ୍ତ୍ର । ଏହା ସମସ୍ତ ସୁଖର ଖଣି କିନ୍ତୁ ସତ୍‌ସଙ୍ଗ ବିନା ପ୍ରାଣୀ ଏହା ପାଇପାରେ ନାହିଁ । ଗ୍ରଣି ଗ୍ରଣି ବା ବହୁ ପୁଣ୍ୟ ଫଳରେ ମନୁଷ୍ୟ ସାଧୁସଙ୍ଗ ପାଇଥାଏ । ସାଧୁସଙ୍ଗ ସଂସାରରୁ ଦୁଃଖ ନାଶ କରିବାର ମୂଳବସ୍ତୁ— —ତୁଳସୀ ଦାସ—

ଏ ଜୀବ ସାଧୁ ସଙ୍ଗ ବିନୁ—
ଲଭି ନ ପାରେ ମୋର ତନୁ । —ଭାଗବତ—

ଅସାଧୁ ହୁଅଇ ସାଧୁ ସାଧୁର ସଙ୍ଗରେ
ନିର୍ମଳ ପଙ୍କିଳ ଜଳ ନିର୍ମଳୀ ଯୋଗରେ ।

—ଭକ୍ତକବି ମଧୁସୂଦନ—

ଅନ୍ୟ ଜଳ ଗଙ୍ଗା ଜଳ ସଙ୍ଗରେ ମିଶିଲେ
ଗଙ୍ଗାଜଳ ସମେ ମାନ୍ୟ ହୁଅଇ ସେ ଭଲେ

—ପାଷାଣ୍ଡଦଳନ—

ବାଲ୍ମିକ, ନାରଦ, ଅଗସ୍ତି ଆଦି ମୁନି
ସାଧୁସଙ୍ଗ ପ୍ରଭାବୁଁ ହୋଇଲେ ମହାଜ୍ଞାନୀ ।
ସାଧୁସଙ୍ଗ ଫଳେ ଶଠ ହୁଏ ସାଧୁଜନ
ସ୍ପର୍ଶମଣି ଯୋଗୁଁ ଯଥା ଲୁହା ହୁଏ ସ୍ୱର୍ଣ୍ଣ ।

ଅଞ୍ଜଳରେ ଫୁଲ ଧଇଲେ ତା ଲାଗି
ହାତ ଉଠଇ ସୁବାସି
ତଥା ସାଧୁସଙ୍ଗ ଯୋଗୁ ନର ହୁଏ
ପବିତ୍ର ସେ ସଙ୍ଗେ ମିଶି

—ଜଗବନ୍ଧୁ, ତୁଳସୀରାମାୟଣ—ବାଳଖଣ୍ଡ—

# ପ୍ରକୃତ ସାଧୁ କିଏ ?

ଯେଉଁ ସାଧୁଙ୍କର ବିଷୟ ଲାଳସା ନ ଥାଏ, ଯେ ସାଧୁ ପର ଦୁଃଖରେ ଦୁଃଖିତ ଓ ପର ସୁଖ ଦେଖି ସୁଖୀ ହୁଅନ୍ତି; ଯେଉଁ ସାଧୁଙ୍କର କେହି ଶତ୍ରୁ ନ ଥାନ୍ତି ଓ ଯେ ନିରହଂକାର, ନିର୍ଲୋଭୀ, କ୍ରୋଧଶୂନ୍ୟ ଓ ଭୟଶୂନ୍ୟ—ସେହି କେବଳ ପ୍ରକୃତ ସାଧୁ ।

—ତୁଳସୀ ରାମାୟଣ—

ପ୍ରକୃତ ସାଧୁ ପ୍ରଣତ ସମଦର୍ଶୀ, ନିର୍ମମ, ନିରହଂକାର, ଦୁଃଖ ସହନଶୀଳ, ଦୟାର୍ଦ୍ର ହୃଦୟ, ସକଳ ଜୀବଙ୍କ ବନ୍ଧୁ, ଅଜାତଶତ୍ରୁ ଶାନ୍ତ ଓ ସୁଶୀଳ ଅଟନ୍ତି ।

—ଭାଗବତ—

ସଂସାରରେ ସବୁଠାରେ ଆଦର୍ଶ ସାଧୁ ନ ଥାଇ ପାରନ୍ତି । ମାତ୍ର ପୂର୍ବୋକ୍ତ ଗୁଣ ରାଶି ମଧ୍ୟରୁ କଣ୍ଟିତ ଗୁଣସମ୍ପନ୍ନ ଅନେକ ସାଧୁ ଦେଖିବାକୁ ମିଳନ୍ତି । ଉକ୍ତ ଗୁଣଗୁଡ଼ିକ ମଧ୍ୟରୁ ଯାହାଙ୍କ ଜୀବନରେ ଯେତିକି ଗୁଣ ପ୍ରକାଶିତ ହୋଇଛି ତାଙ୍କୁ ସେହି ପରିମାଣରେ ସାଧୁ ମନେ କରିବାକୁ ହେବ; ଏପରି ସାଧୁମାନଙ୍କ ସଙ୍ଗ ଲାଭକଲେ ମଧ୍ୟ ଜୀବନ ଧନ୍ୟ ହେବ । ମୁକ୍ତିକାମନା ସହଜ ହୋଇ ପଡ଼ିବ । ଯେଉଁ ବ୍ୟକ୍ତି ମନ ପ୍ରାଣ ଲଗାଇ ଭଗବାନଙ୍କ ମହିମା ଗାନ କରନ୍ତି, ତାଙ୍କର ଚରଣ ଧୂଳି ଗ୍ରହଣ କରିବା ଆମ୍ଭମାନଙ୍କର କର୍ତ୍ତବ୍ୟ । ସାଧୁସଙ୍ଗ ଲାଭପାଇଁ ଯେଉଁମାନଙ୍କର ସୁବିଧା ସୁଯୋଗ ନାହିଁ ଭାଗବତ ପାଠ କଲେ ସେମାନଙ୍କର ସେହି ଅଭାବ କେତେକ ପରିମାଣରେ ପୂରଣ ହୋଇ ପାରିବ ।

# କୁସଙ୍ଗ

କୁସଙ୍ଗ ସର୍ବଥା ପରିତ୍ୟାଜ୍ୟ । କୁସଙ୍ଗ କହିଲେ ଖାଲି ଖରାପ ଚରିତ୍ର ଲୋକଙ୍କ ସହିତ ମିଳାମିଶା ବା ଆଳାପ ବ୍ୟବହାର ନୁହେ—ଅସତ୍ ଗ୍ରନ୍ଥ ଅଧ୍ୟୟନ, କୁତ୍ସିତ ଚିତ୍ର ଦର୍ଶନ, କୁବାକ୍ୟ କିମ୍ବା କୁସଙ୍ଗୀତ ଶ୍ରବଣ, ଏ ସବୁଗୁଡ଼ିକ ମଧ୍ୟ କୁସଙ୍ଗ ଭିତରେ ଯାଆନ୍ତି । ଯେଉଁମାନେ ପବିତ୍ର ହେବାକୁ ଚାହାନ୍ତି, ଶାସ୍ତ୍ର ଅନୁସାରେ ସେମାନେ ଅନ୍ୟ କୌଣସି ପ୍ରାଣୀର ମୈଥୁନ ଦେଖିବା ମଧ୍ୟ ଅନୁଚିତ । ଯାହା ଦେଖିଲେ, ଶୁଣିଲେ, ଉଚ୍ଚାରଣ କଲେ କିମ୍ବା ଚିନ୍ତାକଲେ ମନରେ ଖରାପ ଭାବର ଉଦୟ ହୁଏ, ସେ ସମସ୍ତ ବର୍ଜନୀୟ । ଖାଲି ବାହାରେ ଗର୍ବକଲେ କ'ଣ ହେବ, ଏପରି ଅନେକ ଲୋକ ଅଛନ୍ତି, ଯେଉଁମାନେ କି କୌଣସି ଇତର ପ୍ରାଣୀର କିଛି ଅବସ୍ଥା-ବିଶେଷ ଦେଖିଲେ ମନକୁ ପୈଶାଚିକ ଭାବରେ କଳୁଷିତ କରିପକାନ୍ତି । କୁଚିତ୍ର ଦର୍ଶନ, କୁସଙ୍ଗୀତ ଶ୍ରବଣ କିମ୍ବା କୁଗ୍ରନ୍ଥ ପାଠଦ୍ୱାରା ତ ଚିତ୍ତ କଳଙ୍କିତ ହେବା ବିଶେଷ ସମ୍ଭବ । ଯଦି ସଦ୍‌ଗ୍ରନ୍ଥ ପାଠକଲେ ମଧ୍ୟ ଉନ୍ନତ, ପବିତ୍ର ହୁଏ, ତେବେ ଅସତ୍ ଗ୍ରନ୍ଥ ପଢ଼ିଲେ ମନ କାହିଁକି ଅପବିତ୍ର ନ ହେବ ? ସୁଚିତ୍ର ଦର୍ଶନରେ ମନରେ ଯଦି ପବିତ୍ର ଭାବ ଆସେ, କୁଚିତ୍ର ଦର୍ଶନରେ କାହିଁକି ବା ଅପବିତ୍ର ଭାବର ଉଦ୍ରେକ ନ ହେବ ? ଯଦି ସୁସଙ୍ଗୀତ ବା ସୁବାକ୍ୟ ଶ୍ରବଣରେ ହୃଦୟ ମଧୁର-ଭାବରେ ବିହ୍ୱଳ ହୁଏ, ତେବେ କୁ ସଙ୍ଗୀତ କିମ୍ବା କୁ ବାକ୍ୟ ଶ୍ରବଣରେ ଚିତ୍ତ କୁତ୍ସିତ ଭାବରେ ବିଭ୍ରାନ୍ତ ନ ହେବ ବା କାହିଁକି ?

## ସତ୍ୟର ମହତ୍ୱ

ଧର୍ମ ଯେ ସତ୍ୟଠାରେ ପାଏ ସ୍ଥିତି
ଧର୍ମହେତୁରୁ ଅଛଇ ଧରଣୀ
ସତ୍ୟ ହେତୁ ରହୁଛି ସିନ୍ଧୁଜଳ
କେବେ ତ ସେ ନ ଲଙ୍ଘଇ କୂଳ
ବଳିରଜା ଯେ ସତ୍ୟ ନ ଲଙ୍ଘିଣ
ବିଷ୍ଣୁଙ୍କୁ ତିନିପଦ ଦେଲା ଦାନ
ସତ୍ୟ ମାନିଣ ଅଛି ବିନ୍ଧ୍ୟାଚଳ
ପୂର୍ଣ ହିଁ ମହୀ ଅଦ ମହୀଧର
ବଢ଼ିଲେ ନାହିଁ ସେହୁ ଆକାଶକୁ
ତେଣୁ ଯୋଗ୍ୟ ସେ ସ୍ୱର୍ଗ ଭବନକୁ
ସତ୍ୟଠାରେ ଥାନ୍ତି ସକଳ ତୀର୍ଥ
ସତ୍ୟବାଦୀ ଲୋକ ସଦା ପବିତ୍ର
ସତ୍ୟ ହେତୁରୁ ବହଇ ପବନ
ସତ୍ୟରେ ଉଦେ ଚନ୍ଦ୍ର ସୂର୍ଯ୍ୟ ଜାଣ
ସତ୍ୟ ଯେ ପରମ ଦୁର୍ଲ୍ଲଭ ଗୁଣ
ସକଳ ଜଗତରେ ସେ କାରଣ
ସତ୍ୟ ସର୍ବଦା ଯେ ଲୋକ କହଇ
ସତ୍ୟେ ଅଶ୍ୱମେଧ ଫଳ ସେ ପାଇ

—ବୃହତ୍ ଇତିହାସ ପୁରାଣ-ଅଗସ୍ତି ମହର୍ଷି ବଚନ—

## ଅସତ୍ୟ ( ମିଥ୍ୟା )

ବିନ୍ଦୁଏ ବିଷ ଯେପରି ସମସ୍ତ ଦୁଧ ହାଣ୍ଡିକୁ ବିଷ କରି ପକାଏ, ସାମାନ୍ୟ ମିଥ୍ୟା ମଧ୍ୟ ସେହିପରି ମନୁଷ୍ୟକୁ ନଷ୍ଟ କରିଦିଏ । ( ଗାନ୍ଧୀ )

ଅସତ୍ୟରୁ ପାପ, ପାପରୁ କନ୍ଦଳ, କନ୍ଦଳରୁ କ୍ରୋଧ, କ୍ରୋଧରୁ ମରଣ, ମରଣରୁ ସର୍ବନାଶ, ସର୍ବନାଶରୁ କୁଳକ୍ଷୟ ହୁଏ ।

## ପୁଣ୍ୟର ପ୍ରଭାବ

ଝିଷ୍ଣୁଦେବ ପାପାତ୍ମାମାନଙ୍କୁ ଦରିଦ୍ର ଓ ପୁଣ୍ୟାତ୍ମାମାନଙ୍କୁ ଧନୀ ବୋଲି କହୁଛନ୍ତି । ବାସ୍ତବିକ ପାପୀଙ୍କ ପରି ଦରିଦ୍ର କୃପାର ପାତ୍ର ଆଉ କିଏ ଅଛି ? ସେମାନଙ୍କ ମନ ଭିତରେ ଯାତନା, ବାହାରେ ନାନା ଗଞ୍ଜଣା ଏବଂ ଇହ ପରଲୋକରେ ଦୁଃଖ କହିଲେ ନ ସରେ । ପାପ କାର୍ଯ୍ୟ କରିଛି ଅଥଚ ଶାନ୍ତିରେ ଅଛି ; ଜଗତରେ ଏପରି ଗୋଟିଏ ପ୍ରାଣୀ ମୁଦ୍ଧା ଦେଖିବାକୁ ପାଇବ ନାହିଁ । ପୁଣ୍ୟାତ୍ମା ଯେ ପ୍ରକୃତ ଧନୀ ଏଥିରେ ଆଉ କିଛି ମାତ୍ର ସନ୍ଦେହ ନାହିଁ । ଭୋଗ ବିଳାସହୀନ ପୁଣ୍ୟାତ୍ମାବ୍ୟକ୍ତି ତ୍ରୈଲୋକ୍ୟ ରାଜ୍ୟକୁ ମୁଦ୍ଧା ତୃଣ ମାତ୍ରେ ଗ୍ରାହ୍ୟ କରେ ନାହିଁ ।

—ଭକ୍ତି ଯୋଗ—

## ପୁଣ୍ୟବାନ ଲୋକର ପରିଚୟ

ନିଜ ସୁଖ ଦେଇ ଯେବା ପରସୁଖ ଲୋଡ଼େ,
ନ ଖାଇ ଯେ ଅନ୍ନଦାନ ଦେଇ ଖାଏ ପରେ,
ବିଶ୍ୱଜନ ସେବାବ୍ରତ ଯେବା ଶିରେ ଧରେ
ବିଶ୍ୱର କଂକାଳ ପରି ପାଳିକି ଆଦରେ
ଆତ୍ମପର ଭେଦଭାବ ଯା'ର ଥାଏ ନାହିଁ
ନରରୂପେ ନାରାୟଣ ନିତ୍ୟ ପୂଜଇ ।
ଦରିଦ୍ର ଭିକ୍ଷୁକ ଯେହୁ ଅବଜ୍ଞା ନ କରେ
ଦେଉ ବା ନ ଦେଉ ତୋଷେ ମିଷ୍ଟ ବଚନରେ,

କଳପଣା ନୋହି ଦାନ ସତ୍‌ପାତ୍ରେ କରଇ
ଗରୁଡ଼ ମନରେ ହେଜ ପୁଣ୍ୟବାନ୍ ସେହି ।

—ଗରୁଡ଼ ପୁରାଣ—

ଯେଉଁମାନେ କେବଳ ନିଜ ପେଟଟିକୁ ଚାହାନ୍ତି, ସେମାନେ ଦୁରାଗ୍ରସ୍ତ ଓ ପାପୀ । ମାତ୍ର ଯେଉଁମାନେ ଦୁଃଖୀରଙ୍କି ଓ ଅତିଥି ଅଭ୍ୟାଗତଙ୍କ ପ୍ରଥମେ ସନ୍ତୁଷ୍ଟ କରି ପରେ ଯାହା ବଳିବ ତାହା ଖାଇ ସନ୍ତୁଷ୍ଟ ହୁଅନ୍ତି, ସେମାନେ ପ୍ରକୃତରେ ପୁଣ୍ୟବାନ୍ ଓ ସମସ୍ତ ପ୍ରକାର ପାପରୁ ମୁକ୍ତ ହୁଅନ୍ତି । —ଗୀତା—

## ପାପ

ପାପର ଅର୍ଥ ମନ୍ଦ ବା ଅନିଷ୍ଟକର । ପାପ ଚାରି ପ୍ରକାର । ଶାରୀରିକ ପାପ, ଆତ୍ମିକ ପାପ, ମାନସିକ ପାପ ଓ ସାମାଜିକ ପାପ । ଯାହାଁରେ ମନୁଷ୍ୟର ବ୍ୟକ୍ତିଗତ ବା ସାମୂହିକ ଜୀବନରେ ଦୁଷ୍ପରିଣାମ ଉତ୍ପନ୍ନ ହୁଏ ଓ ଯେଉଁ କାର୍ଯ୍ୟ କଲେ ଶରୀରର ଅନିଷ୍ଟ ହୁଏ, ତାହା ଶାରୀରିକ ପାପ; ନଖରେ ତୃଣଚ୍ଛେଦନ, ଭୂମିଉପରେ ନଖରେ ଲେଖିବା, ଭଲକରି ଗୋଡ଼ ନ ଧୋଇବା, ଯଥାତଥା ଦାନ୍ତଘଷି ପଡ଼କେଇବା, ମଳିନ ବସନ ପରିଧାନ କରିବା, କେଶ ନୁଖୁରା ରଖିବା, ଉଦୟାସ୍ତ ସମୟରେ ନିଦ୍ରା ଯିବା, ଲଙ୍ଗଳା ହୋଇ ଶୋଇବା, ଅତଶୟ ହସିବା ଓ ଅତିମାତ୍ରାରେ ଭୋଜନ କରିବା, ନିଜ ଦେହରେ ବାଜା ବଜେଇବା ଏ ପ୍ରତ୍ୟେକଟି ଶରୀର ବା ସ୍ୱାସ୍ଥ୍ୟ ପକ୍ଷରେ ହାନୀକାରକ । ସେହି ହେତୁରୁ ଏହା ଶାରୀରିକ ପାପ ।

ଅନୁଦାରତା, ସଂକୀର୍ଣ୍ଣତା, ସର୍ବଦା ଅଶୁଭ ଚିନ୍ତନ ଓ ଅଶୁଭ କର୍ମ କରଣ ଆଦ ଆତ୍ମିକ ପାପ ।

କ୍ରୋଧ, ଶୋକ, ଈର୍ଷା, ଦ୍ୱେଷ, ସନ୍ତାପ, ପରଚର୍ଚ୍ଚା (ଚୁଗୁଲି), ତୃଷ୍ଣା, ଚିନ୍ତା, ଉଦ୍‌ବେଗ ଆଦି ମାନସିକ ପାପ । ଶୈରଷ୍ଣ, ଶୋଷଣ, ବିଶ୍ୱାସଘାତକତା, ଦେଶଦ୍ରୋହ, ସ୍ୱାର୍ଥପରତା, ନିଷ୍ଠୁରତ, ଆଳସ୍ୟ ଏ ସବୁ ସାମାଜିକ ପାପ ।

ଉଦାହରଣସ୍ୱରୂପ, ମନୁ ମନୁଷ୍ୟକୃତ ଅଶୁଭ କର୍ମର କାୟିକ, ବାଚିକ ଓ ମାନସିକ ଏହି ତିନୋଟି ଭେଦ କରିଅଛନ୍ତି । ବ୍ୟଭିଚାର, ହିଂସା ଓ ଚୌର୍ଯ୍ୟ—କାୟିକ; କଟୂ, ମିଥ୍ୟା, ଅତି ଅଳ୍ପ କହିବା ଓ ପ୍ରଳାପ—ବାଚିକ ଏବଂ ପରଦ୍ରବ୍ୟରେ ଅଭିଳାଷ, ପରର ମନ୍ଦଚିନ୍ତା ଓ ମିଥ୍ୟାରେ ଆଗ୍ରହ—ମାନସିକ; ଏହି ପ୍ରକାର ଦଶଟି ଅଶୁଭ ବା ପାପ ।

ଏଥିରୁ ପରିଷ୍କାର ବୁଝାଯାଉଛି ଯେ, ମନୁଷ୍ୟ ନିଷ୍ପାପ ହେବା ଉଚିତ । ପାପର ମନ୍ଦ ବା ଭୟାବହ ପରିମାଣ ଦେଖି ପାପକୁ ଘୃଣା କରିବା ଉଚିତ ଏବଂ ନିରନ୍ତର ପାପକୁ ଦମନ, ବିନଷ୍ଟ କରିବା ପାଇଁ ସଂଘର୍ଷ କରିବା ଉଚିତ । ଏହିସବୁ ପାପରୁ ଦୂରରେ ରହି ନିଷ୍ପାପ ହେବା ଉଚିତ ।

ଅତ୍ୟୁତ୍କଟ ପାପ ଏବଂ ପୁଣ୍ୟକର୍ମାଦିର ଫଳ ତିନି ଦିନରେ ହେଉ, ତିନି ପକ୍ଷରେ ହେଉ, ତିନି ମାସରେ ହେଉ ଅଥବା ତିନି ବର୍ଷରେ ହେଉ, ଯେ କୌଣସି ସମୟରେ ଇହଲୋକରେ ହିଁ ଭୋଗ କରିବାକୁ ହେବ । ଏହା ଚିନ୍ତାକଲେ ମନ ସହଜରେ ପାପଦିଗରୁ ସଙ୍କୁଚିତ ହୋଇପଡ଼େ ।

ପାପୀ ଇହଲୋକରେ କଷ୍ଟପାଏ । ମୃତ୍ୟୁ ପରେ କଷ୍ଟପାଏ ଉଭୟ ଲୋକରେ କଷ୍ଟପାଏ । 'ମୁଁ ପାପ କଲି' ଏହା ଭାବି ଭାବି ସନ୍ତପ୍ତ ହୁଏ । ଦୁର୍ଦ୍ଦଶା ଲଭି କରି ଅତ୍ୟନ୍ତ ସନ୍ତପ୍ତ ହୁଏ ।'

—ବୁଦ୍ଧବାଣୀ—

ପୁଣ୍ୟବାନ ଇହଲୋକରେ ଆନନ୍ଦ ପାଏ, ମୃତ୍ୟୁପରେ ଆନନ୍ଦିତ ହୁଏ—ଉଭୟ ଲୋକରେ ଆନନ୍ଦିତ ହୁଏ । ସେ ନିଜର ବିଶୁଦ୍ଧି ଦେଖି ଆନନ୍ଦରୁ ଅଧିକ ଆନନ୍ଦ ଲାଭକରେ ।

ଯାଗ, ଦାନ, ଦୟା, ବେଦ, ସତ୍ୟ ତପ ।
ଏ ଛଅ କରନ୍ତି ପାତକକୁ ଲୋପ ॥
ପୁଣ୍ୟ-ସୂର୍ଯ୍ୟ ସକାଶୁଁ ପାପ ଅନ୍ଧକାର ।
ରହି ନ ପାରଇ କେବେହିଁ ମନେକର ॥

—ମହାଭାରତ—

———

# ଧନ

## ଧନର ଶକ୍ତି

ଇଂରାଜ କବି ଷ୍ଟିଭେନ୍‌ସନ୍ କହିଅଛନ୍ତିଃ—

ରକ୍ତଦ୍ୱାରା ମନୁଷ୍ୟର ପ୍ରାଣ ରକ୍ଷଣ ସମ୍ଭବ ହେଲାପରି ଅର୍ଥ ଜୀବର ପ୍ରାଣସ୍ୱରୂପ ।

ଧନ ସଞ୍ଚୟ୍ତ ଭାବ—ଶ୍ରୀକୃଷ୍ଣ କହିଲେ 'ବିତ୍ତେଶୋ ଯକ୍ଷରକ୍ଷସାମ୍' ଶ୍ରୀକୃଷ୍ଣ ଏ କଥା ଦର୍ଶାଇବାର ତାତ୍ପର୍ଯ୍ୟ ହେଉଛି—ସଂସାରୀ ପକ୍ଷରେ ଧନ ସଞ୍ଚୟ କରିବା ଅଧର୍ମ ନୁହେ । ଗୃହୀ ହେଲେ ଧନ ଅର୍ଜନ କରିବାକୁ ଓ ଧନ ସାଇତିବାକୁ ମାନବ ବାଧ୍ୟ । ଧନର ଅନେକ ଖରାପ ଗୁଣ ଥିଲେ ମଧ୍ୟ ଏହାର ଗୋଟିଏ ଅତି ଉତ୍କୃଷ୍ଟ ଗୁଣ ଅଛି । ତାହା ହେଉଛି ଧନଦ୍ୱାରା ବି ଭଗବାନ୍ ସୁଲଭ୍ୟ ହୁଅନ୍ତି । ଯେଉଁମାନେ ଧନୀ, ଇଚ୍ଛା କଲେ ସେମାନେ ଅନ୍ୟ ଦାଗରେ ସମୟ ନ ଖଟାଇ ଘରେ ରହି ସାଧନ ଭଜନ କରିବାକୁ ଅକ୍ଳେଶରେ ସମୟ ଦେଇ ପାରନ୍ତି; ପୁଣି କୁବେର ପରି ଆଚରଣ କଲେ ଭଗବାନଙ୍କୁ ପାଇବା ପଥ ଅଧିକ ସୁଗମ ହୁଏ । କୁବେର ବଡ଼ କୃପଣ । କୃପଣ ନ ହେଲେ ସଞ୍ଚୟ କରି ହୁଏ ନାହିଁ । କୃପଣତା ମନ୍ଦଗୁଣ ନୁହେଁ ଯଦି ଏହି ଗୁଣକୁ ଭଗବତ୍‌ମୁଖୀ କରାଯାଏ ।

"ଧନ ସଞ୍ଚୟ ଭଗବତ୍ କର୍ମ ସକାଶେ, ସଞ୍ଚୟକାରୀ ପ୍ରହରୀ ମାତ୍ର । ଦରକାର ସ୍ଥଳେ ଭଗବତ୍ କର୍ମ ସାଧନ ସକାଶେ ଯେଉଁ ବ୍ୟୟ ତାହା ଅପବ୍ୟୟ ନୁହେଁ ।"

ଯେ କୌଣସି କାର୍ଯ୍ୟରେ ଦାନ ଦେଲାବେଳେ ତାହା ବ୍ୟୟ କି ଅପବ୍ୟୟ ଭାବିବାକୁ ହେବ । ସତ୍ ଭାବରେ ଅର୍ଜିତ

ଧନକୁ ଇଷ୍ଟ ବା ଭଗବତ୍ ପ୍ରୀତ୍ୟର୍ଥେ ଖର୍ଚ୍ଚ କଲେ ସୁଫଳ ଥାଏ ଏଥିରେ କୌଣସି ସନ୍ଦେହ ନାହିଁ । —ସ୍ୱାମୀ ଶିବାନନ୍ଦ—

ଅର୍ଥ ଯାହାର ଦାସ ସେହି ମନୁଷ୍ୟ । ଯେଉଁମାନେ ଅର୍ଥର ବ୍ୟବହାର ଜାଣନ୍ତି ନାହିଁ, ସେମାନେ ମନୁଷ୍ୟ ନୁହନ୍ତି । ମନୁଷ୍ୟର ଆକୃତି କିନ୍ତୁ ପଶୁର ବ୍ୟବହାର । ଯେଉଁମାନେ ଅର୍ଥର ଦାସ, ସେମାନେ ଅମନୁଷ୍ୟ ।

ଏହି ଅର୍ଥ ସକାଶେ ମନୁଷ୍ୟ ଚୋରି, ଡକାଇତି ଇତ୍ୟାଦି କେଉଁ କୁକାର୍ଯ୍ୟ ଯେ ନ କରେ ତାହାର ଇୟତ୍ତା ନାହିଁ । ଅର୍ଥ ସକାଶେ ପିତା ପୁତ୍ରସ୍ନେହରେ ଜଳାଞ୍ଜଳି ଦିଏ, ପୁତ୍ର ପିତୃଭକ୍ତି ଭୁଲିଯାଏ, କନିଷ୍ଠ ଜ୍ୟେଷ୍ଠକୁ ଅବମାନନା କରେ ଏବଂ ଜ୍ୟେଷ୍ଠ କନିଷ୍ଠକୁ ନିର୍ଯ୍ୟାତନ କରେ—ଏ ଦୃଶ୍ୟ ଏହି ପୃଥିବୀର ପ୍ରାୟ ପ୍ରତି-ଗୃହରେ ପ୍ରତୀୟମାନ ହୁଏ; କିନ୍ତୁ ଅର୍ଥ ଯେଉଁମାନଙ୍କର ଦାସ ସେମାନେ ଧନ୍ୟ । ବାସ୍ତବିକ ଅର୍ଥ ନ ଥିଲେ ବହୁ ସତ୍‌କାର୍ଯ୍ୟ କରିବାର ସୁବିଧା ମିଳେ ନାହିଁ । ବିଦ୍ୟାଳୟପ୍ରତିଷ୍ଠା, ଅତିଥିଶ୍ରମ-ସ୍ଥାପନ, ପୁଷ୍କରଣୀଖନନ, ସାଧୁ-ବୈଷ୍ଣବ-ସେବା, ଛତ୍ରାବାସ ସ୍ଥାପନ ଇତ୍ୟାଦି ବହୁ ସତ୍‌କାର୍ଯ୍ୟ ଅର୍ଥ ଉପରେ ନିର୍ଭର କରେ । ମନୁଷ୍ୟ କାମିନୀ ତ୍ୟାଗକରି ରହିପାରେ; କିନ୍ତୁ କାଞ୍ଚନାଭାବରେ ରହିବା ବଡ଼ ଦୁଷ୍କର । ସୁତରାଂ ଯେଉଁମାନେ କାଞ୍ଚନକୁ ବା ଅର୍ଥକୁ ନିଜର ଇଚ୍ଛା ଅନୁଯାୟୀ ସତ୍କାର୍ଯ୍ୟରେ ଲଗାଇ ପାରନ୍ତି ସେହିମାନଙ୍କ ହସ୍ତରେ ଅର୍ଥ ରହିବା ବାଞ୍ଛନୀୟ । ତାହା ହେଲେ ଦେଶର, ସମାଜର ଏବଂ ନିଜେ ଧନୀର ମଧ୍ୟ ପ୍ରଭୂତ ଉପକାର ସାଧିତ ହୁଏ । ଯେଉଁମାନେ ମନୁଷ୍ୟ ସେମାନଙ୍କ ନିକଟରେ ଅର୍ଥର ପ୍ରକୃତ ଅର୍ଥ ଅଛି; କିନ୍ତୁ ଯେଉଁମାନେ ଅମନୁଷ୍ୟ ସେମାନଙ୍କ ନିକଟରେ ଅର୍ଥ କେବଳ ଅନର୍ଥର ହେତୁ ଅଟେ ।

## ଧନର ମର୍ଯ୍ୟାଦା

"ଯେଉଁ ଧନ ପ୍ରତିପାଦନ କର ତୁମେ ଭୋଗ
ଯେଉଁ ଧନ ସତ୍‌ପାତ୍ରରେ କର ତୁମ୍ଭେ ତ୍ୟାଗ
ଅସାର ସଂସାରେ ସେହି ଧନ ଅଟେ ସାର
ବ୍ୟୟହୀନ ଧନସବୁ ଅଟଇ ପରର" —ଚାଣକ୍ୟ—

"ଦେବ, ଦ୍ୱିଜ, ବନ୍ଧୁଗଣେ କରଣ ବଞ୍ଚିତ
ଆତ୍ମାକୁ ନ ଦେଇ ଯେହୁ କରଇ ସଞ୍ଚିତ
ସେହି କୃପଣର ଧନ କେଉଁ ଅଢ଼େ ଯାଏ
ଅଗ୍ନି ଉଚାଇତ ଚୋର କବା ରାଜା ଖାଏ"
—ହିତୋପଦେଶ, ମିତ୍ରଲାଭ—

## ସତ୍ ଓ ଅସତ୍ ଧନର ବ୍ୟବହାର

"ଦେବପୂଜା, ଗୁରୁଜନ, ଦରିଦ୍ର ବିପ୍ରରେ
ବନ୍ଧୁଜନେ, ମିତ୍ରଠାରେ, ବିବାହ କର୍ମରେ
ଯଜ୍ଞ, ଅଗ୍ନି, ତର୍ପଣାଦି, ମଙ୍ଗଳ କାର୍ଯ୍ୟରେ
ଉତ୍ତମ ଲୋକର ଧନ ଲାଗେ ଏତେଠାରେ ।
ଦ୍ୟୂତ-କ୍ରୀଡ଼ା, ନାରୀବଶେ, ଜଳ, ଅନଳରେ
ଶତ୍ରୁନ୍ୟେ, ନୃପମାନଙ୍କରେ ଅବର ଚସ୍କରେ
କୃପଣଭାବରେ ଯେହୁ ସଞ୍ଚିଥାଇ ଧନ
ପାପହେତୁ ବ୍ୟୟ ହୁଏ ନଷ୍ଟେ ତାହା ଜାଣ" ।
—ହିତୋପଦେଶ—

## ଧନରେ ପନ୍ଦରଟି ମନ୍ଦ ଗୁଣ ଥାଏ

"ଅର୍ଜନ, ସାଧନ, ସଞ୍ଚୟ, ଧନ ସେ ସର୍ବ ଦୁଃଖମୟ ।
ଚୌର୍ଯ୍ୟ, ମିଥ୍ୟା, ହିଂସା, ଦମ୍ଭ, ବଇର ଛନ୍ଦ ମନ୍ଦଭାବ ।

କ୍ରୋଧ କୁଟିଳ ଅବିଶ୍ୱାସ, ଶ୍ରଦ୍ଧା ବ୍ୟସନ ଯେ ବିଶେଷ ।
ଏ ପଞ୍ଚଦଶ ଦୋଷ ଧନେ, ଏଣୁ ପଣ୍ଡିତ ସାଧୁଜନେ ।
ଧନ ସଞ୍ଚୟ ଦୂର କରି, ନିଯୁତ କର୍ମକୁ ଆଦରି" ।

—ଭକ୍ତକବି ଜଗନ୍ନାଥ ଦାସ-ଭାଗବତ—

"ଲୋକେ ଭାବନ୍ତି ଅର୍ଥ ହେଉଛି ସର୍ବସ୍ୱ ଓ ମୂଲ୍ୟବାନ୍ । କିନ୍ତୁ ପ୍ରକୃତରେ ତାହା କ'ଣ ଠିକ୍ ? ଟଙ୍କା ଥିଲେ କୋଠାବାଡ଼ି କିଣା ଯାଇପାରେ; କିନ୍ତୁ ଆଦର୍ଶ ପାରିବାରିକ ଜୀବନପାଇଁ ଗୃହ ପ୍ରସ୍ତୁତ କରି ନ ପାରେ । ଟଙ୍କା ଥିଲେ ଶଯ୍ୟା ସଂଗ୍ରହ କରାଯାଇ ପାରେ; କିନ୍ତୁ ନିଦ୍ରା ସଂଗ୍ରହ କରାଯାଇ ନ ପାରେ । ଟଙ୍କା ଥିଲେ ପୁସ୍ତକ କିଣା ଯାଇପାରେ; କିନ୍ତୁ ବିଦ୍ୟା ଓ ଜ୍ଞାନ କିଣାଯାଇ ନ ପାରେ । ଟଙ୍କା ଥିଲେ ନିରାପତ୍ତା ଓ ତଥାକଥିତ ସାମାଜିକ ଉଚ୍ଚଆସନ (**Status**) ମିଳିପାରେ; କିନ୍ତୁ ସନ୍ତୋଷ ମିଳେ ନାହିଁ । ଜୀବନରୁ ଆମେମାନେ ଶିକ୍ଷା କରୁଛୁଁ ଯେ, ଆଧ୍ୟାତ୍ମିକତା ଶୂନ୍ୟ ଜଡ଼ ବିଷୟମାନ ଅତି ମୂଲ୍ୟହୀନ ଓ ତାହା ସୁଖ, ଶାନ୍ତି ଓ ସନ୍ତୋଷ ଦେଇ ପାରେ ନାହିଁ ।

ଜଣେ ଅର୍ଥନୀତିଜ୍ଞ କିଛିକାଳ ପୂର୍ବେ ଟଙ୍କା (**money**) ର କରାମତି ବିଷୟରେ ଗୋଟିଏ ଚମତ୍କାର ବ୍ୟାଖ୍ୟା ଦେଇ ଲେଖିଥିଲେ—

କେହି ଲୋକ ଯଦି ଟଙ୍କାପଛରେ ଦୌଡ଼ିଲା, ଲୋକେ କହିବେ—ଟେଇଟା ଟଙ୍କାପାଗଲା; ସେ ଯଦି ଟଙ୍କା ସାଇତିଲା, କହିବେ ଏଇଟା ପୁଞ୍ଜିପତି; ସେ ଯଦି ଖର୍ଚ୍ଚ କଲା, କହିବେ ଏଇଟା ଉଡ଼ାବୁଡ଼ା; ସେ ଯଦି ଟଙ୍କା ନ ପାଇଲା, କହିବେ—ଏଇଟା ଅଇରି-ଖପରି ବଇରି-ବାଅ; ସେ ଯଦି ଟଙ୍କା ପାଇବା-ପାଇଁ ଚେଷ୍ଟା ନ କଲା, କହିବେ ଏଇଟାର ଉଚ୍ଚାଭିଳାଷ ନାହିଁ;

ସେ ଯଦି ବିନା ପରିଶ୍ରମରେ ଟଙ୍କା ପାଇଗଲା, କହିବେ ଏଇଟା ପରାଙ୍ଗପୁଷ୍ଟ-ଶୋଷକ; ସେ ଯଦି ସାରା ଜୀବନ କଠୋର ପରିଶ୍ରମରେ ଟଙ୍କା ରୋଜଗାର କରି ତାକୁ ଜମେଇ ରଖିଲା, ତାକୁ କହିବେ ବୋକାଟା, ଜୀବନରେ କିଛି ହେଲେ ଭୋଗ କଲା ନାହିଁ ।''

ତେବେ ଟଙ୍କାକୁ ନେଇ ଲୋକ କରିବ କ'ଣ ? ଯାହା କଲେ ବି ଟଙ୍କା ମନୁଷ୍ୟକୁ ଟାପରି ଖୁଆଇଲା । ଏ ଟଙ୍କା କେତେ ଚିଟିକାର ଶୁଣାଉଛି ତା'ର ସୀମା ନାହିଁ । ମନୁଷ୍ୟର ଏଥିରେ କର୍ତ୍ତବ୍ୟ କ'ଣ ? ଏ ଟଙ୍କା କବଳରୁ ଲୋକ ରକ୍ଷା ପାଇବ କିପରି ? ଅଥଚ ଏଣେ କବି କହୁଛନ୍ତି—

**"Money Money, Money,**
**Brighter than sunshines,**
**Sweeter than honey."**

"ଟଙ୍କା, ଟଙ୍କା, ଟଙ୍କା,
ରବିରଶ୍ମି ଠାରୁ ଉଜ୍ଜ୍ୱଳତର
ମଧୁଠାରୁ ବଳି ଅଟଇ ମଧୁର,
ହାତେ ଦେଇ ଚିକେ ଚଖା !
ଟଙ୍କା, ଟଙ୍କା, ଟଙ୍କା ।''

ଏ ଟଙ୍କା ପ୍ରକୃତରେ ଖପରମିଶା ରୁପା ବା ଚକଚକିଆ କାଗଜ ନୋଟ ହେଲେ ସୁଦ୍ଧା ଏହାର କରାମତି ଏପରି ଯେ ଏହା ସମସ୍ତଙ୍କୁ ବଶ କରିପାରେ । ଏହାଠାରେ ଦେବତା, ମନୁଷ୍ୟ, ପଶୁପକ୍ଷୀ, ସ୍ଥାବର, ଜଙ୍ଗମ ସମସ୍ତେ ବଶୀଭୂତ । ଟଙ୍କା କ'ଣ ନ କରିପାରେ କହ । ଏହା ଅହାର, ପରିଧାନ, ନିତ୍ୟ ପ୍ରୟୋଜନ, ରାଜନୀତିକସ୍ଥାନ, ସାମାଜିକ ଆସନ, ବନ୍ଧୁତା, ବୈବାହିକ ଜୀବନ ଦେଇଛି । ଏହା ଭୂଇଁ ତାଡ଼ି ଦେଉଛି, ଗଛ ଉପୁଡ଼ାଇ ଦେଉଛି,

ଜୀବଜନ୍ତୁଙ୍କୁ ଅଯୁତ କରି ରଖି ଦେଉଛି, ମନୁଷ୍ୟକୁ ଦାସ କରୁଛି, ରଜା କରୁଛି, ମନ୍ତ୍ରୀ କରୁଛି ସୁଖ ଦେଉଛି, ଦୁଃଖ ଦେଉଛି, ଯୁଦ୍ଧ ଲଗାଇ ଦେଉଛି, ସ୍ନେହ ଅର୍ଜୁଛି; କ'ଣ ନ କରୁଛି ଏ ଟଙ୍କା ? ମନୁଷ୍ୟ ଏ ଟଙ୍କାକୁ ସୃଷ୍ଟି କରୁଛି, ଅଥଚ ଏହା ସେହି ମନୁଷ୍ୟକୁ ବାନ୍ଧି ରଖୁଛି, ତା'ର ଦାସ କରି ରଖୁଛି ।

× × × ×

## ଧନୀମାନଙ୍କ ପ୍ରତି

ମାହାତ୍ମା ଯୀଶୁଖ୍ରୀଷ୍ଟ କହନ୍ତି—"ଆମ୍ଭେମାନେ ଜଗତକୁ କିଛି ଆଣିନାହୁଁ, ପୁଣି ଏଠାରୁ କିଛି ନେଇ ଯାଇ ନ ପାରୁ; ଏଣୁ ଅନ୍ନବସ୍ତ୍ର ଥିଲେ ଆମ୍ଭମାନଙ୍କ ନିମନ୍ତେ ଯଥେଷ୍ଟ ।

ମାତ୍ର ଯେଉଁମାନେ ଧନୀ ହେବାକୁ ଇଚ୍ଛା କରନ୍ତି, ସେ ପରୀକ୍ଷା ଓ ଫାନ୍ଦରେ ପୁଣି ଅନେକ ପ୍ରକାର ଅସଙ୍ଗତ କ୍ଷତିକାରକ ଅଭିଳାଷରେ ପଡ଼ନ୍ତି, ଏହିସବୁ ମନୁଷ୍ୟକୁ ଧ୍ୱଂସ ଓ ବିନାଶରୂପ ସାଗରରେ ମଗ୍ନ କରେ । କାରଣ ଧନ ଲୋଭ ସମସ୍ତ ଅନିଷ୍ଟର ମୂଳ ।

ଯେଉଁମାନେ ଇହକାଳରେ ଧନୀ, ସେମାନେ ଯେପରି ଅହଙ୍କାରୀ ନ ହୁଅନ୍ତି ଏବଂ ଅସ୍ଥାୟୀ ଧନ ଉପରେ ନିର୍ଭର ନ କରନ୍ତି । ପରୋପକାର କରି ସମସ୍ତ ସତ୍‌କର୍ମରେ ଧନୀ ହୁଅନ୍ତୁ ଆଉ ମୁକ୍ତ ହସ୍ତରେ ଉଦାରଭାବରେ ଦାନ କରନ୍ତୁ । ଏହି ପ୍ରକାର କଲେ ସେମାନେ ଭାବୀ ଜୀବନ ନିମନ୍ତେ ଉତ୍କୃଷ୍ଟ ମୂଳଧନ ଆପଣା ଆପଣାପାଇଁ ସଞ୍ଚୟ କରିବେ" ।

—ବାଇବେଲ—

"ଯେଉଁମାନେ ଐଶ୍ୱର୍ଯ୍ୟ ଭୋଗରେ ମସ୍ତ ହୋଇ ରହନ୍ତି ଦିନେ ନା ଦିନେ ସେମାନଙ୍କର ପତନ ହେବ" ।

—ମାଧବ ଦେବ—

## ଧନ-ଆଶାର ନିବୃତ୍ତି ନାହିଁ

"ନିର୍ଦ୍ଧନର ଦଶଟଙ୍କା, ଦଶଟଙ୍କିଆର ଶହେ, ଶହେ ଟଙ୍କିଆର ହଜାରେ, ହଜାର (ସହସ୍ର) ପତିର ଲକ୍ଷେ, ଲକ୍ଷପତିର ରାଜତ୍ୱ, ରାଜାର ଚକ୍ରବର୍ତ୍ତିତ୍ୱ, ଚକ୍ରବର୍ତ୍ତୀର ଇନ୍ଦ୍ରତ୍ୱ, ଇନ୍ଦ୍ରଙ୍କର ବ୍ରହ୍ମାପଦ, ବ୍ରହ୍ମାଙ୍କର ଶିବ ପଦ ଏବଂ ଶିବଙ୍କର ହରିପଦ ପର୍ଯ୍ୟନ୍ତ ଆଶା— ଏଣୁ ଆଶାର ନିବୃତ୍ତି ନାହିଁ" । —ଅଷ୍ଟବଜ୍ର—

## ସନ୍ତୋଷ

"ଯେକୌଣସି ଅବସ୍ଥାରେ ଥାଅ, ସେଥିରେ ସନ୍ତୁଷ୍ଟ ରହିବାକୁ ଶିକ୍ଷାକର । ହୀନତା ଭୋଗ କରିବାରେ, ସଙ୍କଟ ଅବସ୍ଥାରେ ଓ ସବ ବିଷୟରେ ପରିତୃପ୍ତ ହେବାରେ ବା କ୍ଷୁଧିତ ରହିବାରେ, ପ୍ରଚୁର ଭୋଗ କରିବାରେ କି ଅବା ଅଭାବଗ୍ରସ୍ତ ହେବାରେ ନିଜକୁ ସୁଶିକ୍ଷିତ କର" ।

—ବାଇବେଲ—

## କେତେ କଥାରେ ଅଧିକ ବ୍ୟୟକଲେ ଦୋଷ ନାହିଁ

"ଯଶୋଲାଭ, ମିତ୍ରଲାଭ, ଯଜ୍ଞ, ପରିଣୟ,<br>ଦରିଦ୍ର ବନ୍ଧୁର ହିତ, ବିପକ୍ଷର କ୍ଷୟ,<br>ବିପଦ ଉଦ୍ଧାର ଆଉ ପ୍ରିୟାର ସନ୍ତୋଷ<br>ଏସବୁ ଅଧିକ ବ୍ୟୟେ ନାହିଁ କିଛି ଦୋଷ" ।

—ହିତୋପଦେଶ—

## ନିର୍ଦ୍ଧନତା ସମସ୍ତ ଆପଦର ମୂଳ

"ଧନହୀନ ବ୍ୟକ୍ତି ସବୁଠାରେ ଲଜ୍ଜା ପାଏ—ଲଜ୍ଜାହେତୁ ତାହାର ତେଜ ମଧ୍ୟ କମିଯାଏ । ତେଜହୀନ ହେଲେ ସେ ସବୁଠାରେ ପରାଭୂତ ହୁଏ । ସେହି ପରାଜୟରୁ ସେ ନିର୍ବେଦ ଏବଂ ଶୋକାତୁର ହୁଏ—ତେଣୁ ତାହାର ବଳ ଓ ବୁଦ୍ଧି କମିଯାଏ । ଅତଏବ ନିର୍ଦ୍ଧନତା ସମସ୍ତ ଅପଦର ମୂଳ" ।

—ମୃଚ୍ଛକଟିକ—

## ବହୁକୁଟୁମ୍ବୀ ଦରିଦ୍ରର ଦୁଃଖ

"ଅହା ଯାର ସଉଭାଗ୍ୟ ନାହିଁ, ଧନ ନାହିଁ
ତା ଜନମ ଧିକ ହେଉ, ଧିକ ହେଉ ସେହି ।
ଉଦର ପୋଷିବା ପାଇଁ ଯେ ସଦା ଚିନ୍ତିତ
ଅତିଥି ସତ୍କାରେ ଅଟଇ ଯେ ଅସମର୍ଥ ।
କୌଣସି ପ୍ରକାରେ ଯା'ର ନାହିଁ ସଦାଗୃହ
ଜୀବିକା ନିର୍ବାହ ହୁଏ ପରଧନେ ଯା'ର ।
ସୁଖ୍ୟାତି ନ ଥାଏ ଯା'ର ବନ୍ଧୁବାନ୍ଧବରେ
ଧିକ ହେଉ ତା'ର ଜୀବନକୁ ଏ ସଂସାରେ ।
ଜନମ ହୋଇବେ ଯା'ର ବହୁତ ସନ୍ତାନ
ସେ ଯେବେ ହୋଇବେ ଅଇଶ୍ୱର୍ଯ୍ୟରେ ବିହୀନ ।
ନ ଥିବ ଗୃହରେ ଧନ ଧାନ୍ୟ ଯେବେ କିଛି
ତା'ର ଜୀବନରେ କେଉଁ ପ୍ରୟୋଜନ ଅଛି ?
ଶତ ଶତ ଧିକ ହେଉ ଜୀବନକୁ ତା'ର
ଜୀଇଁଥିଲେ ମୃତକଳ୍ପ ଅଟଇ ସେ ନର ।

ଦାରିଦ୍ର୍ୟ-ସାଗରେ ମଗ୍ନ ହୁଏ ଯେଉଁ ଜନ
ତା ସଙ୍ଗେ ବୁଡ଼ଇ ତା'ର ଥାଏ ଯେତେ ଗୁଣ ।
କୁଳଶୀଳ ମଧୁରତା ପାଣ୍ଡିତ୍ୟ ଏ ସର୍ବେ
ଥିଲେ ହେଁ ତାହାର ଶୋଭା ନ ପାଆନ୍ତି ଭବେ ।
ଐଶ୍ୱର୍ଯ୍ୟରେ ହୀନ ହୋଇଥାଏ ଯେଉଁ ବ୍ୟକ୍ତି
ତାହାକୁ ପାଶରୁ ସର୍ବେ ଦୂରକରି ଦିଅନ୍ତି ।
ପୁତ୍ର ପୌତ୍ର ଭ୍ରାତୃବନ୍ଧୁ ଶିଷ୍ୟ ସହୋଦର
ଏ ସର୍ବେ ପାଶରୁ ତାକୁ କରନ୍ତି ଅନ୍ତର ।
ଚଣ୍ଡାଳ ବା ବିପ୍ର ହେଉ ଧନ ଯେବେ ଥାଏ
ଦେଖିଲେ ଆଦର ତାକୁ କରନ୍ତି ସଭିଏଁ ।
ଦରିଦ୍ର ହୋଇଲେ ଘୃଣା କରନ୍ତି ସକଳେ ।
ଜଗତେ ଦାରିଦ୍ର୍ୟଠାରୁ ଦୁଃଖପ୍ରଦ ହୋଇ
ବିଚାରିଲେ ଆଉ କିଛି କଥା ଦିଶୁନାହିଁ ।
ତା ମଧ୍ୟେ ଦରିଦ୍ର ଯେବେ ବହୁ-ପୁତ୍ରାନ୍ୱିତ
ହୁଅଇ ଯେ ଦୁଃଖ ତାହା କେ କରିବ ଅନ୍ତ ।
ଯାହାର ସମ୍ପତ୍ତି ଅଛି ସେ ନିଷ୍ଠୁର ହେଉ
ଗୁଣବନ୍ତ ହେଉ ଅବା ନିଷ୍ଠୁର ନ ହେଉ ;
ନିର୍ଗୁଣ ମୂରୁଖ ଅବା ହେଉ ସେ ପଣ୍ଡିତ
ଧାର୍ମିକ ହେଉ ବା ଅଧର୍ମରେ ହେଉ ସ୍ଥିତ ।
ସନ୍ଦେହ ନ ଥାଇ ସବୁ ପ୍ରାଣୀମାନଙ୍କର
ଧନ ଥିବା ହେତୁ ପୂଜ୍ୟ ହୁଅଇ ସେ ନର" ।

—ନାରଦୀୟ ପୁରାଣ—

# ଦାନ

ଦାନ ତିନିପ୍ରକାର—ସାତ୍ତ୍ୱିକ, ରାଜସିକ ଓ ତାମସିକ ।

"ବାହାରେ ପ୍ରଶଂସା ପାଇବାପାଇଁ କିମ୍ବା ନିଜର ବଡ଼ିମା ଦେଖାଇବାପାଇଁ ଦାନ ନ କରି ଯେଉଁଲୋକ 'ଦାନ କରିବା'ଟାକୁ ନିଜର କର୍ତ୍ତବ୍ୟ ଓ ଧର୍ମ ମନେକରି ଦାନ କରେ ସେହି ଦାନକୁ ସାତ୍ତ୍ୱିକ ଦାନ କୁହାଯାଏ । ଅନ୍ତରମଧ୍ୟ ଯାହାକୁ ଦାନ ଦେବ ତାହାଠାରୁ କୌଣସି ପ୍ରକାର ଉପକାର ଆଶା ରଖିବ ନାହିଁ— ଏହା ହେଉଛି ସାତ୍ତ୍ୱିକ ଦାନ" । —ଗୀତା—

ସ୍ୱାମୀ ବିବେକାନନ୍ଦଙ୍କ ଭାଷାରେ ଗୋଲାପଫୁଲ ସୁଗନ୍ଧ ଦାନ କଲାପରି ତୁମେ ଦାନ କର ।

"ଲୋକ ଦେଖେଇବାପାଇଁ ସେମାନଙ୍କ ସାକ୍ଷାତରେ ଯେପରି ଧର୍ମ କର୍ମ ନ କର ଏଥିପାଇଁ ତୁମ୍ଭେମାନେ ସାବଧାନ ହୋଇଥାଅ କିମ୍ବା ଲୋକମାନଙ୍କଠାରୁ ଗୌରବ ପାଇବାପାଇଁ ଦାନ ନ କର; କିନ୍ତୁ ତୁମ୍ଭେ ଦାନ କରିବା ସମୟରେ ତୁମ୍ଭର ଦକ୍ଷିଣ ହସ୍ତ କ'ଣ କରୁଅଛି ତାହା ତୁମ୍ଭର ବାମହସ୍ତ ନ ଜାଣୁ, ଯେପରି ତୁମ୍ଭର ଦାନ ଗୋପନରେ ହେବ । ଆଉ ତୁମ୍ଭର ପିତା ଯେ ଗୋପନରେ ଦେଖନ୍ତି ସେ ତୁମ୍ଭକୁ ଫଳ ଦେବେ । ଯେ ମୁକ୍ତ ହସ୍ତରେ ବିତରଣ କରିଅଛି ସେ ଦରିଦ୍ରମାନଙ୍କୁ ଦାନ ଦେଇଅଛି । ତାହା ଚିରସ୍ଥାୟୀ ଅଭାବଗ୍ରସ୍ତ ଲୋକଙ୍କୁ ଦାନ କରିବା ନିମନ୍ତେ ଯେପରି କାହା ପାଖରେ କିଛି ଥାଇପାରେ । ଏହା ସତ୍ୟ, ଯେ ଅଳ୍ପ ବୁଣେ ସେ ଅଳ୍ପ କାଟେ; ଆଉ ଯେ ପ୍ରଚୁର ବୁଣେ ସେ ପ୍ରଚୁର କାଟିବ । ଈଶ୍ୱର ହୃଷ୍ଟଚିତ୍ତ ଦାତାଙ୍କୁ ଭଲ ପାଆନ୍ତି" । —ବାଇବେଲ—

## ରାଜସିକ ଦାନ

ଯେଉଁ ଲୋକ ଫଳ ପାଇବା ଆଶାରେ କମ୍ବା ପ୍ରତ୍ୟୁପକାର ଆଶା ରଖି କମ୍ବା ଇଚ୍ଛା ନ ଥାଇ କୁଣ୍ଠିତଚିତ୍ତରେ ଦାନ କରନ୍ତି, ସେ ଦାନକୁ ରାଜସିକ ଦାନ କହନ୍ତି ।

## ତାମସିକ ଦାନ

ଦେଶ, କାଳ, ପାତ୍ର, ନ ବିଗ୍ଭରି, ନ ବୁଝି, ଘୃଣାର ସହିତ ଯେଉଁ ଦାନ ଦିଆଯାଏ ତାହାକୁ ତାମସିକ ଦାନ କହନ୍ତି ।

"ଦାନ—ତୁମ ଆୟର ଏକ ଦଶମାଂଶ ବା ଅନ୍ତତଃରେ ଟଙ୍କାରେ ଅଣାଏ ହିସାବରେ ପ୍ରତିମାସରେ ଦାନ କର । ତୁମକୁ ଯେ କୌଣସି ବସ୍ତୁ ମିଳିଲେ ତାହାକୁ ସମସ୍ତ ସ୍ୱଜନ, ମିତ୍ର, ଚାକର-ପ୍ରଭୃତି ମଧ୍ୟରେ ବାଣ୍ଟି ଉପଭୋଗ କର । ସାରା ସଂସାର ତୁମର କୁଟୁମ୍ବ ହୋଇଯାଉ । (ବସୁଧୈବ କୁଟୁମ୍ବକଂ) ସ୍ୱାର୍ଥ ତ୍ୟାଗ କର" ।

—ଶିବାନନ୍ଦ—

ଯାହା ହୋମ କର, ଯାହା ଭକ୍ଷଣ କର, ଯାହା ଦାନ କର ଓ ଯାହା ତପସ୍ୟା କର ସେ ସମସ୍ତ ଗୁରୁ ଭଗବାନଙ୍କୁ ଅର୍ପଣ କର ।

ଦାନକାର୍ଯ୍ୟ ମନର ଧାରଣା ଅନୁସାରେ ଫଳ ପ୍ରଦାନ କରେ । ସେହି ଗୀତାରେ ଅଛି—ଯିଏ ଦେବତାମାନଙ୍କ ଉଦ୍ଦେଶ୍ୟରେ, ଯେ ପିତୃଲୋକ ଉଦ୍ଦେଶ୍ୟରେ, ଯେ ପ୍ରାଣୀଗଣଙ୍କ ଉଦ୍ଦେଶ୍ୟରେ ଦାନ-ବ୍ରତୀ ହୁଏ, ସେ ସେହି ସେହି ଲୋକ ପ୍ରାପ୍ତ ହୁଏ । ସାଧାରଣ ଧର୍ମୀଲୋକ ପ୍ରାଣୀଗଣଙ୍କ ହିତାର୍ଥେ ବା କଲ୍ୟାଣାର୍ଥେ ଦାନ କରନ୍ତି । ତେଣୁ ପରଜନ୍ମମାନଙ୍କରେ ପୁଣ୍ୟକର୍ମ ଅନୁପାତରେ ଉଚ୍ଚ ଧର୍ମୀ

ଗୃହରେ ଜନ୍ମଲାଭ କରନ୍ତି ମାତ୍ର; କିନ୍ତୁ ଏ ଧାରଣା ବଦଳାଇ ଯଦି ସେହି ପ୍ରାଣୀଗଣ ଭଗବାନଙ୍କ ଭିନ୍ନ ଭିନ୍ନ ରୂପ ବୋଲି ଦୃଢ଼ଧାରଣା କରି ସେହି ଭଗବାନଙ୍କ ପ୍ରୀତ୍ୟର୍ଥେ ଦାନ କରି-ଯାଇପାରେ ତା'ହେଲେ ସେ ଭଗବତ୍ ଲୋକକୁ ଗମନ କରେ ।

"ଦାନଫଳେ ନର ଲଭେ ଦୀର୍ଘାୟୁ ଜଗତେ
ଅଷ୍ଟାଦଶ ସିଦ୍ଧି ମିଳେ ଆପେ ହାତେ ହାତେ ।
ଦାନଧର୍ମ ପୁଣ୍ୟଫଳ ଅନ୍ୟଥା ନୁହଇ
ସହସ୍ର ଗୁଣରେ ତାହା ପ୍ରାପତ ହୁଅଇ ।
ବହୁ ପୁଣ୍ୟ ଦାନ ଧର୍ମ ଆଚରଣ କଲେ
ନର ଲଭିଥାଏ ଜନ୍ମ ମାହେନ୍ଦ୍ର ବେଳାରେ ।
ଜନ୍ମଯୋଗ ଲଗ୍ନେ ପୁଣି ଭବେ ହୁଏ ବଡ଼
ଧାର୍ମିକ ପୁଣ୍ୟାତ୍ମା ପୁଣି ଜ୍ଞାନେ ସୁଚତୁର" ।

—ଗରୁଡ଼ ପୁରାଣ—

## କେଉଁ ଦାନରେ କେଉଁ ଫଳ

ମରୁଭୂମି ଭିତରେ ଅଟକିଯାଇଥିବା ତୃଷାର୍ତ୍ତ ଲୋକକୁ ଯିଏ ପାଣି ଦେଲେ ସେହି ବୁନ୍ଦାକ ପାଣି ଶହେ ବର୍ଷର ପାପକୁ ଧୋଇଦିଏ ।

—ଭିଜ୍‌ଦେକ୍ଷା ନୀତିବାକ୍ୟ—

"ଅନ୍ନଦାତା—ଅକ୍ଷୟ ସୁଖ ଜଳଦାତା—ତୃପ୍ତି
ଭୂମିଦାତା—ପ୍ରଚୁର ଭୂମି ଗୃହଦାତା—ଉତ୍ତମ ଗୃହ
ବିଦ୍ୟାଦାତା—ବିଦ୍ୟା ଓ ଯଶ ଅଭୟ ଦାତା—ଐଶ୍ୱର୍ଯ୍ୟ
ଗୋଦାତା—ସୂର୍ଯ୍ୟ ସମାନ ଦୀପ୍ତି ଲାଭ ଧାନ୍ୟଦାତା—ନିରନ୍ତର ସୁଖ

ସୁବର୍ଣ୍ଣଦାତା—ଦୀର୍ଘ ପରମାୟୁ  ରୌପ୍ୟଦାତା—ଉତ୍ତମରୂପ
ବସ୍ତ୍ରଦାତା—ଅଶେଷ ବିଭୂତି  ଶଯ୍ୟାଦାତା—ଉତ୍ତମଭାର୍ଯ୍ୟା" ।

—ମନୁ—

ମରିବା ଲୋକଙ୍କର ଦାନ ଅଟେ ମିଛ
ଯେଉଁପରି ରୋଗୀର ବଇଦ ଅଟେ ମିଛ ।

## ଦାନ ନ ଦେଲେ

"ଧନଥାଇ ଯେଉଁଜନ ଦାନ ନ ଦଅଇ
ସଂସାରରେ ସେ ଜନକୁ ଧିକ ଧିକ କହି ।
ଧନ ଅର୍ଜି ସଞ୍ଚେ ଯେହୁ ନ ଖାଇ ନ ଦେଇ
ଇହ ପରଲୋକେ ସେହୁ ନାନା ଦୁଃଖ ପାଇ ।
ଧନ ସଞ୍ଚି ରଖି ଯେହୁ ଦୁଃଖେ କାଳ ବଞ୍ଚେ
ପରଜନ୍ମରେ ସେ ଅଧମ ଦୁଃଖେ କାଳ କାଟେ ।
ଥୋକାଏ ଦଅଇ ଯେହୁ ଥୋକାଏ ସଞ୍ଚଇ
ଇହ ପରଲୋକେ ସବୁ ସୁଖ ସେ ଲଭଇ ।
ଯେହୁ ନ ସଞ୍ଚଇ ଖାଇ ପରେ ଦେଇ ଦାନ
ପର ଲୋକେ ଧନବନ୍ତ ହୁଅଇ ସେ ଜନ" ।

—ପଦ୍ମ ପୁରାଣ—

"ଦାନ ନ କରିବା ଦୋଷରୁ ଲୋକ ଦରିଦ୍ର ହୁଏ; ଦରିଦ୍ର ଦୋଷରୁ ଲୋକ ପାପାଗ୍ରସ୍ତ ହୁଏ; ପାପରୁ ନରକଗାମୀ ହୁଏ; ପୁଣି ଦରିଦ୍ର ଓ ପାପୀ ହୁଏ" ।

—ଅଥର୍ବ ବେଦ—

## କେଉଁମାନଙ୍କୁ ଦାନ ଦେବ ନାହିଁ

ଦାମ୍ଭିକ, କୁତାର୍କିକ, ପାଷଣ୍ଡ, ପରପୀଡ଼କ, ପର ସ୍ତ୍ରୀ ଅସକ୍ତ, ନିନ୍ଦୁକ, ଚୌର, ଦୁର୍ଜନ, ଶଠ—ଏହି ସବୁ ଲୋକମାନଙ୍କୁ ଦାନ ଦେବନାହିଁ ।

## କେଉଁମାନଙ୍କଠାରୁ ଦାନ ଗ୍ରହଣ କରିବ ନାହିଁ

"ତୁମ୍ଭେ ବଡ଼ ଦାତା ବୋଲି ମାଗୁଛୁ ଆସିଣ
ଯାହାଙ୍କୁ ନ ମାଗିବ ସେ ଲୋକ ନାମ ଶୁଣ ।
ପରଯୁବତୀ ଉପରେ ଯା'ର ନିତ ଆଶା
ପରକୁ ତ ଅନୁକ୍ଷଣେ କରେ ଯେହୁ ହିଂସା ।
ପର ପ୍ରମାଦ ଶ୍ରବଣେ ମନେ ଯା'ର ସାଧ
ଜୀବ ମାରିବାକୁ ଯେହୁ ହୁଏ ଜାଣ ଲୁବ୍‌ଧ ।
କାହଲ ଦ୍ୱନ୍ଦ କୁହୁକ ବାଦ୍ୟ ନଟକାରୀ
ପାଷଣ୍ଡ ବାକ୍ୟ ଶ୍ରବଣେ ଥାଏ କର୍ଣ୍ଣ ଡେରି ।
ଭୁଜଙ୍ଗ ଖେଳେ ଯେ ଦ୍ୟୂତ ବେଶ୍ୟାଠାରେ ରତ
କୁଧର୍ମ-କର୍ମକୁ ଯେହୁ କରେ ନିତ ନିତ ।
ଅପେ ଅପେ ବଢ଼ି ଯେହୁ ପରନିନ୍ଦା କରେ
ଏ ଲୋକମାନଙ୍କୁ ଦାନ ନ ମାଗିବ ଥରେ" ।

—ନୃସିଂହ ପୁରାଣ—

—————

# ଧର୍ମ

"ଯାହାଦ୍ୱାରା ଇହ, ପର ଉଭୟ ଲୋକରେ ମଙ୍ଗଳ ହୁଏ ତାହାହିଁ ଧର୍ମ" । —କଣାଦ—

ଧର୍ମ କିନ୍ତୁ ଜୀବନର ବାହାରେ ନୁହେଁ—ଏ ଦେଶର ଋଷିମୁନି ଧର୍ମର ସଂଜ୍ଞା ନିରୂପଣ କରି କହିଛନ୍ତି—'ଅଭ୍ୟୁଦୟ-ନିଃଶ୍ରେୟସେ ସାଧନତ୍ୱେନ ଧାରୟତୀତି ଧର୍ମଃ' । ଯେଉଁ ପ୍ରକାରେ ଜୀବନଯାପନ କଲେ ଏ ଜନ୍ମରେ ସୁଖସ୍ୱାଚ୍ଛନ୍ଦ୍ୟ ମିଳେ ଓ ମରଣ ପରେ ସଦ୍‌ଗତି ହୁଏ, ଅର୍ଥାତ୍ ନିଜର ନିଷ୍କଳଙ୍କ ସ୍ମୃତି ଜଗତରେ ରହେ, ସେହି ପ୍ରକାର ଜୀବନ-ଯାପନପ୍ରଣାଳୀର ନାମ ଧର୍ମ ।

ଜଣେ ସ୍ମୃତିକାର ଧର୍ମର ସ୍ୱରୂପ ନିର୍ଦ୍ଦେଶ କରି କହିଛନ୍ତି, 'ଆତ୍ମନଃ ପ୍ରତିକୂଳାନି ପରେଷାଂ ନ ସମାଚରେତ୍' । ଆମ ପ୍ରତି ଯେପରି ବ୍ୟବହାର କଲେ ଆମକୁ ଖରାପ ଲାଗନ୍ତା, ସେପରି ବ୍ୟବହାର ଆମେ ଅପର ପ୍ରତି କରିବା ନାହିଁ—ଏହାହିଁ ଧର୍ମର ମୂଳ କଥା ।

"ଯେଉଁଲୋକ ପ୍ରକୃତ ଧାର୍ମିକ ସେ ସମସ୍ତଙ୍କର ସୁହୃଦ ଏବଂ ସମସ୍ତଙ୍କର ହିତରେ ରତ" ।

—ମହାଭାରତ—

"ଧର୍ମହୀନ ମାନବ ଅହୁଲ ନ ଥିବା ନୌକା ପରି ।
ସଙ୍କଟ ସମୟରେ ଧର୍ମ ମନୁଷ୍ୟକୁ ଉଦ୍ଧାର କରିଥାଏ ।
ଧର୍ମର ଅଙ୍ଗ ବୈରାଗ୍ୟ, ବୈଭବ ନୁହେଁ" ।

—ଗାନ୍ଧୀ—

"ଯେତେଦିନ ପର୍ଯ୍ୟନ୍ତ ଆମ୍ଭେମାନେ ସକଳ ମାନବ ଭ୍ରାତାକୁ ଭଲ ପାଇବାକୁ ସମର୍ଥ ନ ହୋଇଛୁ ସେତେଦିନ ପର୍ଯ୍ୟନ୍ତ ଆମ୍ଭର ଭଗବତ୍ ଭକ୍ତି ମିଥ୍ୟା" । —ଗାନ୍ଧୀ—

"ଧର୍ମ ଏକ ପୋତ ଗଢ଼ିଛନ୍ତି ବିଧି
ତରିବାକୁ ଏହି ସଂସାର-ବାରିଧି
ଧର୍ମ ବିନା ଏକା ମହତପଣିଆ
ଆଉ ବଡ଼ ପଣ ଅଟଇ ଦାଣିଆ" ।

—ରାଧାନାଥ—

"ଧର୍ମହିଁ ଭାରତବାସୀଙ୍କର ଏକମାତ୍ର ପ୍ରାଣ ଓ ଆଗ୍ରହର ବସ୍ତୁ । ଏହି ଧର୍ମହିଁ ଆମ୍ଭମାନଙ୍କ ଜାତୀୟଜୀବନର ମେରୁଦଣ୍ଡ । ତାହାରି ଉପରେ ଆମ୍ଭମାନଙ୍କର ଜୀବନରୂପୀ ପ୍ରାସାଦର ମୂଳଭିତ୍ତି ସ୍ଥାପିତ ।

ଭଲ ହେଉ ଅଥବା ମନ୍ଦ ହେଉ ସହସ୍ର ସହସ୍ର ବର୍ଷଧରି ଭାରତରେ ଧର୍ମ ହିଁ ଜୀବନର ଚରମ ଆଦର୍ଶ ହୋଇ ରହିଅଛି । ଶତ ଶତ ଶତାବ୍ଦୀ ଧରି ଭାରତର ବାୟୁମଣ୍ଡଳ ଧର୍ମର ମହାନ୍ ଆଦର୍ଶସମୂହରେ ପୂର୍ଣ୍ଣ ହୋଇ ରହିଅଛି । ଏହି ଧର୍ମଭାବ ଆମ୍ଭମାନଙ୍କର ପ୍ରତ୍ୟେକ ଶିରା ଓ ଧମନୀରେ ରକ୍ତବିନ୍ଦୁ ସହିତ ମିଶି ରହିଅଛି । ଧର୍ମ ଆମ୍ଭମାନଙ୍କର ପ୍ରକୃତିଗତ ଓ ଜୀବନର ଜୀବନୀ ଶକ୍ତି । ସମଗ୍ର ଜଗତର କଲ୍ୟାଣ ଏହି ଧର୍ମ ଉପରେ ନ୍ୟସ୍ତ । ଧର୍ମ ଛାଡ଼ିଲାକ୍ଷଣି ହିନ୍ଦୁର ଜାତୀୟ ମେରୁଦଣ୍ଡ ଭାଙ୍ଗିଯିବ । ଯେଉଁ ମୂଳଭିତ୍ତି ଉପରେ ଜାତୀୟ ସୁବିଶାଳ ସୌଧ ଗଢ଼ା ହୋଇଥିଲା ତାହା ଭାଙ୍ଗିପଡ଼ିବା ଫଳରେ ସମ୍ପୂର୍ଣ୍ଣ ଧ୍ୱସ୍ତ ହେବ" ।

—ବିବେକାନନ୍ଦ—

"ତୁମ୍ଭମାନଙ୍କୁ ଏହିଟି ଭଲଭାବରେ ସ୍ମରଣ ରଖିବାକୁ ହେବ—ଯଦି ତୁମ୍ଭେମାନେ ଧର୍ମ ଛାଡ଼ି ପାଶ୍ଚାତ୍ୟ ଜାତିର ଜଡ଼ବାଦ ସର୍ବସ୍ୱ-ସଭ୍ୟତାର ଅଭିମୁଖରେ ଧାବିତ ହୁଅ, ତାହାହେଲେ ତିନି ପୁରୁଷ ଯାଉ ନ ଯାଉଣୁ ତୁମ୍ଭେମାନେ ବିନଷ୍ଟ ହେବ" ।

—ବିବେକାନନ୍ଦ—

## ଧର୍ମ କେଉଁଠାରେ ଥାଏ

"ଅଶ୍ୱତ୍ଥ ବଟ ବିଲ୍ୱରେ ତୁଳସୀ ଚନ୍ଦନେ
ଦେବେ ପୁଣ୍ୟଦନେ ପୁଷ୍ପଶାଖାରେ କାନନେ ।
ଦେବାଳୟେ ତୀର୍ଥେ ସଜ୍ଜନରେ ହେବ ଧାମ
ବେଦ ବେଦାଙ୍ଗ ଶ୍ରବଣସ୍ଥଳରେ ବିଶ୍ରାମ ।
ଶ୍ରୀକୃଷ୍ଣ ଗୁଣ କୀର୍ତ୍ତନ ସଙ୍ଗୀତ ଯେ ସ୍ଥାନେ
ବ୍ରତ, ତପ, ଜପ, ଯଜ୍ଞ, ସାକ୍ଷୀ ବାଦ୍ୟମାନେ ।
ଦୀକ୍ଷା ପରୀକ୍ଷା ଶପଥେ ଗୋଷ୍ପଦ ଭୂମିରେ
ଗୋ-ଗୃହେ ଗୋଷ୍ଠରେ ଧର୍ମ ଥିବ କର୍ଣ୍ଣିକାରେ ।"

—ଶିବ ପୁରାଣ—

## ଧର୍ମ କେଉଁଠାରେ ନ ଥାଏ

"ବେଶ୍ୟାର ଗୃହରେ ନରଘାତୀ ଲୋକଘରେ
ନୀଚଜନେ ଖଳେ ପୁଣି ପାମର ଦୁଆରେ
ଅସଜ୍ଜନେ ଧୂର୍ତ୍ତଗୃହେ ରଙ୍ଗ-ଭୂମିସ୍ଥଳେ
ଲୋଭୀ ପୁରପାପୀ ଯେହୁ କଟୁକଥା ବୋଲେ ।
କଳହସ୍ଥାନରେ ମନ୍ଦକର୍ମ ଅବିରତ
ଶାଳଗ୍ରାମ ସାଧୁ ତୀର୍ଥେ ପୁରାଣେ ବର୍ଜିତ ।
ଦସ୍ୟୁ, ଦୁଷ୍ଟ, ମାୟା, ପ୍ରତାରକ ସଂସ୍ଥାନେ
ଅସିଜୀବୀ, ମସୀଜୀବୀ କପଟୀ ଭୁବନେ ।
ସ୍ୱାମୀନିନ୍ଦିତ ଯେ ନାରୀ ବିଷ୍ଣୁ-ଭକ୍ତିହୀନେ
ଜୀବହିଂସାକାରୀ ପୁଣି ଦୀକ୍ଷାହୀନ ଜନେ ।

ସ୍ୱନାରୀଠାରୁ ପ୍ରାଭବ ପାଏ ଯେଉଁ ଜନ
ବାର୍ଣୀକରେ ଶାଳଗ୍ରାମ ଗ୍ରନ୍ଥ ଯେ ବ୍ରାହ୍ମଣ ।
ମିତ୍ରଦ୍ରୋହୀ କୃତଘ୍ନ ଯେ ବିଶ୍ୱାସଘାତକେ
ଶରଣାଗତ ଘାତକୀ ଭ୍ରୂଣଘ୍ନ ପାତକେ ।
ସୀମା ଅପହାରୀ ମିଥ୍ୟାବାଦୀ ଅସଜ୍ଜନେ
ପୁଣ୍ୟକର୍ମହୀନ ମିଥ୍ୟା ସାକ୍ଷ୍ୟ ଯେଉଁ ସ୍ଥାନେ ।
ଏହି ସର୍ବସ୍ଥଳେ ତା'ର ଅଧିକାର ନାହିଁ ।
ମୋର ନିବେଦନ ଜାଣ ଧର୍ମରାଜ ଏହି ।"

—ଶିବ ପୁରାଣ—

## ଲକ୍ଷ୍ମୀ କେଉଁଠାରେ ଥାଆନ୍ତି

"ପଦ୍ମପୁରାଣରେ କଥିତ ଅଛି ଯେ, କେଶବ ଲକ୍ଷ୍ମୀଙ୍କୁ ପଚାରିଲେ, ତୁମେ କେଉଁଠାରେ ନିଶ୍ଚଳ ହୋଇ ରହ ? ଲକ୍ଷ୍ମୀ ଉତ୍ତରରେ କହିଲେ କି—

ଯେଉଁଠାରେ ଶୁକ୍ଳ ବର୍ଣ୍ଣ ପାରି ଥିବେ, ଯେଉଁଠାରେ ଗୃହିଣୀ ଅର୍ଥାତ୍ ନାରୀଜାତି କଳହହୀନା ଓ ସୁଚରିତା, ଯେଉଁ ଦେଶରେ ଧାନ ସୁବର୍ଣ୍ଣ ସଦୃଶ, ତଣ୍ଡୁଳ ଅର୍ଥାତ୍ ଚାଉଳ ରୂପାପରି ପରିଷ୍କୃତ ଓ ନିର୍ମଳ, ଅନ୍ନ ତୁଷ ରହିତ ଅର୍ଥାତ୍ ପରିଷ୍କୃତ ମୁଁ ସେହିଠାରେ ରହେ ।

ପୁଣି କହୁଛନ୍ତି, "ଯେଉଁଠାରେ ପୁରୁଷ ସମାଜ ତ୍ୟାଗ, ସତ୍ୟ ଶୌଚ—ଏହି ତିନୋଟି ମହାଗୁଣରେ ମଣ୍ଡିତ ସେହି ସ୍ଥାନ ମୋର ପ୍ରିୟ । ଯେଉଁ ଦେଶରେ ଧନର ସଦ୍‌ବ୍ୟବହାର ହୁଏ, ସେ ଦେଶକୁ ଲକ୍ଷ୍ମୀ ବରଦାୟିକ ହୁଅନ୍ତି । ତେଣୁ ଏ ଧନର ସଦ୍-

ବ୍ୟବହାର ପ୍ରତି ରାଷ୍ଟ୍ରଶାସନ ଓ ଲୋକ-ସମାଜ ଉଭୟେ ଦୃଷ୍ଟି ଦେଲେ ଦେଶ ସୁଜଳା ଓ ସୁଫଳା ହେବ ।

(ଖ) ସତ୍ୟବାଦୀ, ଆଳସ୍ୟହୀନ, ଅକ୍ରୋଧନ
କାର୍ଯ୍ୟଦକ୍ଷ କୃତଜ୍ଞ ଜିତେନ୍ଦ୍ରିୟ ଜନ-
ମାନଙ୍କର କାହିରେ ଥାଏ ମୁଁ ନିରତେ
ମୋତେ ସେ ରଖିଥାନ୍ତି ଏକା ଏ ବରତେ ।
ସ୍ୱଧର୍ମସେବୀ କୃତଆସ୍ଥା କ୍ଷମାପର
କୁଳୀନା ସତ୍ୟବତୀ ସୁପତିବ୍ରତା
ନାରୀଠାରେ ଥାଏ ମୁଁ ନ କରିଣ ଚିନ୍ତା ।

## ଲକ୍ଷ୍ମୀ କେଉଁଠାରେ ନ ଥାନ୍ତି

ଅକର୍ମଶୀଳ ନାସ୍ତିକ କୃତଘ୍ନ ଚରିତ୍ର
ଶଙ୍କରକାରୀ ଚୌର କ୍ରୋଧଗ୍ରସ୍ତ ଉଦ୍‌ବୃତ୍ତ
ତେଜ ବଳ ବୁଦ୍ଧି ଟି ଊଣା ଯାହାଙ୍କର
ନାହିଁଟି ସମ୍ବନ୍ଧ ଟିଗା ତାଙ୍କର ମୋହର ।
କଳପ୍ରିୟା ଲଜ୍ଜାବିହୀନା ଭର୍ତ୍ତୃଦ୍ରୋହୀ
ନାରୀକୁ ମୁଁ ଦେଖିଲେ ହେଉଥାଏ ଦ୍ୱେଷୀ ।"

—ମହାଭାରତ-ଭୀଷ୍ମବଚନ—

———

## ତ୍ୟାଗ

ସନ୍ତାନଦ୍ୱାରା ନୁହେଁ, ଧନଦ୍ୱାରା ନୁହେଁ, ଯଜ୍ଞଦ୍ୱାରା ନୁହେଁ, ଏକମାତ୍ର ତ୍ୟାଗଦ୍ୱାରା ମୁକ୍ତିଲାଭ ହୋଇଥାଏ । ଏହାହିଁ ଭାରତୀୟ ସକଳ ଶାସ୍ତ୍ରର ଆଦେଶ ।

(କ) ଯଦି ତ୍ୟାଗ କରିପାର ତେବେ ତୁମ୍ଭର ଧର୍ମ ହେବ ।
—ସ୍ୱାମୀ ବିବେକାନନ୍ଦ

(ଖ) ତ୍ୟାଗ ହେଉଛି ଏକ ସାତ୍ତ୍ୱିକ ଆନନ୍ଦ । —ଗାନ୍ଧୀ

(ଗ) ତ୍ୟାଗ ବିନା ମଣିଷର ବିକାଶ ହୋଇପାରେ ନାହିଁ ।
—ଗାନ୍ଧୀ—

(ଘ) ତ୍ୟାଗପରେ ପଶ୍ଚାତ୍ତାପ କରିବା ଅନୁଚିତ ।—ଗାନ୍ଧୀ—

## ତ୍ୟାଗ ଓ ସଂଯମ

ଆତ୍ମଜ୍ଞାନ ଲାଭ କରିବାକୁ ହେଲେ ତ୍ୟାଗର ପ୍ରୟୋଜନ । ତ୍ୟାଗ ବ୍ୟତୀତ ଈଶ୍ୱରଲାଭ ସୁଦୂରପରାହତ । 'ବିଷୟଭୋଗ 'ବିଷବତ୍' ତ୍ୟାଗ କର । ସବୁ ଶାସ୍ତ୍ରରେ ଏହି ତ୍ୟାଗର ମହିମା ବର୍ଣ୍ଣିତ । ଦୁନିଆ ଦୁଇ ଦିନ ଲାଗି, ଏହା କୁହୁକ ଭଳି । ଜୀବନ ପାଣିଫୋଟକା ପରି କ୍ଷଣସ୍ଥାୟୀ । ଏହିପରି ଦୃଶ୍ୟମାନ ଜଗତ ପଛରେ ସେହି ଅନନ୍ତ ଅପାର ରାଜ୍ୟ—ଯାଅ, ସେଠାକୁ ଚାଲିଯାଅ ।

"ତ୍ୟାଗ ଭିନ୍ନ ଏହି ଗଭୀର ଜୀବନସମସ୍ୟାର ରହସ୍ୟ ଭେଦ କରି ପାରିବ ନାହିଁ । ତ୍ୟାଗ, ତ୍ୟାଗ, ତ୍ୟାଗ,—ଏହାହିଁ ତୁମ୍ଭମାନଙ୍କ ଜୀବନର ମୂଳମନ୍ତ୍ର ହେଉ ।" —ସ୍ୱାମୀ ବିବେକାନନ୍ଦ—

## କେଉଁ ତ୍ୟାଗରେ କେଉଁ ଫଳ

"ଦ୍ରବ୍ୟ ତ୍ୟାଗ କଲେ ଯାଗସିଦ୍ଧି ହୁଏ
ଭୋଗ ତ୍ୟାଗ କଲେ ବ୍ରତସିଦ୍ଧି ହୁଏ
ସୁଖ ତ୍ୟାଗ କଲେ ତପସ୍ୟାସିଦ୍ଧି ହୁଏ
ଓ ସକଳ ତ୍ୟାଗକଲେ ସଂସାର ତରିବାକୁ ହୁଏ" ।

—ମହାଭାରତ-ଭୀଷ୍ମବଚନ—

# ଦୟା

ଦୟା ହେଉଛି ଧର୍ମର ମୂଳ ଓ ମାନବୀୟ ଗୁଣର ଶୃଙ୍ଗାର ଯର ।

—ଗାନ୍ଧୀ—

ଦୟା ହେଉଛି ସଦ୍‌ଗୁଣମାନଙ୍କ ମଧ୍ୟରେ ଶ୍ରେଷ୍ଠତମ ।

—ଗାନ୍ଧୀ—

ଦୟା ହେଉଛି ମାନବର କୋମଳତମ ଭାବନାର ପ୍ରତୀକ ।

—ଗାନ୍ଧୀ—

## ଦୟା ମର୍ତ୍ତ୍ୟର ସ୍ୱର୍ଗଗଙ୍ଗା

"ଦୟା ସ୍ୱର୍ଗଗଙ୍ଗା ମର୍ତ୍ତ୍ୟେ ଅଟଇ ଅତୁଲ୍ୟ
ଦେବେ ମଧ୍ୟ ଜାଣି ନ ପାରନ୍ତି ଦୟା ମୂଲ୍ୟ ।
ଦୟା ରାଜାର ମୁକୁଟମଣିଠାରୁ ଶ୍ରେଷ୍ଠ
ଯେତେ ଗୁଣ ଅଛୁ ଦୟା ସବୁଠାରୁ ଜ୍ୟେଷ୍ଠ ।
ଦୟା ଅସରନ୍ତି ଧନ ଯେତେ ଦେଲେ ସାଇ
ଦୟାଦାତା ଗ୍ରହୀତା ଯେ ଦୁହେଁ ଧନ୍ୟ ହୋଇ ।
ଦୟା-ଡୋରେ ବନ୍ଧା ଅଛି ନିଖିଳ ଭୁବନ
ଦୟା ଦେବଙ୍କର ଦେବ ଅଟଇ ପ୍ରମାଣ" ।

—ବଷ୍ଟୁ ବେଣସ୍ ପୁରାଣ—

ସ୍ୱାମୀ ନିଗମାନନ୍ଦଙ୍କ ଭାଷାରେ "ପରର ଦୁଃଖ ଦେଖିଲେ ଯଥାସାଧ୍ୟ ପରଦୁଃଖ ଦୂର କରିବାକୁ ଚେଷ୍ଟା କରିବ । ଯେ ପରକୁ ଦୟା କରି ନ ପାରେ ସେ ଭଗବାନଙ୍କର ଦୟା କପରି ବା ପାଇବ ? ଯେ ଅନ୍ୟକୃତ ଅପରାଧ କ୍ଷମା କରି ପାରେ ନାହିଁ ଭଗବାନ୍ ତା'ର ଅପରାଧ କ୍ଷମା କରିବେ କାହିଁକି ?

"ଯାହାର ଜୀବେ ଦୟା ନାହିଁ—ଉଦ୍ଧବ ଚଣ୍ଡାଳଟି ସେହି" ।

—ଭାଗବତ—

# ପରୋପକାର

"ସବୁବେଳେ ଏହା ଜାଣି ରଖିବା ଉଚିତ ଯେ ପରୋପକାର କରିବା ମହାସୌଭାଗ୍ୟର ଫଳ । ବହୁ ସୁକୃତ ନ ଥିଲେ ଅନ୍ୟର ଉପକାର କରିବା ପ୍ରବୃତ୍ତି ଜନ୍ମେ ନାହିଁ । ପରୋପକାର ପ୍ରବୃତ୍ତି ଆମ୍ଭମାନଙ୍କୁ ପବିତ୍ର ଓ ସିଦ୍ଧ ହେବାକୁ ସହାୟତା କରିଥାଏ । ତୁମ୍ଭେ ଅନ୍ୟମାନଙ୍କୁ ଯେତେ ସାହାଯ୍ୟ କରିବ ତେତେ ତୁମ୍ଭ ନିଜର କଲ୍ୟାଣ କରୁଅଛ ବୋଲି ବୁଝି ପାରିବ ଏବଂ ତଦ୍ଦ୍ୱାରା ତୁମ୍ଭର ଶକ୍ତିବୃଦ୍ଧି ଘଟିବ" । —ସ୍ୱାମୀ ବିବେକାନନ୍ଦ—

"ରତ୍ନାକର ନିଜପାଇଁ ରତ୍ନ ରଖିନାହିଁ; ବିନ୍ଧ୍ୟାଚଳ ଆପଣାର ବ୍ୟବହାରପାଇଁ ହାତୀ ପୋଷି ନାହିଁ, ମଳୟଗିରି ଆପେ ଗ୍ରୀଷ୍ମକାଳରେ ଚନ୍ଦନ ବୋଳିହେବ ବୋଲି ଚନ୍ଦନ ଗଛ ବଢ଼ାଇ ନାହିଁ । ସାଧୁ ଲୋକମାନଙ୍କର ଯାହା ବିଭବ ଥାଏ, ତାହା କେବଳ ପରପାଇଁ" । —ନୀତିପ୍ରଦୀପ—

"ସାଧୁଜନ, ବୃକ୍ଷ, ନଦୀ, ଗିରି, ବସୁନ୍ଧରା<br>
ପରହିତପାଇଁ ଏମାନଙ୍କ ସୃଷ୍ଟି ପରା ।<br>
କବି କହେ ସାଧୁହୃଦ ଲବଣୀ ସମାନ,<br>
କେହି ନ ଜାଣିବା କଥା ଏହି ଭଲେ ମନ ।<br>
ଲହୁଣୀ ତ ନିଜେ ନିଜେ ତରଳି ମରଇ,<br>
ସାଧୁ ଯେ ପରର ଦୁଃଖ ଦେଖି ତରଳଇ" ।

—ଜଗବନ୍ଧୁ, ତୁଳସୀ ରାମାୟଣ-ଉତ୍ତର କାଣ୍ଡ—

"ପର ଉପକାର ଲାଗି ଛାଡ଼ିବି ଶରୀର<br>
ଯେତେ ରକ୍ତବିନ୍ଦୁ ବହେ ଧମନୀରେ ମୋର ।

ସେ ସକଳ ପରଲାଗି ହୋଇଥିଲେ ଉତ୍ସର୍ଗ
ପରୋପକାର ଲାଗି ଯାଉଁପାରେ ସବୁ ଭୋଗ ।
ପରହିତ ଲାଗି ଚନ୍ଦ୍ରଅଛୁ ଚରାଚର
ପରହିତ ଲାଗି ଉଦେ ଅସ୍ତ ଦିବାକର ।
ପରହିତ ଲାଗି ଧର୍ମ ଧରିଛୁ ଧରଣୀ
ପରହିତ ଲାଗି ସିନ୍ଧୁ ରଖିଅଛୁ ପାଣି ।
ପରଲାଗି ବୃକ୍ଷେ ସିନା କୁସୁମ ଫୁଟଇ ।
ପରହିତ ଲାଗି ଗ୍ରହତାରା ଆତଯାତ
ପରହିତ ଲାଗି ସ୍ଥିର ହୋଇଛୁ ପର୍ବତ ।
ପରହିତ ଲାଗି ବୃକ୍ଷ ସହେ ଖରା ଝାଣି
ପରହିତ ଲାଗି ଦେବି ମୋହର ପରାଣ ।
ଦିନେ ହେଲେ ଯିବ ପ୍ରାଣ ନାହିଁ ତ ସଂଶୟ
ଶୃଗାଳ ଶ୍ୱାନ ଖାଇବେ ମୋର ଏହି ଦେହ ।
ତେବେ କିମ୍ପା ଏ ଦେହରେ ନ ଅର୍ଜିବି ଧର୍ମ
ପରଲାଗି ଦେବିନାହିଁ କିମ୍ପା ଏ ଜୀବନ ?
ପରଲାଗି ସାରା ବିଶ୍ୱ ବନ୍ଧା ଅଛିହେଲେ
ଯିବ ପ୍ରାଣ ଦେବି ମୋର ପରର ହିତରେ ।"

—ମହର୍ଷି ଦଧୀଚିଙ୍କ ବଚନ—
(ବିଷ୍ଣୁଧର୍ମୋତ୍ତର ପୁରାଣ-୨ୟ ସର୍ଗ)

"ଦେହ ବହି ପରହିତେ ଯେହୁ ନ ରହଇ
ତାହାର ଜୀବନ ଶ୍ୱାନ ସମାନ ଅଟଇ ।
ପର ଉପକାର କେବେ ନ କରଇ ଯେହୁ
ତାହାର ମାଂସକୁ କାକ ଗୃଧପକ୍ଷୀ ଖାଉ ।

ଦେହ ବନ୍ଧୁ ପରକୁ ଯେ ପ୍ରାଣୀ ନ ଭଜଇରେ
ଅନ୍ତେମେ ସେ ବୃଥା ମଲେ ପଡ଼େ ନରକରେ ।
ଦେହ ବନ୍ଧୁ ପରକୁ ଯେ ନୋହେ ହିତକାରୀ
ସେ ଲୋକ ସଂସାରେ ଜାଣ ଜୀଇଁ ଜୀଇଁ ମରି ।"

—ନୃସିଂହ ପୁରାଣ-ପ୍ରଥମ ରତ୍ନାକର—

"ଯେଉଁ ବ୍ୟକ୍ତି ପରୋପକାର କରିବାକୁ ଇଚ୍ଛା କରିବେ ସେ ସର୍ବଭୂତରେ ଏକ ଆତ୍ମା ମନେକରି କାର୍ଯ୍ୟ କରିବେ । ଲୋକ-କଲ୍ୟାଣ କରିବାର ବୁଦ୍ଧି ଯାହାର ହୋଇଅଛି, ସେ ଖିଅପିଅ ଛାଡ଼ିଦେବ ଏପରି ନୁହେଁ; କିନ୍ତୁ ଲୋକର ଉପକାରପାଇଁ ସେ ଯେ ଦେହଧାରଣ କରିଛି ଏପରି ବୁଦ୍ଧି ତାହାର ହେବା ଆବଶ୍ୟକ । ମହର୍ଷି ଜନକ କହିଅଛନ୍ତି, ଏହିପରି ବୁଦ୍ଧି ହେଲେ ଇନ୍ଦ୍ରିୟଗଣ ନିଜର ଅଧୀନ ହୁଅନ୍ତି ଓ ଲୋକକଲ୍ୟାଣ ସାଧିତ ହୁଏ । ମୀମାଂସକମାନଙ୍କର ଏହି ସିଦ୍ଧାନ୍ତର ଅନ୍ତର୍ଗତ ବୀଜ ଏହି ଯେ, ଯଜ୍ଞର ଅବଶିଷ୍ଟ ଅଂଶ ଯେ ଗ୍ରହଣ କରେ, ତାହାକୁ 'ଅମୃତାଶୀ' କୁହାଯିବ । କାରଣ, ସେମାନଙ୍କ ଦୃଷ୍ଟିରେ ଜଗତର ଭରଣପୋଷଣ କର୍ମହିଁ ଯଜ୍ଞ । ଅତଏବ ଲୋକକଲ୍ୟାଣକର କର୍ମ କରିବା ସମୟରେ ଯାହାଦ୍ୱାରା ନିଜର ଜୀବିକା ନିର୍ବାହ ହୋଇଥାଏ ତାହା କରିବା ମଧ୍ୟ ଉଚିତ ।"

—ଭଗବଦ୍ ଗୀତା

"ଲୋକକଲ୍ୟାଣର ହେତୁ ମନରେ ପୋଷଣ କରି ସାଧୁ-ପୁରୁଷ ଲୋକକଲ୍ୟାଣ କରେ ନାହିଁ । ଆଲୁଅ ଦେବା ଯେପରି ସୂର୍ଯ୍ୟର ସ୍ୱଭାବ, ସେହିପରି ବ୍ରହ୍ମଜ୍ଞାନଦ୍ୱାରା ମନରେ ସର୍ବଭୂତାତ୍ମୈ-କ୍ୟର ପୂର୍ଣ୍ଣ ଉପଲବ୍ଧି ହେଲେ ଲୋକକଲ୍ୟାଣ କରିବା ଏହି ସାଧୁ ପୁରୁଷମାନଙ୍କର ସହଜ ସ୍ୱଭାବ ହୋଇଯାଏ ଏବଂ ଏପରି ସ୍ୱଭାବ

ହୋଇଗଲେ, ସୂର୍ଯ୍ୟ ଯେପରି ଅନ୍ୟକୁ ଆଲୁଅ ଦେବା ସମୟରେ ନିଜକୁ ନିଜେ ପ୍ରକାଶ କରେ, ସେହିପରି ସାଧୁପୁରୁଷର ପରାର୍ଥ—ଉଦ୍‌ଯୋଗଦ୍ୱାରାହିଁ ତାହାର ଯୋଗକ୍ଷେମ ସ୍ୱତଃସିଦ୍ଧ ହୋଇଥାଏ ।"

—ମହାଭାରତ—

"ଯିଏ କେବଳ ନିଜର ଉପକାର କରିବାପାଇଁ ବଞ୍ଚିଥାଏ ସେ ଲୋକ ଏ ସଂସାରରୁ ବିଦାୟ ନେଇଯିବାଦ୍ୱାରା ଜଗତର ଉପକାର କରେ ।"

—ଚର୍ଲ୍‌ ସୁଲ୍‌ସ୍ମାନ୍—

"ମୋ ଜୀବନ ପଛେ ନର୍କେ ଥାଉ,
ଜଗତ ଉଦ୍ଧାର ହେଉ ।"

—ଭୀମାଭୋଇ—

---

# ସେବା

(କ) ସେବାଠାରୁ ବଳି ସଂସାରରେ ଆଉ ବଡ଼ ଜିନିଷ ନାହିଁ ।

—ଗାନ୍ଧି—

(ଖ) ପ୍ରାଣୀମାନେ ହିଁ ଦୁଃଖୀ, ସେମାନଙ୍କର ସେବା କରିବା ଅର୍ଥ ଭଗବାନଙ୍କ ଭକ୍ତି କରିବା ।

—ଗାନ୍ଧି—

(ଗ) ଗରିବଙ୍କ ସେବାରେ ଅମ୍ଭେମାନେ ଈଶ୍ୱରଙ୍କୁ ଦେଖି ପାରିବା ।

—ଗାନ୍ଧି—

(ଘ) ସେବାଦ୍ୱାରା ସାରା ସଂସାରରେ ଖ୍ରୀଷ୍ଟଧର୍ମ ବିସ୍ତାର ଲାଭ କରି ପାରିଅଛି ।

—ଗାନ୍ଧି—

ଯେଉଁ ସେବା ପଛରେ କରତାଳି ନାହିଁ; କିନ୍ତୁ ଭଗବାନଙ୍କ ଆଶୀର୍ବାଦ ଅଛି ସେହିହିଁ ପ୍ରକୃତ ସେବା ।

"ନୀରବଭାବେ ସେବା କରିଯିବା ଉଚିତ । ଯେଉଁଠି ତୁମେ ସେବାର ଡେଙ୍ଗୁରା ପିଟିଲ, ସେଠି ନିଜ ସେବକତ୍ୱର ସମାପ୍ତି ଘଟିଲ" । —ଗାନ୍ଧୀ—

## ଲୋକସେବା

ସ୍ୱାମୀ ବିବେକାନନ୍ଦ କହନ୍ତି, "ମାନବଜାତିର ସେବାହିଁ ପରମ ଧର୍ମ; ସେବାରେ ସମସ୍ତଙ୍କର ଅଧିକାର ଅଛି । ସେଥିରେ ଉଚ୍ଚ ନୀଚ ଭେଦ ନାହିଁ । ସାମ୍ପ୍ରଦାୟିକତା ବା ସଙ୍କୀର୍ଣ୍ଣତାର ସ୍ଥାନ ନାହିଁ । ଯେତେବେଳଯାଏଁ ଆମେ ଅନ୍ୟମାନଙ୍କ ସେବା ଗ୍ରହଣ କରୁଛୁ ସେତେବେଳଯାଏଁ ସେମାନଙ୍କର ସେବା କରିବାକୁ ବାଧ୍ୟ" ।

## ଉତ୍କଳମଣି କବି ଗୋପବନ୍ଧୁଙ୍କ ଭାଷାରେ

"ନିଜ ସ୍ୱାର୍ଥଲାଗି ଜାତ ନୁହେଁ ହିନ୍ଦୁ
ବିଶ୍ୱହିତେ ତା'ର ପ୍ରତି ରକ୍ତବିନ୍ଦୁ ।

× × × ×

ମିଶୁ ମୋର ଦେହ ଏ ଦେଶ ମାଟିରେ
ଦେଶବାସୀ ଚାଲି ଯାଆନ୍ତୁ ପିଠିରେ ।
ଦେଶର ସ୍ୱରାଜ୍ୟ-ପଥେ ଯେତେ ଗାଡ଼
ପୂରୁ ତହିଁ ପଡ଼ି ମୋର ମାଂସ ହାଡ଼" ।

"ଦରିଦ୍ରଗଣଙ୍କୁ ତୁମ୍ଭେ ଯେ ଦାନ କିମ୍ବା ସେବା କରୁଅଛ, ସେଥିଲାଗି ବାହାଦୁରି ବା ପ୍ରଶଂସା ନିଅ ନାହିଁ, ଅଥବା ସେମାନଙ୍କ-ଠାରୁ କୃତଜ୍ଞତାର ଆଶା ରଖ ନାହିଁ । ବରଂ ସେମାନେ ଯେ ତୁମ୍ଭଙ୍କୁ ଦୟା ପ୍ରକାଶ କରିବାପାଇଁ ସୁଯୋଗ ଦେଇଅଛନ୍ତି, ସେଥିଲାଗି ସେମାନଙ୍କ ପ୍ରତି ତୁମ୍ଭେ କୃତଜ୍ଞ ହୁଅ । ଆଦର୍ଶ ସନ୍ନ୍ୟାସୀ ହେବା ଅପେକ୍ଷା ଆଦର୍ଶ ଗୃହୀ ହେବା ଅଧିକ କଠିନ । ଯେଉଁ

କର୍ମ ଆମ୍ଭମାନଙ୍କୁ ଭଗବାନଙ୍କ ଅଡ଼କୁ ଘେନିଯାଏ ତାହାହିଁ ସତ୍‌କର୍ମ । ଯେଉଁ କର୍ମ ଅବନତ ଅଡ଼କୁ ନେଇଯାଏ ତାହାହିଁ ଅସତ୍ କର୍ମ" ।

—ବିବେକାନନ୍ଦ—

## ସେବା ଅର୍ଥ ଭଗବାନଙ୍କର ପୂଜା

୧ । ଆତ୍ମଭାବରେ ମାନବର ସେବା କର ।

୨ । ନାରାୟଣଭାବରେ ଦରିଦ୍ର ଓ ପୀଡ଼ିତର ସେବା କର ।

୩ । ସମାଜର ସେବା କର ।

୪ । ଦେଶର ସେବା କର । ସେବା ଭଗବାନଙ୍କର ପୂଜା—ଏ କଥା ଭୁଲି ଯାଅନା ।

—ଯୋଗସାର ସଂଗ୍ରହ-ସ୍ୱାମୀଶିବାନନ୍ଦ—

## ସେବା ହୃଦୟ-ରାଜ୍ୟକୁ ପବିତ୍ର କରେ

"କର୍ମଯୋଗ ସାଧନାରେ ରୋଗୀର ଶୁଶ୍ରୁଷା ସର୍ବପ୍ରଧାନ ସ୍ଥାନ ଅଧିକାର କରିଅଛି । ରୋଗୀର ବେଦନା ଅପନୋଦନ କରିବାଦ୍ୱାରା ସେବକ ଆତ୍ମପ୍ରସାଦ ଅନୁଭବ କରେ । ସେବା ହୃଦୟ-ରାଜ୍ୟକୁ ପବିତ୍ର କରେ ଏବଂ ଏହା ଫଳରେ ଆଧ୍ୟାତ୍ମିକ ଜ୍ୟୋତିଃ ହୃଦୟ-ରାଜ୍ୟକୁ ଜ୍ୟୋତିର୍ମୟ କରେ । ଏହାଦ୍ୱାରା ସାଧକର ହୃଦୟ ଉନ୍ନତ ହୁଏ ଓ ତା'ର ହୃଦୟରେ ପ୍ରେମର ବୀଜ ରୋପିତ ହୁଏ । ସାଧକ ରୋଗୀଠାରେ ଈଶ୍ୱରଙ୍କ ଦର୍ଶନ କରେ ଓ ତା ଫଳରେ ତା'ର ହୃଦୟ ଦୟାରେ ବିଗଳିତ ହୁଏ । ଈଶ୍ୱର ତା'ର ହୃଦୟ-ସିଂହାସନ ଅଳଙ୍କୃତ କରନ୍ତି ଓ ଏହା ଫଳରେ ସାଧକ

"ନୀରବଭାବେ ସେବା କରିଯିବା ଉଚିତ । ଯେଉଁଠି ତୁମେ ସେବାର ଢେଙ୍କୁରା ପିଟିଲ, ସେଠି ନିଜ ସେବକତ୍ୱର ସମାପ୍ତି ଘଟିଲ" । —ଗାନ୍ଧୀ—

## ଲୋକସେବା

ସ୍ୱାମୀ ବିବେକାନନ୍ଦ କହନ୍ତି, "ମାନବଜାତିର ସେବାହିଁ ପରମ ଧର୍ମ; ସେବାରେ ସମସ୍ତଙ୍କର ଅଧିକାର ଅଛି । ସେଥିରେ ଉଚ୍ଚ ନୀଚ ଭେଦ ନାହିଁ । ସାମ୍ପ୍ରଦାୟିକତା ବା ସଂକୀର୍ଣ୍ଣତାର ସ୍ଥାନ ନାହିଁ । ଯେତେବେଳଯାଏଁ ଆମେ ଅନ୍ୟମାନଙ୍କ ସେବା ଗ୍ରହଣ କରୁଛୁଁ ସେତେବେଳଯାଏଁ ସେମାନଙ୍କର ସେବା କରିବାକୁ ବାଧ୍ୟ" ।

### ଉତ୍କଳମଣି କବି ଗୋପବନ୍ଧୁଙ୍କ ଭାଷାରେ

"ନିଜ ସ୍ୱାର୍ଥଲାଗି ଜାତି ନୁହେଁ ହିନ୍ଦୁ
ବିଶ୍ୱହିତେ ତା'ର ପ୍ରତି ରକ୍ତବିନ୍ଦୁ ।

× × × ×

ମିଶୁ ମୋର ଦେହ ଏ ଦେଶ ମାଟିରେ
ଦେଶବାସୀ ଚାଲି ଯାଆନ୍ତୁ ପିଠିରେ ।
ଦେଶର ସ୍ୱରାଜ୍ୟ-ପଥେ ଯେତେ ଗାଡ଼
ପୂରୁ ତହିଁ ପଡ଼ି ମୋର ମାଂସ ହାଡ଼" ।

"ଦରିଦ୍ରଗଣଙ୍କୁ ତୁମ୍ଭେ ଯେ ଦାନ କିମ୍ବା ସେବା କରୁଅଛ, ସେଥିଲାଗି ବାହାଦୁରି ବା ପ୍ରଶଂସା ନିଅ ନାହିଁ, ଅଥବା ସେମାନଙ୍କଠାରୁ କୃତଜ୍ଞତାର ଆଶା ରଖ ନାହିଁ । ବରଂ ସେମାନେ ଯେ ତୁମ୍ଭଙ୍କୁ ଦୟା ପ୍ରକାଶ କରିବାପାଇଁ ସୁଯୋଗ ଦେଇଅଛନ୍ତି, ସେଥିଲାଗି ସେମାନଙ୍କ ପ୍ରତି ତୁମ୍ଭେ କୃତଜ୍ଞ ହୁଅ । ଆଦର୍ଶ ସନ୍ନ୍ୟାସୀ ହେବା ଅପେକ୍ଷା ଆଦର୍ଶ ଗୃହୀ ହେବା ଅଧିକ କଠିନ । ଯେଉଁ

କର୍ମ ଆମ୍ଭମାନଙ୍କୁ ଭଗବାନଙ୍କ ଅଡ଼କୁ ଘେନିଯାଏ ତାହାହିଁ ସତ୍‌କର୍ମ । ଯେଉଁ କର୍ମ ଅବନତ ଅଡ଼କୁ ନେଇଯାଏ ତାହାହିଁ ଅସତ୍ କର୍ମ'' ।

—ବିବେକାନନ୍ଦ—

## ସେବା ଅର୍ଥ ଭଗବାନଙ୍କର ପୂଜା

୧ । ଆତ୍ମଭାବରେ ମାନବର ସେବା କର ।

୨ । ନାରାୟଣଭାବରେ ଦରିଦ୍ର ଓ ପୀଡ଼ିତର ସେବା କର ।

୩ । ସମାଜର ସେବା କର ।

୪ । ଦେଶର ସେବା କର । ସେବା ଭଗବାନଙ୍କର ପୂଜା— ଏ କଥା ଭୁଲି ଯାଅନା ।

—ଯୋଗସାର ସଂଗ୍ରହ-ସ୍ୱାମୀ ଶିବା[illegible]—

## ସେବା ହୃଦୟ-ରାଜ୍ୟକୁ ପବିତ୍ର କରେ

"କର୍ମଯୋଗ ସାଧନାରେ ରୋଗୀର ଶୁଶ୍ରୂଷା ସର୍ବପ୍ରଧାନ ସ୍ଥାନ ଅଧିକାର କରିଅଛି । ରୋଗୀର ବେଦନା ଅପନୋଦନ କରିବାଦ୍ୱାରା ସେବକ ଆତ୍ମପ୍ରସାଦ ଅନୁଭବ କରେ । ସେବା ହୃଦୟ-ରାଜ୍ୟକୁ ପବିତ୍ର କରେ ଏବଂ ଏହା ଫଳରେ ଆଧ୍ୟାତ୍ମିକ ଜ୍ୟୋତିଃ ହୃଦୟ-ରାଜ୍ୟକୁ ଜ୍ୟୋତିର୍ମୟ କରେ । ଏହାଦ୍ୱାରା ସାଧକର ହୃଦୟ ଉନ୍ନତ ହୁଏ ଓ ତା'ର ହୃଦୟରେ ପ୍ରେମର ବୀଜ ରୋପିତ ହୁଏ । ସାଧକ ରୋଗୀଠାରେ ଈଶ୍ୱରଙ୍କ ଦର୍ଶନ କରେ ଓ ତା ଫଳରେ ତା'ର ହୃଦୟ ଦୟାରେ ବିଗଳିତ ହୁଏ । ଈଶ୍ୱର ତା'ର ହୃଦୟ-ସିଂହାସନ ଅଲଙ୍କୃତ କରନ୍ତି ଓ ଏହା ଫଳରେ ସାଧକ

ଈଶ୍ୱରଙ୍କ ସମ୍ବନ୍ଧ ଅନୁଭବ କରେ ଓ ତେଣୁ ସେ ସମସ୍ତଙ୍କୁ ପ୍ରେମଚକ୍ଷୁରେ ଦର୍ଶନ କରେ ଓ ସମସ୍ତଙ୍କୁ ସେବା କରେ''—

—ଯୋଗସାର ସଂଗ୍ରହ—ସ୍ୱାମୀ ଶିବାନନ୍ଦ ।

''ଲୋକଙ୍କୁ ଖୁଆଇବା ଏକ ପ୍ରକାର (ଈଶ୍ୱରଙ୍କର) ସେବା କରିବା । ସବୁ ଜୀବମଧ୍ୟରେ ସେ ଅଗ୍ନି ରୂପେ ରହିଅଛନ୍ତି । ଖୁଆଇବା ଅର୍ଥାତ୍ ତାହାଙ୍କୁ ଆହୁତି ଦେବା; କିନ୍ତୁ ସେଥିପାଇଁ ଅସତ୍ ଲୋକଙ୍କୁ ଖୁଆଇବା ଉଚିତ ନୁହେ । ଏପରି ଲୋକ ଯେଉଁମାନେ ବ୍ୟଭିଚାରାଦି ମହାପାତକ କରି ଅଛନ୍ତି ଏବଂ ଘୋର ବିଷୟାସକ୍ତ ଲୋକ; ଏମାନେ ଯେଉଁଠାରେ ବସି ଖାଆନ୍ତି, ସେ ସ୍ଥାନର ସାତ-ହାତ ମାଟି ଅପବିତ୍ର ହୋଇଯାଏ'' ।

—ରାମକୃଷ୍ଣ ଉପଦେଶାମୃତ—

## ମହାତ୍ମା ଯୀଶୁଖ୍ରୀଷ୍ଟ କହନ୍ତି—

''ସେ ଆପଣା ନିମନ୍ତ୍ରଣକାରୀଙ୍କି ମଧ୍ୟ କହିଲେ, ଦିବସ ବା ରାତ୍ରିରେ ଭୋଜି ଦେଲେ ଆପଣା ବନ୍ଧୁ କି ଭ୍ରାତା କି ଆତ୍ମୀୟ କି ଧନୀ ପ୍ରତିବେଶୀମାନଙ୍କୁ ନିମନ୍ତ୍ରଣ କରି ନାହିଁ, କାଳେ ସେମାନେ ମଧ୍ୟ ଫେରି ତୁମ୍ଭଙ୍କୁ ନିମନ୍ତ୍ରଣ କରିବେ ଓ ତୁମ୍ଭେ ପ୍ରତିଦାନ ପାଇବ; କିନ୍ତୁ ଭୋଜ ପ୍ରସ୍ତୁତ କଲେ ଦରିଦ୍ର, ପଙ୍ଗୁ, ଖଞ୍ଜ ଓ ଅନ୍ଧମାନଙ୍କୁ ନିମନ୍ତ୍ରଣ କର, ତାହା ହେଲେ ତୁମ୍ଭେ ଧନ୍ୟ ହେବ, କାରଣ ତୁମ୍ଭଙ୍କୁ ପ୍ରତିଦାନ ଦେବାନିମନ୍ତେ ସେମାନଙ୍କର କିଛି ନାହିଁ; ଆଉ ଧାର୍ମିକମାନଙ୍କ ପୁନରୁତ୍ଥାନ ସମୟରେ ତୁମ୍ଭଙ୍କୁ ପ୍ରତିଦାନ ଦିଆଯିବ'' ।

—ବାଇବେଲ—

## ସର୍ବଶେଷରେ ସ୍ୱାମୀବିବେକାନନ୍ଦ ଭାରତବାସୀଙ୍କୁ କହିଅଛନ୍ତି—

"ହେ ଭାରତ ! ଭୁଲ ନାହିଁ—ତୁମ୍ଭର ନାରୀଜାତିର ଆଦର୍ଶ ସୀତା, ସାବିତ୍ରୀ, ଦମୟନ୍ତୀ । ଭୁଲ ନାହିଁ ତୁମ୍ଭର ଉପାସ୍ୟ ଉମାନାଥ, ସର୍ବତ୍ୟାଗୀ ଶଙ୍କର, ଭୁଲ ନାହିଁ—ତୁମ୍ଭର ବିବାହ, ତୁମ୍ଭର ଧନ-ଜୀବନ ଇନ୍ଦ୍ରିୟର ସୁଖପାଇଁ ନୁହେଁ; ଭୁଲ ନାହିଁ— ତୁମ୍ଭେ ଜାତହେଲା ଦିନଠାରୁ ମା'ଙ୍କ (ଭାରତ ମାତାଙ୍କ) ପାଇଁ ବଳି ପ୍ରଦତ୍ତ । ଭୁଲ ନାହିଁ—ତୁମ୍ଭର ସମାଜ, ସେହି ବିରାଟ ମହାମାୟାଙ୍କ ଛାୟାମାତ୍ର । ଭୁଲ ନାହିଁ—ନୀଚ ଜାତି, ମୂର୍ଖ, ଦରିଦ୍ର, ଅଜ୍ଞ, ମୋଚି, ମେହେନ୍ତର ତୁମ୍ଭର ରକ୍ତ—ତୁମ୍ଭର ଭାଇ ।

ହେ ବୀର ! ସାହାସ ଅବଲମ୍ବନ କର । ସଦର୍ପରେ କହ— ମୂର୍ଖ ଭାରତବାସୀ, ଦରିଦ୍ର ଭାରତବାସୀ, ବ୍ରାହ୍ମଣ ଭାରତବାସୀ ଚଣ୍ଡାଳ ଭାରତବାସୀ ମୋର ଭାଇ । ତୁମ୍ଭେ ମଧ୍ୟ ତାଙ୍କପରି କଟି-ମାତ୍ର ବସ୍ତ୍ରାବୃତ ହୋଇ ସଦର୍ପରେ କହ—ଭାରତବାସୀ ମୋର ଭାଇ; ଭାରତବାସୀ ମୋର ପ୍ରାଣ, ଭାରତର ଦେବ . ଦେବୀ ମୋର ଈଶ୍ୱର, ଭାରତର ସମାଜ ମୋର ଶିଶୁଶଯ୍ୟା—ମୋର ଯୌବନର ଉପବନ, ବାର୍ଦ୍ଧକ୍ୟର ବାରାଣସୀ । କହ ଭାଇ ଭାରତର ମୃତ୍ତିକା ମୋର ସ୍ୱର୍ଗ, ଭାରତର କଲ୍ୟାଣବେ ମୋର କଲ୍ୟାଣ, ଆଜ ପୁଣି ଦିନରାତି କହ—ହେ ଗୌରୀନାଥ ଜଗଦମ୍ବେ । ମୋତେ ମନୁଷ୍ୟତ୍ୱ ଦିଅ । ମା । ମୋର ଦୁର୍ବଳତା, କାପୁରୁଷତା ଦୂର କରି ମୋତେ ମଣିଷ କରିଦିଅ ।"

—ସ୍ୱାମୀ ବିବେକାନନ୍ଦ—

# ତୀର୍ଥବାସ ଓ ତୀର୍ଥଭ୍ରମଣ

## ଦେଶ ପର୍ଯ୍ୟଟନ

ତୀର୍ଥ ଭ୍ରମଣ କିମ୍ବା ତୀର୍ଥବାସ କଲେ ହୃଦୟରେ ଭକ୍ତିଭାବ ଜାଗ୍ରତ ହୁଏ । ତୀର୍ଥକୁ ପୁଣ୍ୟସ୍ଥାନ କାହିଁକି କହନ୍ତି ? ସେ ସମ୍ବନ୍ଧରେ 'କାଶୀଖଣ୍ଡ'ରେ ଅଛି—ଭୂମିର କୌଣସି ଅଦ୍‌ଭୁତ ପ୍ରଭାବ; ଜଳର କୌଣସି ଅଦ୍‌ଭୁତ ତେଜ କିମ୍ବା ମୁନିମାନଙ୍କର ଅନୁଷ୍ଠାନ ଯୋଗୁଁ ତୀର୍ଥ ସବୁ ପୁଣ୍ୟସ୍ଥଳ ବୋଲି ବିଖ୍ୟାତ ।

କେଦାରନାଥଠାରେ ତୁଷାରମଣ୍ଡିତ ଗିରିଶୃଙ୍ଗ, ହରଦ୍ୱାରରେ ରମଣୀୟ-ସଲିଳା ଭାଗୀରଥୀ, ପୁରୀ ଶ୍ରୀକ୍ଷେତ୍ରରେ ଜଗନ୍ନାଥ, ଭୁବନେଶ୍ୱରରେ ଲିଙ୍ଗରାଜ ଓ କେଦାରଗୌରୀ, ଜ୍ୱାଳାମୁଖୀ ତୀର୍ଥରେ ଗିରିନିଃସୃତ ବହ୍ନି ଶିଖା, ସୀତାକୁଣ୍ଡରେ ଉଷ୍ଣପ୍ରସ୍ରବଣ ଦର୍ଶନ କଲେ କାହାର ହୃଦୟ ଭକ୍ତିରସରେ ପ୍ଲାବିତ ନ ହୁଏ; ପୁଣି ବୃନ୍ଦାବନରେ ଶ୍ରୀକୃଷ୍ଣଙ୍କୁ ସ୍ମରଣ କରି, ନବଦ୍ୱୀପରେ ଶ୍ରୀ ଗୌରାଙ୍ଗ-ଲୀଳା ମନେ ପକାଇ, ବୁଦ୍ଧଗୟାଠାରେ ବୁଦ୍ଧଦେବଙ୍କ ବୋଧିବୃକ୍ଷ-ମୂଳେ ବସି, ଅଯୋଧ୍ୟାରେ ରାମଚନ୍ଦ୍ରଙ୍କ କୀର୍ତ୍ତି ଚିହ୍ନ ଦେଖି କାହାର ହୃଦୟରେ ପବିତ୍ର ଭାବର ଉଦୟ ନ ହୁଏ ? ଏପରି ତୀର୍ଥ ମହିମା ମନେ ପକାଇବା ତ ବହୁ ଦୂରର କଥା, ତୀର୍ଥସ୍ଥାନରେ ମହାପୁରୁଷମାନଙ୍କ ସଙ୍ଗ ଲାଭ କରି କେତେ ଲୋକ ଯେ କୃତାର୍ଥ ହୋଇ ଯାଉଛନ୍ତି, ସେ କଥା ମନେ ପକାଇଲେ ହୃଦୟରେ ଭକ୍ତିର ସଞ୍ଚାର ହୁଏ ।

'ମନୁଷ୍ୟ ଜନ୍ମ ହେଲେ ତୀର୍ଥ ବ୍ରତ କରି<br>ଅନ୍ତଃକାଳେ ଯାଇ ବସିବ ସ୍ୱର୍ଗପୁରୀ ।'

—ମହାଭାରତ-ଶାନ୍ତିପର୍ବ—

ଦେଶ-ପର୍ଯ୍ୟଟନରେ ନାନାବିଧ ବସ୍ତୁ ଓ ବ୍ୟକ୍ତି ପର୍ଯ୍ୟବେକ୍ଷଣ କରିବାର ସୁବିଧା ମିଳେ । ଦେଶ-ପର୍ଯ୍ୟଟନଦ୍ୱାରା କେତେକ ନୂତନ ବସ୍ତୁ, ବ୍ୟକ୍ତି, ଜାତି, ଭାଷା, ଦୃଶ୍ୟ ଇତ୍ୟାଦି ଦର୍ଶନ ଓ ସେ ସମ୍ବନ୍ଧରେ ଇତିହାସ ସଂଗ୍ରହ କଲେ ନିଜର ଜ୍ଞାନଭଣ୍ଡାର ବିକଶିତ ହୁଏ, ନିଜର ଦୃଷ୍ଟିକୋଣ ପ୍ରଶସ୍ତ ହୁଏ ଏବଂ ସଂକୀର୍ଣ୍ଣତା ଅପସାରିତ ହୁଏ । ସେଥିପାଇଁ ଆଜିକାଲି ବିଦ୍ୟାଳୟମାନଙ୍କରେ ପରିଭ୍ରମଣ ବା ଏକ୍ସ୍‌କର୍‌ସନ୍‌ର ବ୍ୟବସ୍ଥା ହୋଇଅଛି । ଇଂରାଜୀ କବି ବେକନ୍ କହିଅଛନ୍ତି—ଯେଉଁ ସମସ୍ତ ଜିନିଷ ଦ୍ରଷ୍ଟବ୍ୟ ଓ ପର୍ଯ୍ୟବେକ୍ଷଣଯୋଗ୍ୟ, ତାହା ହେଉଛି—ବିଚାରାଳୟ, ଧର୍ମପୀଠ ଓ ସନ୍ନ୍ୟାସୀମାନଙ୍କର ମଠ । ଏହାର ସ୍ଥାପତ୍ୟ, ସହର ଓ ନଗରୀ-ମାନଙ୍କର ପ୍ରାଚୀର ଓ ଦୁର୍ଗାଦି ନିର୍ମାଣକୌଶଳ, ବନ୍ଦର ଓ ପୋତାଶ୍ରୟ, ପ୍ରାଚୀନ ଧ୍ୱଂସାବଶେଷ, ଗ୍ରନ୍ଥାଳୟ, ବିଶ୍ୱବିଦ୍ୟାଳୟ, ତର୍କସଭା ଗୃହ, ନୌବିହାର ଓ ରଣତରୀସମୂହ, ଲୋକାଳୟ ଓ ଉଦ୍ୟାନ ଏବଂ ବିରାଟ ନଗରୀ ନିକଟବର୍ତ୍ତୀ କ୍ରୀଡ଼ାସ୍ଥଳୀ, ଅସ୍ତ୍ରାଗାର; ବିଶେଷ ବାଣିଜ୍ୟକେନ୍ଦ୍ର, ପଣ୍ୟାଗାର, ସୈନ୍ୟଶିକ୍ଷା, ଅଶ୍ୱାରୋହୀ-ଙ୍କର କ୍ରୀଡ଼ା ନୈପୁଣ୍ୟ, ଅସିଚାଳନାକୌଶଳ, ମଣିମୁକ୍ତା ଓ ରାଜକୀୟ ପରିଚ୍ଛଦର ଭଣ୍ଡାର, ମନ୍ତ୍ରଣା ଗୃହ ବା କ୍ୟାବିନେଟ୍ ଓ ଦୁଷ୍ପ୍ରାପ୍ୟ ପଦାର୍ଥସକଳ ଏବଂ ପରିଶେଷରେ ସ୍ଥଳବିଶେଷର ଯାହା କିଛି ସ୍ମରଣୀୟ ସେ ସକଳ ଦ୍ରଷ୍ଟବ୍ୟ ।



# ପୁରୁଷୋତ୍ତମ କ୍ଷେତ୍ର

ହିନ୍ଦୁମାନଙ୍କର ଦେବାଧିଦେବ ସ୍ୱୟଂ ଜଗନ୍ନାଥଙ୍କ ଯୋଗେ ଉତ୍କଳ ଭାରତର ପୁଣ୍ୟଭୂମିରୂପରେ ପୂଜା ପାଇଲା । ହିନ୍ଦୁରାଜ୍ୟର ଚାରିଧାମ ମଧ୍ୟରୁ ପୁରୀ ସର୍ବଶ୍ରେଷ୍ଠ ଧାମ, ଭୁବନେଶ୍ୱର ମଧ୍ୟ ହିନ୍ଦୁ-ମାନଙ୍କର ଏବଂ ତାହା ପୂର୍ବରୁ ଜୈନମାନଙ୍କର ପ୍ରଧାନ ଧର୍ମପୀଠ । ଚାରି ଧର୍ମକ୍ଷେତ୍ରମଧ୍ୟରୁ ପୁରୀ 'ଚକ୍ରତୀର୍ଥ', ଭୁବନେଶ୍ୱର 'ଶଙ୍ଖକ୍ଷେତ୍ର' କୋଣାର୍କ 'ପଦ୍ମକ୍ଷେତ୍ର' ଏବଂ ଯାଜପୁର'ଗଦାକ୍ଷେତ୍ର' ନାମରେ ପ୍ରସିଦ୍ଧ ।

ଉତ୍କଳର ପବିତ୍ରତାଯୋଗୁଁ ଭାରତର ପ୍ରଧାନ ପ୍ରଧାନ ଧର୍ମସମ୍ପ୍ରଦାୟମାନେ ପୁରୀକୁ ପରମ ଆଶ୍ରୟସ୍ଥଳୀ କରିଛନ୍ତି । ଶ୍ରୀ ଶଙ୍କରାଚାର୍ଯ୍ୟ, ଶ୍ରୀ ରାମାନୁଜପ୍ରଭୃତି ସିଦ୍ଧ ସାଧକମାନଙ୍କର ପୀଠ ପୁରୀରେ ଅଛି । ଶ୍ରୀକୃଷ୍ଣ, ଚୈତନ୍ୟ, ହରନାଥପ୍ରଭୃତି ମହାପୁରୁଷ-ମାନେ ଶ୍ରୀକ୍ଷେତ୍ରକୁ ଆପଣାର ପ୍ରଧାନ ଲୀଳାସ୍ଥଳୀ କରିଥିଲେ । ଏମାନଙ୍କ ବାଦ୍ କେତେ ସିଦ୍ଧତପା ଯୋଗୀଋଷି ଉତ୍କଳଭୂମିରେ ଆଶ୍ରୟ ନେଇ ଏହାକୁ ପରମ ପବିତ୍ର କରିଯାଇଅଛନ୍ତି । ପୁରୀ, କୋଣାର୍କ, ଚନ୍ଦ୍ରଭାଗା ବାଦ୍ ଏକାମ୍ରକାନନ, ବିରଜାକ୍ଷେତ୍ର, [illegible] ଯାଜପୁର, ବୈତରଣୀ, ଶବୋପୃଳା, ପ୍ରାଚୀପ୍ରଭୃତି ପବିତ୍ର କ୍ଷେତ୍ର ଓ ତୀର୍ଥରୂପେ ସମଗ୍ର ଭାରତରେ ଆଦର ପାଉଛି । ମହା-ଭାରତ, ବ୍ରହ୍ମପୁରାଣ, ସ୍କନ୍ଦପୁରାଣ, ପଦ୍ମପୁରାଣପ୍ରଭୃତି ଉତ୍କଳକୁ ଭାରତର ପ୍ରଧାନ ପୁଣ୍ୟ ଦେଶ ବୋଲି ବର୍ଣ୍ଣନା କରିଅଛନ୍ତି ।

—ଐତିହାସିକ କୃପାସିନ୍ଧୁ, ଉତ୍କଳ ଇତିହାସ—

ସଂସାରମଧ୍ୟରେ ପୁଣ୍ୟକ୍ଷେତ୍ର ଅଛି ଜାଣ
ଶ୍ରୀପୁରୁଷୋତ୍ତମ ବୋଲି ବିଷ୍ଣୁର ନିର୍ମାଣ ।
ସମସ୍ତ ତୀର୍ଥମାନଙ୍କ ସାର ଅଟେ ସେହି
ବୈକୁଣ୍ଠପୁର ବୋଲି ସମସ୍ତେ ହିଁ କହି ।
ସେ ଭୁବନ ବିଷ୍ଣୁଙ୍କର ଅଟେ ନିଜ ଧାମ
ମୁକତି ହୁଅନ୍ତି ନରେ ଧରିଲେ ତା ନାମ ।
ସବୁ ତୀର୍ଥେ ଅଶ୍ରେକର ଥାଅନ୍ତି ତହିଁର
ଅସଂଖ୍ୟ ମହିମା ଦ୍ୱିତୀ ବୈକୁଣ୍ଠପୁର ।
ତହିଁର ମହିମା ଏବେ ଶୁଣ ମନଦେଇ
ସଂକ୍ଷେପି କହିବା ସେହି ବିସ୍ତର ଅଟଇ ।
କହି ନ ପାରନ୍ତି ଯାହା ମୁଖେ ବେଦବିର
ଶ୍ରୀହରି ପ୍ରସାଦେ କହେ ମୁହିଁ ତୋ ଅଗର ।
ଲବଣସିନ୍ଧୁର ଜାଣ ଉତ୍ତର ତୀରରେ
କନ୍ଦର ଅଛଇ ନୀଳପର୍ବତ ମଧ୍ୟରେ ।
ନୀଳଗିରି ବୋଲି ଶୁଦ୍ଧ ତା ନାମ ଅଟଇ
ସେଠାରେ ବଡ଼ିଭିରୂପେ ଶ୍ରୀହରି ଯେ ଥାଇ ।
ପୁରୁଷଙ୍କ ମଧ୍ୟେ କରି ପୁରୁଷ ଉତ୍ତମ
ତେଣୁ ଶ୍ରୀପୁରୁଷୋତ୍ତମ ସେହି କ୍ଷେତ୍ର ନାମ ।
ନୀଳଗିରି ମହିମା ଗୋ କି କହିବି ମୁହିଁ
ଚଣ୍ଡାଳ ହାତରୁ ଅନ୍ନ ବ୍ରାହ୍ମଣ ଯେ ଖାଇ ।
ଯେଉଁ ଅନ୍ନ ଲକ୍ଷ୍ମୀଦେବୀ କରନ୍ତି ରନ୍ଧନ
ପ୍ରତ୍ୟକ୍ଷେ ଭୁଞ୍ଜନ୍ତି ତାହା ପ୍ରଭୁ ଭଗବାନ ।
ତହୁଁ ଅବଶେଷ ଜାଣ ଶ୍ରୀମହାପ୍ରସାଦ
ଦେବେ ବିନାଶନ୍ତି ଖାଇ ସକଳ ବିଷାଦ ।

# ପୁରୁଷୋତ୍ତମ କ୍ଷେତ୍ର

ହିନ୍ଦୁମାନଙ୍କର ଦେବାଧିଦେବ ସ୍ୱୟଂ ଜଗନ୍ନାଥଙ୍କ ଯୋଗେ ଉତ୍କଳ ଭାରତର ପୁଣ୍ୟଭୂମିରୂପରେ ପୂଜା ପାଇଲା । ହିନ୍ଦୁରାଜ୍ୟର ଚାରିଧାମ ମଧ୍ୟରୁ ପୁରୀ ସର୍ବଶ୍ରେଷ୍ଠ ଧାମ, ଭୁବନେଶ୍ୱର ମଧ୍ୟ ହିନ୍ଦୁ-ମାନଙ୍କର ଏବଂ ତାହା ପୂର୍ବରୁ ଜୈନମାନଙ୍କର ପ୍ରଧାନ ଧର୍ମପୀଠ । ଚାରି ଧର୍ମକ୍ଷେତ୍ରମଧ୍ୟରୁ ପୁରୀ 'ଶଙ୍ଖତୀର୍ଥ', ଭୁବନେଶ୍ୱର 'ଶଙ୍ଖକ୍ଷେତ୍ର କୋଣାର୍କ 'ପଦ୍ମକ୍ଷେତ୍ର' ଏବଂ ଯାଜପୁର'ଗଦାକ୍ଷେତ୍ର' ନାମରେ ପ୍ରସିଦ୍ଧ ।

ଉତ୍କଳର ପବିତ୍ରତାଯୋଗୁଁ ଭାରତର ପ୍ରଧାନ ପ୍ରଧାନ ଧର୍ମସମ୍ପ୍ରଦାୟମାନେ ପୁରୀକୁ ପରମ ଆଶ୍ରୟସ୍ଥଳୀ କରିଛନ୍ତି । ଶ୍ରୀ ଶଙ୍କରାଚାର୍ଯ୍ୟ, ଶ୍ରୀ ରାମାନୁଜପ୍ରଭୃତି ସିଦ୍ଧ ସାଧକମାନଙ୍କର ପୀଠ ପୁରୀରେ ଅଛି । ଶ୍ରୀକୃଷ୍ଣ, ଚୈତନ୍ୟ, ହରନାଥପ୍ରଭୃତି ମହାପୁରୁଷ-ମାନେ ଶ୍ରୀକ୍ଷେତ୍ରକୁ ଆପଣାର ପ୍ରଧାନ ଲୀଳାସ୍ଥଳୀ କରିଥିଲେ । ଏମାନଙ୍କ ବାଦ୍ କେତେ ସିଦ୍ଧତପା ଯୋଗୀଋଷି ଉତ୍କଳଭୂମିରେ ଆଶ୍ରୟ ନେଇ ଏହାକୁ ପରମ ପବିତ୍ର କରିଯାଇଅଛନ୍ତି । ପୁରୀ, କୋଣାର୍କ, ଚନ୍ଦ୍ରଭାଗା ବାଦ୍ ଏକାମ୍ରକାନନ, ବିରଜାକ୍ଷେତ୍ର, ବା ଯାଜପୁର, ବୈତରଣୀ, ଶତୋପୃଳା, ପ୍ରାଚୀପ୍ରଭୃତି ପବିତ୍ର କ୍ଷେତ୍ର ଓ ତୀର୍ଥରୂପେ ସମଗ୍ର ଭାରତରେ ଆଦର ପାଉଛି । ମହା-ଭାରତ, ବ୍ରହ୍ମପୁରାଣ, ସ୍କନ୍ଦପୁରାଣ, ପଦ୍ମପୁରାଣପ୍ରଭୃତି ଉତ୍କଳକୁ ଭାରତର ପ୍ରଧାନ ପୁଣ୍ୟ ଦେଶ ବୋଲି ବର୍ଣ୍ଣନା କରିଅଛନ୍ତି ।

—ଐତିହାସିକ କୃପାସିନ୍ଧୁ, ଉତ୍କଳ ଇତିହାସ—

ସଂସାରମଧ୍ୟରେ ପୂଣ୍ୟକ୍ଷେତ୍ର ଅଛି ଜାଣ
ଶ୍ରୀପୁରୁଷୋତ୍ତମ ବୋଲି ବିଷ୍ଣୁର ନିର୍ମାଣ ।
ସମସ୍ତ ତୀର୍ଥମାନଙ୍କ ସାର ଅଟେ ସେହି
ବୈକୁଣ୍ଠପୁର ବୋଲି ସମସ୍ତେ ହିଁ କହି ।
ସେ ଭୁବନ ବିଷ୍ଣୁଙ୍କର ଅଟେ ନିଜ ଧାମ
ମୁକତ ହୁଅନ୍ତି ନରେ ଧରିଲେ ତା ନାମ ।
ସର୍ବ ତୀର୍ଥେ ଅଶ୍ରେକର ଥାଅନ୍ତି ତହିଁର
ଅସଂଖ୍ୟ ମହିମା ଦ୍ୱିତୀ ବୈକୁଣ୍ଠପୁର ।
ତହିଁର ମହିମା ଏବେ ଶୁଣ ମନଦେଇ
ସଂକ୍ଷେପି କହିବା ସେହି ବିସ୍ତର ଅଟଇ ।
କହି ନ ପାରନ୍ତି ଯାହା ମୁଖେ ବେଦବର
ଶ୍ରୀହରି ପ୍ରସାଦେ କହେ ମୁହିଁ ତୋ ଅଗର ।
ଲବଣସିନ୍ଧୁର ଜାଣ ଉତ୍ତର ତୀରରେ
କନ୍ଦର ଅଛଇ ନୀଳପର୍ବତ ମଧ୍ୟରେ ।
ନୀଳଗିରି ବୋଲି ଶୁଦ୍ଧ ତା ନାମ ଅଟଇ
ସେଠାରେ ବିଭୁଙ୍କରୂପେ ଶ୍ରୀହରି ଯେ ଥାଇ ।
ପୁରୁଷଙ୍କ ମଧ୍ୟେ କରି ପୁରୁଷ ଉତ୍ତମ
ତେଣୁ ଶ୍ରୀପୁରୁଷୋତ୍ତମ ସେହି କ୍ଷେତ୍ର ନାମ ।
ନୀଳଗିରି ମହିମା ଗୋ କି କହିବି ମୁହିଁ
ଚଣ୍ଡାଳ ହାତରୁ ଅନ୍ନ ବ୍ରାହ୍ମଣ ଯେ ଖାଇ ।
ଯେଉଁ ଅନ୍ନ ଲକ୍ଷ୍ମୀଦେବୀ କରନ୍ତି ରନ୍ଧନ
ପ୍ରତ୍ୟକ୍ଷେ ଭୁଞ୍ଜନ୍ତି ତାହା ପ୍ରଭୁ ଭଗବାନ ।
ତହୁଁ ଅବଶେଷ ଜାଣ ଶ୍ରୀମହାପ୍ରସାଦ
ଦେବେ ବିନାଶନ୍ତି ଖାଇ ସକଳ ବିଷାଦ ।

ହରି-ଶେଷଭୁକ୍ତ ଅନ୍ନ ଦୁର୍ଲ୍ଲଭ ଜଗତେ
ତାହା ଖାଇଲେ ମୁକତ ହୁଅନ୍ତି ସମସ୍ତେ ।
ବ୍ରହ୍ମାଦି ଦେବତା ତହିଁ'ନର ରୂପ ହୋଇ
ନିତ୍ୟେ ହରି-ଅବଶେଷ ଅନ୍ନ ଥାନ୍ତି ଖାଇ ।
ଯାହାର ବିଶ୍ୱାସ ନୋହେ ମହାପ୍ରସାଦରେ
ବିଷ୍ଣୁଦ୍ରୋହୀ ହୋଇ ସେହୁ ପଡ଼େ ନରକରେ ।
ଚିନ୍ତାପୂତ୍ରେ ଗଙ୍ଗୋଦକ ବିଶୁଦ୍ଧ ଯେ ଜାଣ
ବିଷ୍ଣୁର ନିର୍ମାଲ୍ୟ ସେହିରୂପେ ସର୍ବକ୍ଷଣ ।
ସୁକୋମଳ ଅଟଇ ସେ ବିଷ୍ଣୁର ନିର୍ମାଲ୍ୟ
ବଜ୍ରସମ ପାପ ଭେଦ କରେ ଯେହ୍ନେ ଶଲ୍ୟ ।
ସେ ବିଷ୍ଣୁନିର୍ମାଲ୍ୟ ଶୁଷ୍କ ବାସୀ ହୋଇଥିଲେ
ଶତ ଜନମର ପାପ ବିନାଶେ ଖାଇଲେ ।
ସେ କ୍ଷେତ୍ରରେ ଯେଉଁମାନେ ହୁଅନ୍ତି ବିନାଶ
ଚତୁର୍ଭୂଜେ ବଇକୁଣ୍ଠେ କରନ୍ତି ସେ ବାସ ।
କୋଟି କୋଟି ଜନ୍ମ ମହାପାପୀ ଯେଉଁଜନ
ତହିଁ ବାସ କଲେ ପାପ ହୁଅଇ ଦହନ ।
ମାର୍କଣ୍ଡେୟ ଇନ୍ଦ୍ରଦ୍ୟୁମ୍ନ କୁଣ୍ଡ ରୋହିଣୀର
ମହୋଦଧି ଶ୍ୱେତଗଙ୍ଗା ପଞ୍ଚତୀର୍ଥ ସାର ।
ଯେଉଁମାନେ ତହିଁ ଯାଇ କରନ୍ତି ସ୍ନାନ
ହରିଙ୍କି ଦେଖିଣ ପାପ କରନ୍ତି ଦହନ ।
ଏ ତୀର୍ଥରେ ଦାନ-ଯଜ୍ଞ-ପୂଜାମାନ କଲେ
ସର୍ବପାପ ନାଶି ବସେ ବଇକୁଣ୍ଠେ ଭଲେ ।
ମହୋଦଧିତୀରେ ପିତୃଶ୍ରାଦ୍ଧ ଯେ କରନ୍ତି
ପାପ ନାଶି ପିତୃଗଣେ ବୈକୁଣ୍ଠେ ଗମନ୍ତି ।"

———

# ଭୁବନେଶ୍ୱର

"ଯଯାତିକେଶରୀ ଭୁବନେଶ୍ୱରରେ ଯେଉଁ ଶିବକ୍ଷେତ୍ର ଆରମ୍ଭ କରିଥିଲେ, ଲଲାଟେନ୍ଦୁକେଶରୀ ତାହା ପୂର୍ଣ୍ଣ କରିବାରେ ଲାଗିଲେ । ଲଲାଟେନ୍ଦୁ ଭୁବନେଶ୍ୱରରେ ସାତ ସାହି ଓ ବସ୍ତ୍ରାଳୟ କନ୍ଦିବିଶିଷ୍ଟ ଗୋଟିଏ ସହର ବସାଇଲେ । ଭୁବନେଶ୍ୱର ଅତି ପ୍ରାଚୀନ କାଳରୁ ଉତ୍କଳର ରାଜଧାନୀରୂପେ ପ୍ରସିଦ୍ଧ ଥିଲା ଏବଂ ଶିବକ୍ଷେତ୍ରଯୋଗେ ଭୁବନେଶ୍ୱରର ମାହାତ୍ମ୍ୟ ହିନ୍ଦୁଜଗତରେ ଅଧିକ ବଢ଼ିଗଲା । ଉତ୍କଳରେ ଯେତେ ମନ୍ଦିର ଅଛି ବା ଯେତେ ଥିଲା, ଲିଙ୍ଗରାଜ ମନ୍ଦିର ସର୍ବାପେକ୍ଷା ପୁରାତନ; ଶିଳ୍ପକଳା ସମ୍ବନ୍ଧରେ ଭୁବନେଶ୍ୱର କେବଳ ଭାରତ ନୁହେଁ ସମଗ୍ର ପୃଥିବୀରେ ପ୍ରସିଦ୍ଧ । କଳାର ଏହି ଅପୂର୍ବ ଉତ୍କର୍ଷଯୋଗେ ଉତ୍କଳୀୟମାନେ ପୃଥିବୀରେ ଖ୍ୟାତ ହୋଇଅଛନ୍ତି । ଲିଙ୍ଗରାଜଙ୍କ ମନ୍ଦିରର ଉଚ୍ଚତା ବେଢ଼ାପ୍ରାଙ୍ଗଣରୁ ୧୬୦ ଫୁଟ, ବେଢ଼ା ଦୈର୍ଘ୍ୟରେ ୫୨୦ ଫୁଟ ଏବଂ ପ୍ରସ୍ଥରେ ୪୬୫ ଫୁଟ । ବେଢ଼ାର କ୍ଷେତ୍ରଫଳ ମୋଟରେ ୪୨ (ସାଢେଚାରି) ଏକର । ଏହି ବେଢ଼ା ମଧ୍ୟରେ ପାର୍ଶ୍ୱ ଦେବତାଙ୍କର କ୍ଷୁଦ୍ର କ୍ଷୁଦ୍ର ମନ୍ଦିର ପାଖିଏ କମ୍ବା ସତୁରି ପର୍ଯ୍ୟନ୍ତ ଅଛି । ବେଢ଼ାର ବାହାରେ ବହୁଦୂର ଧରି ଆଜି ସବୁ ଯେ ମନ୍ଦିରମାନ ଅଛି ତାହାମଧ୍ୟରେ ବିନ୍ଦୁସାଗର ପାର୍ଶ୍ୱ-ବର୍ତ୍ତୀ ଅନନ୍ତ ବାସୁଦେବ, ଉତ୍ତରେଶ୍ୱର, ଶିଶିରେଶ୍ୱର, କପାଳିନୀ, ଶାନ୍ତିଦେଉଳ,ପାପନାଶିନୀକୁଣ୍ଡ-ପାର୍ଶ୍ୱବର୍ତ୍ତୀ ବରୁଣେଶ୍ୱର, ମୈତ୍ରେ-ଶ୍ୱର, ଚନ୍ଦ୍ରକର୍ଣ୍ଣୀ, କେଦାରଗୌରୀକୁଣ୍ଡ-ପାର୍ଶ୍ୱବର୍ତ୍ତୀ 'ପରଶୁରାମେଶ୍ୱର,

ସିଦ୍ଧେଶ୍ୱର, ମୁକ୍ତେଶ୍ୱର, କେଦାରେଶ୍ୱର, ଗୌରୀ-ରାଜରାଣୀ ଏବଂ ନାଗେଶ୍ୱର ମନ୍ଦିର, ଗୋସହସ୍ରେଶ୍ୱର ଓ ତାହାର ନିକଟବର୍ତ୍ତୀ ମନ୍ଦିରମାନ ଏବଂ ଦକ୍ଷିଣରେ କପିଳେଶ୍ୱର, ଉତ୍ତରରେ ରାମେଶ୍ୱର, ପଶ୍ଚିମରେ ଯମେଶ୍ୱର ଏବଂ ପୂର୍ବରେ ବ୍ରହ୍ମେଶ୍ୱର, ମେଘେଶ୍ୱର ଓ ଭାସ୍କରେଶ୍ୱର ମନ୍ଦିରମାନ ପ୍ରଧାନ । ଭୁବନେଶ୍ୱରର ସକଳ ମନ୍ଦିରମାନଙ୍କ ମଧ୍ୟରେ ମୁକ୍ତେଶ୍ୱର ମନ୍ଦିର,ଶିଳ୍ପରେ ସର୍ବାଙ୍ଗସୁନ୍ଦର ବୋଲି ପ୍ରଶଂସିତ । କବି ଭାଷାରେ ଏହା ପଥରରେ ସ୍ୱପ୍ନ ଆଖ୍ୟା ଦେଇଅଛନ୍ତି । ଲିଙ୍ଗରାଜ ଓ ମୁକ୍ତେଶ୍ୱର ମନ୍ଦିରମାନଙ୍କ ଦେହରେ ପ୍ରସ୍ତର ଉପରେ ନାନାପ୍ରକାର ଲତାପତ୍ର, ଫଳ ପୁଷ୍ପର କାମ, ପଶୁପକ୍ଷୀ ଓ ଅନ୍ୟାନ୍ୟ ଜୀବଜନ୍ତୁର ମୂର୍ତ୍ତି ଏବଂ ନର-ଦେବତାଙ୍କ ପ୍ରତିମୂର୍ତ୍ତି ସବୁ ଦେଖିଲେ ଦେଢ଼ ହଜାର ବର୍ଷପୂର୍ବେ ଉତ୍କଳୀୟ ଶିଳ୍ପୀମାନଙ୍କର ଅଲୌକିକ ପ୍ରତିଭା, ସହଜ କଳା-କୁଶଳତା ଏବଂ ଅଦ୍ଭୁତ ଗଠନକୌଶଳ ବର୍ତ୍ତମାନ ଉନ୍ନତ ଯୁଗର ଶିଳ୍ପିମାନଙ୍କ ମନରେ ଆଶ୍ଚର୍ଯ୍ୟ ଜନ୍ମାଏ । ସୁନା ରୁପାର କାମ ପରି ପଥରରେ ଲତାପତ୍ରର କାମ ଅତ୍ୟନ୍ତ ସୂକ୍ଷ୍ମ ଓ ସୁନ୍ଦର । ଜୀବଜନ୍ତୁମାନେ ଯେପରି ପୂର୍ଣ୍ଣପ୍ରାଣରେ ପ୍ରକୃତିର ଅନନ୍ତ କୋଳରେ ସ୍ୱଚ୍ଛନ୍ଦ ବିହାର କରୁଥିବାର ବୋଧହୁଏ । ମନୁଷ୍ୟର ପ୍ରତିକୃତିଗୁଡ଼ିକ ଅଦ୍ଭୁତ ଆଶ୍ଚର୍ଯ୍ୟଜନକ । ମନୁଷ୍ୟର ହାବଭାବ, ମନର ସକଳ ପ୍ରକାର ଅବସ୍ଥା ବହୁରଙ୍ଗରେ ପୂର୍ଣ୍ଣରୂପେ ପ୍ରକାଶ ପାଇଛି । ଯୁଦ୍ଧମଧ୍ୟରେ ସୈନିକର ମନୋଭାବ, ପ୍ରେମରେ ପ୍ରେମିକର ଭାବୋଚ୍ଛ୍ୱାସ, ନୃତ୍ୟମଦରେ ନର୍ତ୍ତକୀର ପୂର୍ଣ୍ଣପ୍ରାଣ, ବିଚ୍ଛେଦରେ ବିରହୀର ଶୂନ୍ୟପ୍ରାଣ, ସମ୍ଭୋଗରେ ଭୋଗୀର ନିଶ୍ଚିନ୍ତ ହୃଦୟ ଇତ୍ୟାଦି ମନୁଷ୍ୟ ମନର ବିଭିନ୍ନ ଅବସ୍ଥାର ବିଭିନ୍ନ ଭାବ ପ୍ରସ୍ତର-ଦେହରେ ଅତି ବିଶଦଭାବରେ ଖୋଳାଯାଇଛି । ସ୍ଥୂଳତଃ ମନୁଷ୍ୟଜୀବନରେ ଯେତେ ଭାବର ପରିବର୍ତ୍ତନ ଘଟିପାରେ, ମନୁଷ୍ୟ

"ଯେତେ ଯେତେ ଅବସ୍ଥାରେ ଜୀବନ ଯାପନ କରିପାରିବା ସମ୍ଭବ —ଗୃହୀ, ସନ୍ନ୍ୟାସୀ, ରାଜା, ସୈନିକ, ପ୍ରେମିକ, ମଲ୍ଲ, ଶିକାରୀ, ଗାୟକ, ବାଦକ, ନର୍ତ୍ତକ, ଶିକ୍ଷକ, ବଣିକ, କୃଷକ, ନାବିକ, କାମୁକ, ଧାର୍ମିକ ପ୍ରଭୃତି ସକଳ ଅବସ୍ଥାରେ ମନୁଷ୍ୟର ଭାବଭଙ୍ଗି ଅତି ଅଶ୍ଚର୍ଯ୍ୟରୂପେ ସେ କାଳର ଉତ୍କଳୀୟ ଶିଳ୍ପୀମାନେ ପ୍ରସ୍ତର-ଦେହରେ ଦେଖାଇଥିଲେ । ପୁଣି ଦେଢ଼ ହଜାର ବର୍ଷତଳେ କାମ ହୋଇଥିଲେ ସୁଦ୍ଧା ସେସବୁ ଏବେ ମଧ୍ୟ ଜୀବନ୍ତ ଓ ନୂତନପରି ବୋଧହୁଏ । ସୁତରାଂ ଭୁବନେଶ୍ୱରକୁ ଉତ୍କଳକଳା-ଇତିହାସର ସାରସଂଗ୍ରହ ବୋଲି କୁହାଯାଇପାରେ ।"

—ଉତ୍କଳ ଇତିହାସ—କୃପାସିନ୍ଧୁ ମିଶ୍ର—

---

# ତିରୁପତି

## ଶ୍ରୀ ବନମାଳୀ ବାବୁ, ମନ୍ତ୍ରୀ (ଆଇନ୍ ଓ ଦେବୋତ୍ତର ବିଭାଗ)

"ହିନ୍ଦୁଧର୍ମ ବ୍ୟବସ୍ଥାରେ ମନ୍ଦିର ଓ ମଠଗୁଡ଼ିକ ହେଉଛନ୍ତି ମୁଖ୍ୟ ସଂସ୍ଥା । ଭାରତବର୍ଷ ମନ୍ଦିର ଓ ଅନ୍ୟାନ୍ୟ ଧର୍ମାନୁଷ୍ଠାନରେ ପରିପୂର୍ଣ୍ଣ । ମନ୍ଦିରମାଳିନୀ ଓଡ଼ିଶା ସେଥିରୁ ବାଦ୍ ଯାଇନାହିଁ । ଓଡ଼ିଶାରେ ଉଲ୍ଲେଖଯୋଗ୍ୟ ସଂଖ୍ୟାରେ ଯେଉଁ ସବୁ ମନ୍ଦିର ଓ ଧର୍ମାନୁଷ୍ଠାନ ରହିଛି ସେଗୁଡ଼ିକର ସଂଖ୍ୟା ପ୍ରାୟ ଦଶହଜାର ହେବ । ଏହି ସମସ୍ତ ଧର୍ମାନୁଷ୍ଠାନ ଯେ କେବଳ ଈଶ୍ୱରପୂଜା ଓ ଆରାଧନାର ପୀଠ ଥିଲା ତାହା ନୁହେଁ, ଧର୍ମ ଓ ସାଂସ୍କୃତିକ କାର୍ଯ୍ୟକ୍ରମର ମଧ୍ୟ ଏହା ଥିଲା କେନ୍ଦ୍ର । ଧର୍ମାଲୋଚନା ଓ ଧର୍ମଶିକ୍ଷା ବ୍ୟତୀତ ସଙ୍ଗୀତ,

ସ୍ଥାପତ୍ୟ, କାରୁକାର୍ଯ୍ୟ, ଚିତ୍ରବିଦ୍ୟା ଏବଂ ନୃତ୍ୟ ଇତ୍ୟାଦି ବିବିଧ ବିଭାଗରେ ମଧ୍ୟ ଶିକ୍ଷା ଦିଆଯାଉଥିଲା । ମନ୍ଦିରର ତଥା ମନ୍ଦିରରେ ଅନୁଷ୍ଠିତ ବିଭିନ୍ନ ଯାତ୍ରାଯାତ୍ରା ଓ ଉତ୍ସବ ଦେଶରେ କଳା ଓ ସଙ୍ଗୀତର ବିକାଶ ଉପଯୋଗୀ କାର୍ଯ୍ୟକ୍ରମର ଏକ ଅଙ୍ଗ ଥିଲା । ଦୁର୍ଭାଗ୍ୟବଶତଃ ଅଧୁନା ଅଧିଷ୍ଠାତ୍ରୀ ଦେବ-ଦେବୀମାନଙ୍କର ପୂଜା, ସେବା ଓ ପରିଚାଳନାରେ ଯେ କେବଳ ବିଶେଷ ଅଧୋଗତି ଘଟିଛି ତାହା ନୁହେଁ, ଧର୍ମାନୁଷ୍ଠାନଗୁଡ଼ିକର ମୁଖ୍ୟ ଲକ୍ଷ୍ୟ ଓ ମହାନ୍ ଉଦ୍ଦେଶ୍ୟ ମଧ୍ୟ ବ୍ୟାହତ ହୋଇଛି । କୌଣସିଠାରେ ହେଲେ ମୂଳ ଲକ୍ଷ୍ୟ ଆଉ ଦେଖିବାକୁ ମିଳୁନାହିଁ । ଧର୍ମାନୁଷ୍ଠାନରେ ଥିବା ପାଣ୍ଡିର ଗର୍ହିତ ଅସଦ୍‌ବ୍ୟବହାର ଏବଂ ଯାତ୍ରୀମାନଙ୍କ ପ୍ରତି ସେମାନଙ୍କ ଆଶାନୁରୂପ ବ୍ୟବହାରର ଅଭାବ ସମ୍ପର୍କରେ ଆପତ୍ତି ଅଭିଯୋଗ ହେଉଛି । ଉଲ୍ଲିଖିତ ସମସ୍ତ ତ୍ରୁଟିର ପରିଣାମସ୍ୱରୂପ ଧର୍ମାନୁଷ୍ଠାନଗୁଡ଼ିକ ପ୍ରତି ଜନସାଧାରଣଙ୍କର କ୍ରମେ ଆସ୍ଥା ହ୍ରାସ ପାଉଛି । ଏହି ସମସ୍ତ ତ୍ରୁଟି, ବିଚ୍ୟୁତି ଓ ଆପତ୍ତି ଅଭିଯୋଗର ତଦନ୍ତ କରି ସେ ସବୁର ଦୂରୀକରଣ ଓ ମନ୍ଦିର ପରିଚାଳନାରେ ଉନ୍ନତିବିଧାନ ସମ୍ପର୍କରେ ସ୍ୱତନ୍ତ୍ର ପ୍ରସ୍ତାବ ଦେବାପାଇଁ ଭାରତ-ସରକାର ହିନ୍ଦୁ ଦେବୋତ୍ତର କମିଶନ ନିଯୁକ୍ତ କରିଥିଲେ । ଏହି କମିଶନ ତିରୁପତି ମନ୍ଦିରସମୂହର ପରିଚାଳନା ବ୍ୟବସ୍ଥାକୁ ବିଶେଷ ତାରିଫ କରିଛନ୍ତି ଏବଂ ଏଭଳି ଏକ ପରିଚାଳନା ବ୍ୟବସ୍ଥାକୁ ଅନ୍ୟମାନେ ଗ୍ରହଣ କରିବାପାଇଁ ସୁପାରିଶ କରିଛନ୍ତି । ଅଥଚ ତିରୁପତି ଶ୍ରୀ ଲିଙ୍ଗରାଜ କିମ୍ବା ଶ୍ରୀ ଜଗନ୍ନାଥ ମନ୍ଦିର ତୁଳନାରେ ଅଧିକ ପ୍ରାଚୀନ ନୁହେଁ ।

ବିସ୍ମୟର କଥା ଏହି ଯେ ନଅଶହବର୍ଷର ପୁରାତନ ଭୁବନେଶ୍ୱରର ବିଶ୍ୱ-ବିଶ୍ରୁତ ଲିଙ୍ଗରାଜ ମନ୍ଦିର ଓ ପୁରୀର ଶ୍ରୀଜଗନ୍ନାଥ ମନ୍ଦିର

ଦର୍ଶନରେ ଆସୁଥିବା ଦୈନିକ ଯାତ୍ରୀଙ୍କ ସଂଖ୍ୟା ଦଶ ହଜାରରୁ ଖସି ପାଞ୍ଚହଜାରରେ ରହୁଥିବା ସ୍ଥଳେ ତିରୁପତିରେ ଦୈନିକ ଦଶ ହଜାର ଯାତ୍ରୀ ସମାଗମ ହେଉଛି । ଜଗନ୍ନାଥଙ୍କର ବହୁ ମୂଲ୍ୟବାନ୍ ସମ୍ପତ୍ତି ଥିବା ସତ୍ତ୍ୱେ ଏହାର ବାର୍ଷିକ ଆୟ ଦୁଇଲକ୍ଷ ଟଙ୍କା ପୂରୁନାହିଁ ଏବଂ ଏହାର ସବୁବେଳେ ନିଅଣ୍ଟିଆ ଅବସ୍ଥା, ଅଥଚ ତିରୁପତିର ଆୟ ସଦା ବର୍ଦ୍ଧିଷ୍ଣୁ । ତିରୁପତିର ବର୍ତ୍ତମାନ ବାର୍ଷିକ ଆୟ ପ୍ରାୟ ଦେଢ଼କୋଟି ଟଙ୍କା । ଏହା ଅତ୍ୟନ୍ତ କଷ୍ଟଦାୟକ ବିଷୟ ଯେ, ବହୁ ପ୍ରାକୃତିକ ସୁବିଧା ଓ ସମ୍ବଳ ଥାଇ ମଧ୍ୟ ଏହି ପ୍ରଦେଶର ଧର୍ମାନୁଷ୍ଠାନଗୁଡ଼ିକର ଅଭିବୃଦ୍ଧି ହେଉନାହିଁ । ଲୋକଙ୍କର ଆସ୍ଥା ଅଭାବରୁ ଯେ ଏହା ହୋଇପାରୁନାହିଁ ତାହା ନୁହେଁ; ଧର୍ମାନୁଷ୍ଠାନମାନଙ୍କର ପରିଚାଳନାରେ ଯେଉଁମାନଙ୍କର କିଛି ହେଲେ ହାତ ଅଛି ସେହିମାନଙ୍କର ଆନ୍ତୋରିକତାର ଅଭାବରୁ ହିଁ ଅଭିବୃଦ୍ଧି ଘଟି ପାରୁ ନାହିଁ ।

ମନ୍ଦିରର ଆୟରେ ପରିଚାଳିତ ହୋଇ ତିରୁପତି ପ୍ରାୟ ଏକ ନଗରୀରେ ପରିଣତ ହୋଇସାରିଲାଣି । ଗୋଶାଳା, ଖାଉଟି-ସମବାୟଭଣ୍ଡାର, ଖବର-ସରବରାହ ଅଫିସ, ପରିବହନସଂସ୍ଥା, ପାନୀୟଜଳ ଯୋଗାଣ, ଅନାଥାଶ୍ରମ, ଦୁଃସ୍ଥ ସେବାଶ୍ରମ, ଭିକ୍ଷୁକ-ସଦନ, ଛାପାଖାନା ଓ ଧର୍ମାଲୋଚନାପାଇଁ ପ୍ରତିଷ୍ଠାନଠାରୁ ଆରମ୍ଭ-କରି ବହୁ ସ୍କୁଲ୍ ଏବଂ କଲେଜପ୍ରଭୃତି ବିଶେଷ ବ୍ୟୟବହୁଳ ସାଧାରଣ ହିତକର ଅନୁଷ୍ଠାନମାନ ମନ୍ଦିର ଆୟରୁ ପରିଚାଳିତ ହେଉଅଛି । ତିରୁପତି ମନ୍ଦିର ପରିଚାଳନାକର୍ତ୍ତୃପକ୍ଷ ଏକ ବିଶ୍ୱ-ବିଦ୍ୟାଳୟ ମଧ୍ୟ ପ୍ରତିଷ୍ଠା କରି ତାହା ପରିଚାଳନା କରୁଛନ୍ତି; ଅଥଚ ପ୍ରଭୂତ ସମ୍ବଳ ଥାଇ ପୁରୀ ଏ ଦିଗରେ କୌଣସି ପଦକ୍ଷେପ ନେବାକୁ ସମର୍ଥ ହେଉନାହିଁ ।

---

# ପୃଥିବୀପ୍ରସିଦ୍ଧ କୋଣାର୍କ

"ଓଡ଼ିଶାର କୋଣାର୍କ ମନ୍ଦିର, ବିଶ୍ୱ-ଦରବାରରେ ସମଗ୍ର ଭାରତର ଗର୍ବ ଓ ଗୌରବ । ଏହା କେବଳ ଓଡ଼ିଶାର ନୁହେଁ, ସମଗ୍ର ଭାରତର ଜାତୀୟ ସମ୍ପଦ । ଏହା ଏକ ପରମ ଜାତୀୟ ପୀଠ । କୋଣାର୍କ ମନ୍ଦିର ନିର୍ମାଣରେ ଯେଉଁ ଅପୂର୍ବ ସ୍ଥାପତ୍ୟ, କାରୁକାର୍ଯ୍ୟ, କଳା ଓ ଇଞ୍ଜିନିୟରିଂ କୌଶଳର ନିଦର୍ଶନ ଦେଖିବାକୁ ମିଳେ, ତାହା ଏ ଯୁଗର ବୈଜ୍ଞାନିକମାନଙ୍କୁ ମଧ୍ୟ ବିସ୍ମୟାଭିଭୂତ କରେ ।

ତାଜମହଲ ପୃଥିବୀର ସପ୍ତାଶ୍ଚର୍ଯ୍ୟ ମଧ୍ୟରୁ ଅନ୍ୟତମ ହୋଇଥିଲେ ମଧ୍ୟ, କୋଣାର୍କ ତା' ଠାରୁ ଅଧିକ ମହାନ୍ ଓ ବିରାଟ, ଏହାକୁ 'ବ୍ଲାକ ତାଜମହଲ' ବୋଲି କହିଲେ ଅଧିକ ସମୀଚୀନ ହେବ । କୋଣାର୍କ ନ ଦେଖିଲେ ଭାରତଭ୍ରମଣ ସମ୍ପୂର୍ଣ୍ଣ ବା ସଫଳ ହେଲନାହିଁ ବୋଲି ବିଦେଶୀ ପର୍ଯ୍ୟଟକମାନେ କହନ୍ତି ।

ଉତ୍କଳରାଜା ଲାଙ୍ଗୁଳା ନରସିଂହଦେବ ତାଙ୍କ ରାଜତ୍ୱର ଦ୍ୱିତୀୟ ବର୍ଷରେ ଅର୍ଥାତ୍ ୧୨୨୫ ଖ୍ରୀଷ୍ଟାବ୍ଦରେ କୋଣାର୍କ ମନ୍ଦିର ନିର୍ମାଣ କାର୍ଯ୍ୟ ଆରମ୍ଭ କରି ସତର ବର୍ଷରେ ଅର୍ଥାତ୍ ୧୨୪୨ ଖ୍ରୀଷ୍ଟାବ୍ଦରେ ଶେଷ କରିଥିଲେ । ବାରଶହ ଶିଳ୍ପୀ ଷୋଳବର୍ଷ କାମ କରି ମନ୍ଦିର ନିର୍ମାଣ ଶେଷ କରିଥିଲେ । ମନ୍ଦିର ନିର୍ମାଣରେ ଉତ୍କଳର ଦ୍ୱାଦଶ ବର୍ଷର ରାଜସ୍ୱ, ସେକାଳର ଚାରିକୋଟି ଟଙ୍କା ବ୍ୟୟ କରାଯାଇଥିଲା । ମନ୍ଦିରର ଉଚ୍ଚତା ଥିଲା ଦୁଇଶହ ତିରିଶ ଫୁଟ ଏବଂ ମୁଖଶାଳାର ଉଚ୍ଚତା ଶହେପଚିଶ ଫୁଟ । ବର୍ତ୍ତମାନ ବଡ଼ ଦେଉଳଟି ଭାଙ୍ଗି ପଡ଼ିଛି । ମୁଖଶାଳାର କଳସ ଇତ୍ୟାଦି ଭାଙ୍ଗିପଡ଼ି ମନ୍ଦିରଟି ଶହେ ତିରିଶ ଫୁଟ ଉଚ୍ଚ ରହିଛି ।

କୋଣାର୍କ ତାହାର ଶିଳ୍ପକଳା ନିମନ୍ତେ ଭାରତ ବାହାରେ, ପୃଥିବୀବିଖ୍ୟାତ । କୋଣାର୍କର କାରୁକାର୍ଯ୍ୟ ମନୋମୁଗ୍‌ଧକର ; ମାତ୍ର ମନ୍ଦିର ଯେଉଁ ବିଶାଳ ଶିଳାସାମଗ୍ରୀରେ ଗଢ଼ା, ତାହା ଅତି ବିସ୍ମୟକର । କୋଣାର୍କର ଖଣ୍ଡିଏ ଖଣ୍ଡିଏ ପଥର ଗୋଟିଏ ଗୋଟିଏ ପାହାଡ଼ ପରି । ମୁଖଶାଳା ଉପରେ କଳା ମୁଗୁନିର ଯେଉଁ ନବଗ୍ରହ ଖୋଦିତ ପ୍ରସ୍ତରଖଣ୍ଡ, ତାହା ଭାଙ୍ଗି ପଡ଼ିଛି ଓ ଅନ୍ୟ ସ୍ଥାନରେ ରଖାଯାଇଛି । ନବଗ୍ରହ ମୂର୍ତ୍ତିଗୁଡ଼ିକର ସୌନ୍ଦର୍ଯ୍ୟ ଯେପରି ମହନୀୟ, ପଥରଟିର ବିଶାଳତା ମଧ୍ୟ ସେହିପରି ବିସ୍ମୟଜନକ । ପାଟିଟି କୋଡ଼ିଏ ଫୁଟ ଲମ୍ବ, ଚାରିଫୁଟ ଉଚ୍ଚ ଏବଂ ପାଞ୍ଚଫୁଟ ଓସାର । ଏହାର ଓଜନ ସାତଶହ ଚାଳିଶ ମହଣ । ପାଟରେ ନବଗ୍ରହ ମୂର୍ତ୍ତି ଅଂଶଟି ବର୍ତ୍ତମାନ ମନ୍ଦିର ନିକଟରେ ରଖାଯାଇଛି । ପାଟିଟିକୁ କଲିକତା ଯାଦୁଘରକୁ ନେବାକୁ ନାନା ଚେଷ୍ଟା କରାଯାଇଥିଲା ; କିନ୍ତୁ ସବୁ ଚେଷ୍ଟା ବିଫଳ ହୋଇଛି ।

ବଡ଼ ଦେଉଳ ଉପରୁ ଖସି ପଡ଼ିଥିବା ଗଜସିଂହ ମୂର୍ତ୍ତି, ଯାହାକି ବର୍ତ୍ତମାନ ବେଢ଼ା ଭିତରେ ରହିଅଛି, ତାହାର ଓଜନ ତେରଶହ ମହଣ ହେବ । ଏହି ପ୍ରକାଣ୍ଡ ପଥରଟି କିପରି ବଡ଼ଦେଉଳ କାନ୍ଥରେ ଶହେ ସତୁରିଫୁଟ ଉଚ୍ଚରେ ରଖାଯାଇଥିଲା, ତାହା ଭାବି ହେଉନାହିଁ । ପୁଣି ବଡ଼ଦେଉଳ ଚୂଡ଼ାରେ ଯେଉଁ କଳସଟି ଥିଲା, ତାହା କେବଳ ଗୋଟିଏ ପଥରରେ ତିଆରି ହୋଇଥିଲା । ତାହାର ଓଜନ ପ୍ରାୟ ଛପନ ହଜାର ମହଣ । ଏହି ପ୍ରକାଣ୍ଡ ଶିଳାଟି କିପରି ଦୁଇଶହ ଫୁଟ ଉଚ୍ଚରେ ମନ୍ଦିର ଦେହରେ ରଖାଯାଇଥିଲା, ତାହା ମଧ୍ୟ ଅତି ଆଶ୍ଚର୍ଯ୍ୟର କଥା ।

ଏବର କଲକାରଖାନା ବିଜ୍ଞାନଯୁଗରେ ନବଗ୍ରହ ପାଟିଟି ପରି ପଥରଟିଏ ବୋହିନେବା ଅସାଧ୍ୟ ଥିବା ସ୍ଥଳେ ସେ କାଳରେ

ଯେତେବେଳେ କି ବିଜ୍ଞାନ ଏତେ ଅଗ୍ରସର ନ ଥିଲା, ଉତ୍କଳବାସୀ କି ଉପାୟରେ ଏହି ଶିଳାମାନ ବହୁଦୂରରୁ ବୋହିଆଣି ଏତେ ଉଚ୍ଚକୁ ଉଠାଇ ମନ୍ଦିରରେ ଲଗାଇଥିଲେ, ତାହା ମଧ୍ୟ କଳ୍ପନା କରି ହେଉନାହିଁ । ପୁଣି ପ୍ରତ୍ୟେକ ପ୍ରସ୍ତରଖଣ୍ଡରେ ବିଚିତ୍ର କାରୁକଳା ଓ ଶୃଙ୍ଗାରକଳା ପ୍ରସ୍ଫୁଟିତ । ମୂଳତଃ କୋଣାର୍କର ବିଶାଳ ଗାମ୍ଭୀର୍ଯ୍ୟ ଓ ବିଚିତ୍ର କଳାକୌଶଳ କଥାରେ କହି ହୁଏ ନାହିଁ । ଉତ୍କଳୀୟମାନଙ୍କର ଶିଳ୍ପର ଚରମ ପରାକାଷ୍ଠା କୋଣାର୍କରେ ଓ ଭୁବନେଶ୍ୱରର କେତେକ ମନ୍ଦିରରେ ଦ୍ରଷ୍ଟବ୍ୟ ।

ନାରୀ କବି ବିଦ୍ୟୁତ୍‌ପ୍ରଭାଙ୍କ ଭାଷାରେ—

"ମରିଛି କୋଣାର୍କଶିଳ୍ପୀ
ମରିନାହିଁ କାରୁ-କମନୀୟା,
କୋଟି ପଦ୍ମ ଫୁଟାଇଛି,
ଖଣ୍ଡ ଖଣ୍ଡ ଯା' ଅକର୍ମଶିଳା ।
ବିରାଟ ଭାସ୍କର୍ଯ୍ୟ ତୋର,
ଶିଳ୍ପୀ କବି-ଚିତ୍ତ-ବିନୋଦନ
ଚକିତ କରଇ ଯାହା,
ଜଗତର ବିମୁଗ୍‌ଧ ନୟନ ।
ନାହିଁ ଆଜ ଧର୍ମପଦ,
ନାହିଁ ରାଜା, ଶିବେଇ ସାମନ୍ତ
କଳାର ସୁନାମ ଖାଲି,
ଝାଣିନାଏ କୋଟି କୋଟି ପାନ୍ଥ ।
କୋଣାର୍କ ! ତୁ ମୋ ଦେଶର,
ମୋ ଜାତିର ଅମର ବିଭୂତି,
ଇତିହାସ ସ୍ୱର୍ଣ୍ଣାକ୍ଷରେ,
ଚିରଦୀପ୍ତ ତୋ ଉଜ୍ଜ୍ୱଳ ସ୍ମୃତି ।

———

# ପୃଥିବୀ ବିଖ୍ୟାତ ତାଜମହଲ

ପୃଥିବୀର ବିଖ୍ୟାତ ସାତୋଟି ଆଶ୍ଚର୍ଯ୍ୟ ମଧ୍ୟରେ ତାଜମହଲର ସ୍ଥାନ ଅଛି ।

ଏହି ତାଜମହଲ ଆଗ୍ରା ନଗରୀର ପୂର୍ବ ଦିଗରେ ଏବଂ ଯମୁନା ନଦୀକୂଳରେ ଅବସ୍ଥିତ । ବିଳାସ-ପ୍ରିୟ ମୋଗଲସମ୍ରାଟ୍ ସାହାଜାହାନ ତାଙ୍କର ପରଲୋକଗତା ସହଧର୍ମିଣୀ "ମମତାଜ"ଙ୍କ ସମାଧିକୁ ସ୍ଥାପତ୍ୟକଳା ଓ କାରୁକଳାର କଳ୍ପନା-ବିଳାସରେ ଅବିସ୍ମରଣୀୟ କରିଯାଇଛନ୍ତି । କୋଡ଼ିଏ ହଜାର ଲୋକ ପ୍ରାୟ ବାଇଶି ବର୍ଷକାଳ ଲାଗି ଏହାର ନିର୍ମାଣକାର୍ଯ୍ୟ ଶେଷ କରିଥିଲେ । ଏଥିରେ ଅନ୍ୟୂନ ସେ କାଳର ତିନିଶକୋଟି (ଆଜିକାଲିର ତିନିଶହ କୋଟି ମୁଦ୍ରାସଙ୍ଗେ ସମାନ) ମୁଦ୍ରାବ୍ୟୟରେ ଏହା ସମ୍ପାଦନ କରିଥିଲେ ।

ଏହି ତାଜମହଲର ନିର୍ମାଣପାଇଁ ସାହାଜାହାନ ଭାରତର ବିଶିଷ୍ଟ କାରିଗରମାନଙ୍କ ସହିତ ରୋମ, ଆରବ ଓ ପାରସ୍ୟପ୍ରଭୃତି ଦେଶରୁ ମଧ୍ୟ ଉତ୍କୃଷ୍ଟ ଶିଳ୍ପୀମାନଙ୍କୁ ଆଣାଇ ଏଥିରେ କାର୍ଯ୍ୟ କରାଇଥିଲେ । ଏହାର ସମୁଦାୟ ଅଂଶ ମାର୍ବଲ ପ୍ରସ୍ତରରେ ନିର୍ମିତ ।" ଆରବ, ଇଟାଲି ଓ ସିଲୋନପ୍ରଭୃତି ଦେଶରୁ ମୂଲ୍ୟବାନ୍ ରଙ୍ଗିନ୍ ପ୍ରସ୍ତର ଅଣାଯାଇ ଏଥିରେ ଲଗାଯାଇଅଛି । ତାଜମହଲର ଚତୁର୍ଦ୍ଦିଗରେ ରକ୍ତବର୍ଣ୍ଣ ପଥରରେ ତିଆରି ଏକ ବିରାଟ ପ୍ରାଚୀର ରହିଛି; ପ୍ରାଚୀରଟି ପୂର୍ବ ପଶ୍ଚିମରେ ୧୨୪୦ ହାତ ଦୀର୍ଘ ଓ ଉତ୍ତର ଦକ୍ଷିଣରେ ୬୬୭ ହାତ ପ୍ରସ୍ଥ । ପ୍ରାଚୀରର ତିନିଦିଗରେ ତିନୋଟି ତୋରଣ ଅଛି । ପ୍ରଧାନ ଏବଂ ସବୁଠାରୁ ଉଚ୍ଚ ତୋରଣବାଟେ ଭିତରକୁ ପ୍ରବେଶ କରିବାକୁ ହୁଏ । ପ୍ରଥମେ ମନୋମୁଗ୍ଧକର

ସୁଶୋଭିତ ଉଦ୍ୟାନ ପଡ଼େ । ଉଦ୍ୟାନର ଶେଷ ଭାଗରେ ଏକ ପ୍ରକାଣ୍ଡ ବେଦୀ ରହିଛି । ଏହି ପ୍ରାଚୀରର ଦୈର୍ଘ୍ୟ ୬୪୩ ହାତ ଓ ପ୍ରସ୍ଥ ୩୨୦ ହାତ ଏବଂ ଭୂତଳଠାରୁ ଉଚ୍ଚତା ୧୨ ହାତ। ସେହି ବାର ହାତ ଉଚ୍ଚତାକୁ ଯିବାପାଇଁ ପାହାଚମାନ ରହିଛି । ବେଦୀର ଚତୁଃକୋଣରେ ଚତୁଃଟି ଚନ୍ଦ୍ରଶାଳା ଅଛି । ସେହି ଚନ୍ଦ୍ରଶାଳା ଉପରକୁ ଯିବାପାଇଁ ଗୋଲାକାର ପାହାଚ ପଡ଼ିଛି । ଏହି ଚତୁଃଟି ଚନ୍ଦ୍ରଶାଳାର ଠିକ୍ ମଝିରେ ସେହି ବେଦୀ ଉପରେ ତାଜମହଲ ନିର୍ମିତ ।

ତାଜମହଲଭିତରକୁ ପ୍ରବେଶ କଲେ ପ୍ରସ୍ତର-ଗାତ୍ରରେ ଯେଉଁ ପତ୍ର, ପୁଷ୍ପ, ଇତ୍ୟାଦି ସୂକ୍ଷ୍ମାତିସୂକ୍ଷ୍ମରୂପେ ଖୋଦିତ ହୋଇ ପତ୍ରର ଶିରା, ଫୁଲର କେଶରପ୍ରଭୃତି ଦୃଷ୍ଟିଗୋଚର ହୁଏ, ତାହା ବାସ୍ତବିକ କଳ୍ପନାତୀତ ଏବଂ ପ୍ରକୃତ ଫଳ, ଫୁଲ, ଲତାର ଭ୍ରମ ସୃଷ୍ଟି କରେ, ଓ ପ୍ରତ୍ୟେକଟି ପଥର ଏପରିଭାବେ ଖଞ୍ଜାଯାଇଛି ଯେ ତାହା ଯେପରି ଜଣାଯାଏ ସମସ୍ତ ତାଜମହଲଟି ଗୋଟିଏ ପଥରରେ ଗଢ଼ା । ସାହାଜାହାନଙ୍କର କବର-ଚତୁର୍ଦ୍ଦିଗସ୍ଥ ପ୍ରସ୍ତର-ପ୍ରାଚୀରର ଶୀର୍ଷଦେଶରେ ଯେଉଁ ଗୋଲାପଫୁଲସବୁ ଫୁଟାଯାଇଛି, ତାହା ପଞ୍ଚତ୍ରିଂଶ ରକମର ବିଭିନ୍ନ ରଙ୍ଗର ସ୍ୱଚ୍ଛ ପାଷାଣର ସମଷ୍ଟିମାତ୍ର । ଏହାକୁ ଦୂରରୁ ଦେଖିଲେ ସଦ୍ୟ ପ୍ରସ୍ଫୁଟିତ ଗୋଲାପ ଗୁଳ୍ମ ପ୍ରତୀୟମାନ ହୁଏ । ପୃଥିବୀର ବିଭିନ୍ନ ଦେଶରୁ ବହୁଦର୍ଶକ ଏହାର ଦର୍ଶନପାଇଁ ପ୍ରତିଦିନ ଏଠାକୁ ଆସିଥାନ୍ତି । କବିଭାଷାରେ ତାଜମହଲ ସାହାଜାହାନଙ୍କର "ପ୍ରସ୍ତରୀଭୂତ ପ୍ରେମାଶ୍ରୁ" । ବିଶ୍ୱକବି ରବୀନ୍ଦ୍ରନାଥଙ୍କ ଭାଷାରେ:—

"କାଲେର କପୋଲ ତଲେ ଶୁଭ୍ର ସମୁଜ୍ଜ୍ୱଲ
ଏକ ବିନ୍ଦୁ ଅଶ୍ରୁଜଲ
ଏ ତାଜ୍‌ମହଲ ।"

# ବୃନ୍ଦାବନ

"ଏହା ଯମୁନାନଦୀକୂଳରେ ଓ ମଥୁରାଠାରୁ ଅଳ୍ପ ଦୂରବର୍ତ୍ତୀ କ୍ଷୁଦ୍ର ନଗର । ବୃନ୍ଦାଦେବୀ ଏଠାରେ ଶ୍ରୀକୃଷ୍ଣଙ୍କୁ ପାଇବା ଆଶାରେ ତପସ୍ୟା କରିଥିଲେ ବୋଲି ଏହାର ନାମ ବୃନ୍ଦାବନ ହୋଇଅଛି । ଅଥବା ବୃନ୍ଦା (ରାଧା) ଏଠାରେ ଶ୍ରୀକୃଷ୍ଣଙ୍କ ସଙ୍ଗେ କ୍ରୀଡ଼ା କରିଥିଲେ । ବର୍ତ୍ତମାନ ଯୁକ୍ତପ୍ରଦେଶ ମଥୁରା ଜିଲାର ଏହା ଗୋଟିଏ ନଗର ଅଟେ । ଏହି ସ୍ଥାନର କୁଞ୍ଜବନମାନଙ୍କରେ ଓ ଯମୁନା କୂଳରେ ଶ୍ରୀକୃଷ୍ଣ ଗୋପୀମାନଙ୍କ ସହିତ ନାନାକ୍ରୀଡ଼ା କରିଥିଲେ । ବର୍ତ୍ତମାନ ଏଠାରେ ଅନେକ ବୈଷ୍ଣବ ଓ ବୈଷ୍ଣବୀ ତୀର୍ଥବାସ କରନ୍ତି । ଏଠାରେ ଅନେକ ବିଷ୍ଣୁମନ୍ଦିର ଅଛି ।

ମହମ୍ମଦ ଗଜନୀ ଏହି ସ୍ଥାନକୁ ଆକ୍ରମଣ କରି ଏ ସ୍ଥାନକୁ ନଷ୍ଟ ଭ୍ରଷ୍ଟ କରିଥିଲେ ଓ ଏଥିର ପ୍ରାଚୀନ କୀର୍ତ୍ତିଚିହ୍ନ ଓ ଶ୍ରୀକୃଷ୍ଣଙ୍କ ବିହାର ସ୍ଥଳମାନଙ୍କର ଚିହ୍ନ ମଧ୍ୟ ଲୁପ୍ତ ହୋଇଥିଲା । ଏ ସ୍ଥାନର ମାହାତ୍ମ୍ୟ କ୍ରମଶଃ ଲୁପ୍ତ ହୋଇଥିଲା । ଶ୍ରୀ ଚୈତନ୍ୟଦେବ ଏ ଅଞ୍ଚଳକୁ ଆସି ପ୍ରାଚୀନ ବୃନ୍ଦାବନର ସ୍ଥାନ ନିରୂପଣ କରି ଏ ତୀର୍ଥର ମାହାତ୍ମ୍ୟକୁ ପୁନଃ ପ୍ରତିଷ୍ଠିତ କରି ଏହାର ପୂର୍ବ ଗୌରବକୁ ଉଦ୍ଧାର କରିଥିଲେ । ଏଠାର ପ୍ରଧାନ ଦେବବିଗ୍ରହ ଗୋବିନ୍ଦଜୀଙ୍କ ମନ୍ଦିର ପୂର୍ବେ ସାତତଳ-ବିଶିଷ୍ଟ ଥିଲା; କିନ୍ତୁ ମୋଗଲ୍-ବାଦସାହାଙ୍କ ଅମଳରେ ଏହାର ଉପର ମହଲା ଭଙ୍ଗାହୋଇ ବର୍ତ୍ତମାନ ଦ୍ୱିତଳ ମନ୍ଦିର ରହିଅଛି । ଏଠାରେ ଶ୍ରୀରଙ୍ଗମନ୍ଦିର ଓ ସାହାଜୀ ମନ୍ଦିର; ଶ୍ରୀରଙ୍ଗମନ୍ଦିରର ଉଦ୍ୟାନ ଓ ଅନେକ କୁଞ୍ଜ ଦର୍ଶନୀୟ । ବୃନ୍ଦାବନରେ ଗୋପୀମାନଙ୍କ ପୂଜିତ ଗୋପେଶ୍ୱର ଓ କାତ୍ୟାୟନୀଙ୍କ ମନ୍ଦିର ଅଛି । ଭାରତର ଅନେକ ଧନୀ ଏଠାରେ ମନ୍ଦିର, ଧର୍ମଶାଳା

ଓ ସଦାବ୍ରତମାନ ସ୍ଥାପନ କରିଅଛନ୍ତି । ଯମୁନାନଦୀ ବୃନ୍ଦାବନ ନଗରରୁ କ୍ରମଶଃ ଦୂରକୁ ଦୁଞ୍ଚି ଯାଉଅଛି । କେଶୀଘାଟଠାରେ ପ୍ରତିଦିନ ଯମୁନାନଦୀକୁ ଆରତି କରାଯାଏ । ଶ୍ରୀକୃଷ୍ଣଙ୍କ କ୍ରୀଡ଼ୋଦ୍ୟାନମାନଙ୍କ ସ୍ଥାନ ଯାତ୍ରୀମାନଙ୍କୁ ପଣ୍ଡାମାନେ ଦେଖାନ୍ତି । ଦୋଳ ଓ ଝୁଲଣଯାତ୍ରା ଏଠାରେ ମହାସମାରୋହରେ ସମ୍ପାଦିତ ହୁଏ । ଏଠାରେ ଅନେକ ମୟୂର ଦେଖାଯାନ୍ତି ।”

—ପ୍ରହରାଜ-ଭାଷାକୋଷ—

---

# ହରିଦ୍ୱାର

ବୈଷ୍ଣବମାନେ ଏହାକୁ 'ହରିଦ୍ୱାର' ଓ ଶୈବମାନେ 'ହରଦ୍ୱାର' କହନ୍ତି । ଯେଉଁଠାରେ ବିଷ୍ଣୁ ଚରଣଚିହ୍ନ ଅବସ୍ଥିତ, ତାହାକୁ ହିନ୍ଦୁସ୍ଥାନୀମାନେ 'ହରି ବା ଚରଣଦ୍ୱାର' ବୋଲି କହିଥାଆନ୍ତି ।

କପିଳମୁନି ଏଠାରେ କଠୋର ତପସ୍ୟା ସାଧନ କରିଥିଲେ ବୋଲି ଏହାକୁ 'କପିଳ ସ୍ଥାନ' ମଧ୍ୟ କହନ୍ତି ।

ହରିଦ୍ୱାରର ଷ୍ଟେସନଠାରୁ ପ୍ରାୟ ଏକ ମାଇଲ ଗଲା ପରେ ହରିଦ୍ୱାରର ତୀର୍ଥସ୍ଥାନ ଦେଖାଯାଏ । ଏଠାକୁ ଯିବାକୁ ଅଶ୍ୱଯାନ, ଗୋ-ଯାନ ଓ ରିକ୍ସା ମିଳେ ।

ହରିଦ୍ୱାର ଗଙ୍ଗାନଦୀକୂଳରେ ଅବସ୍ଥିତ । ହରିଦ୍ୱାରର ଦୁଇ ପାଖରେ ପର୍ବତଶ୍ରେଣୀ ମଧ୍ୟରେ ଗଙ୍ଗା କି ଧାରବିଶିଷ୍ଟା ହୋଇ ପ୍ରବାହିତା । ପାର୍ଶ୍ୱସ୍ଥ ପର୍ବତରେ ଅନେକ ଗୁହା ଅଛି । ସାଧୁ ସନ୍ନ୍ୟାସୀମାନେ ଏହି ଗୁମ୍ଫାମାନଙ୍କରେ ରହନ୍ତି । ଏଠାରେ ଅନେକ ମଠ ଅଛି ।

ହରିଦ୍ୱାରରେ ଉପସ୍ଥିତ ହେଲେ ମନରେ ବଡ଼ ପବିତ୍ରଭାବ ଜାଗ୍ରତ ହୁଏ । ବ୍ରହ୍ମକୁଣ୍ଡ ବା ଗଙ୍ଗାଦ୍ୱାରଘାଟ ହିଁ ହରଚରଣଘାଟ ବୋଲି ପରିଚିତ । ଏହା ଛଡ଼ା କୁଶାବର୍ତ୍ତଘାଟ, ନୀଳଘାଟ ଶ୍ରେଷ୍ଠ ତୀର୍ଥ ଓ ରମଣୀୟ ସ୍ଥାନ । ବ୍ରହ୍ମକୁଣ୍ଡଠାରେ ଗିରିରାଜ-ନନ୍ଦିନୀ ପ୍ରଥମେ ଧରାବତୀର୍ଣ୍ଣା ହୋଇଥିଲେ । ଏହିଠାରେ ମାୟାପୁରୀ ମନ୍ଦିର ମଧ୍ୟରେ ବିଷ୍ଣୁପଦ ଓ ବିଷ୍ଣୁପଦୀଙ୍କର ଦିବ୍ୟମୂର୍ତ୍ତି ବିରାଜିତ । ଏହି ଘାଟରେ ପ୍ରତ୍ୟହ ସହସ୍ର ସହସ୍ର ଧର୍ମପ୍ରାଣ ହିନ୍ଦୁ ପାପନାଶିନୀ ଗଙ୍ଗାର ତୁଷାରଧବଳ ପ୍ରପାତରେ ସ୍ନାନ କରୁଅଛନ୍ତି । ଏହିଠାରେ ବାରବର୍ଷରେ ଥରେ କୁମ୍ଭମେଳା ପଡ଼ିଲେ ଅନ୍ତତଃ ପାଞ୍ଚ ଛଅ ଲକ୍ଷ ଯାତ୍ରୀ ସମବେତ ହୁଅନ୍ତି ।

ହରିଦ୍ୱାରଘାଟରେ ସ୍ନାନ କରିସାରି କୁଶାବର୍ତ୍ତ ବା ଯୋଗା-ବର୍ତ୍ତଘାଟକୁ ଯିବାକୁ ହୁଏ । ଏଠାରେ ତର୍ପଣ ଓ ପିଣ୍ଡଦାନ କଲେ ପିତୃଲୋକ ବିଷ୍ଣୁଲୋକ ପ୍ରାପ୍ତ ହୁଅନ୍ତି ବୋଲି ହିନ୍ଦୁଙ୍କର ଦୃଢ଼ ଧାରଣା ।

ବହୁସଂଖ୍ୟକ ମନ୍ଦିର ମଧ୍ୟରେ ନାରାୟଣ ମନ୍ଦିର, ମାୟାଦେବୀ ମନ୍ଦିର, ବିଲ୍ୱକେଶ୍ୱର ମନ୍ଦିର, ଦକ୍ଷେଶ୍ୱର ମନ୍ଦିର ଓ ସତୀକୁଣ୍ଡ, ସର୍ବନାଥ ମନ୍ଦିର ପ୍ରଧାନ ଓ ଦ୍ରଷ୍ଟବ୍ୟ ସ୍ଥାନ । ଏହିସବୁ ହରିଦ୍ୱାରର ପ୍ରସିଦ୍ଧ ତୀର୍ଥ ।

ହରିଦ୍ୱାରର ଭିନ୍ନ ଭିନ୍ନ ମନ୍ଦିରରେ ସାନ୍ଧ୍ୟ ଆରତିକ ଓ ତତ୍‌ସଂପୃକ୍ତ ବାଦ୍ୟ, ଘଣ୍ଟାଧ୍ୱନିପ୍ରଭୃତି, ଗଙ୍ଗାକୂଳରେ ଯାତ୍ରୀ-ମାନଙ୍କର ସ୍ତୁତିପାଠ, ସ୍ଥାନେ ସ୍ଥାନେ ରାମାୟଣ ପଠନ ଓ ସାଧୁ ସନ୍ନ୍ୟାସୀମାନଙ୍କର ଭଜନପ୍ରଭୃତି ଦର୍ଶନ ଓ ଶ୍ରବଣ କଲେ ଯେ କୌଣସି ଲୋକଙ୍କର ମନ ବିସ୍ମୟ ଓ ଆନନ୍ଦସାଗରରେ ନିମଗ୍ନ ହୋଇଯାଏ ।

———

# ବଦ୍ରୀକାଶ୍ରମ

"ବଦ୍ରିକାଶ୍ରମ ହିମାଳୟ କ୍ରୋଡ଼ରେ ଅଳକାନନ୍ଦା ନଦୀର ପଶ୍ଚିମତୀରବର୍ତ୍ତୀ ପ୍ରସିଦ୍ଧ ହିନ୍ଦୁତୀର୍ଥ । ଏହା ପୂର୍ବେ ଗୋଟିଏ ତପସ୍ୟା-କ୍ଷେତ୍ର ଥିଲା । ଏହିଠାରେ ଋଷିମାନେ ପୁରାଣମାନ ପ୍ରକଟନ କରୁଥିଲେ । ଏହା ବ୍ୟାସଦେବଙ୍କ ଆଶ୍ରମସ୍ଥଳ ବୋଲି ବିଖ୍ୟାତ । ଏହା ହିଁ ଭାରତର ପ୍ରଧାନ ତୀର୍ଥ ବଦ୍ରିକା ଓ ଏହା ଭାରତ-ପ୍ରସିଦ୍ଧ ଚାରିଗୋଟି ହିନ୍ଦୁଧାମମଧ୍ୟରୁ ଗୋଟିଏ । ଏଠାର ଦେବତା ବଦ୍ରୀନାଥ । ଏହା ବର୍ଷ ମଧ୍ୟରେ ଛଅମାସ ବରଫରେ ଆବୃତ ଓ ଅଗମ୍ୟ ହୁଏ । ମହାଭାରତରେ ଲେଖା ଅଛି ଯେ, ଏହିଠାରେ ଗଙ୍ଗାନଦୀର ଉଷ୍ଣ ଓ ଶୀତଳ ଦୁଇଟି ଧାରା ଥିଲା ଓ ଏହାର ବାଲି ସୁନା ଥିଲା ; ଦେବତାମାନେ ଏହିଠାରେ ତପସ୍ୟା କରି ବିଷ୍ଣୁଙ୍କୁ ପାଇଥିଲେ । ଗନ୍ଧମାର୍ଦ୍ଦନ, ବଦରୀ, ନରନାରାୟଣ ଓ କୁବେର-ଶୃଙ୍ଗମାନ ଏହି ତୀର୍ଥର ଅନ୍ତର୍ଗତ । ନରନାରାୟଣ ଋଷି ଏହିଠାରେ ତପସ୍ୟା କରିଥିଲେ । ପାଣ୍ଡବମାନେ ମହାପ୍ରସ୍ଥାନ କାଳରେ ଏହିଠାକୁ ଯାଇଥିଲେ । ବୈଷ୍ଣବମାନଙ୍କର ସବୁ ତୀର୍ଥମଧ୍ୟରେ ଏହା ଶ୍ରେଷ୍ଠ ଥିବାର ବିଷ୍ଣୁପୁରାଣରେ ଲେଖାଅଛି ।"

—ପ୍ରହରାଜ-ଭାଷାକୋଷ—

———

# ନୈମିଷାରଣ୍ୟରେ ଆଦର୍ଶ ବାନପ୍ରସ୍ଥାଶ୍ରମ

ଓଡ଼ିଶାରୁ ଉତ୍ତର-ଭାରତକୁ ଅଧିକାଂଶ ତୀର୍ଥଯାତ୍ରୀ ଓ ଭ୍ରମଣକାରୀ ରେଳରାସ୍ତା କଡ଼ରେ ପଡ଼ୁଥିବା ପ୍ରଧାନ ପ୍ରଧାନ ସ୍ଥାନଗୁଡ଼ିକୁ ଦେଖିଯାଆନ୍ତି; ରାସ୍ତାର କିଛି ଦୂର ଅନ୍ତର୍ଦେଶରେ ଯେ ଅନେକ ଦର୍ଶନୀୟ, ପବିତ୍ର ସ୍ଥାନ ରହିଛି, ତାହା ସେମାନେ ଜାଣନ୍ତି ନାହିଁ । ଲକ୍ଷ୍ନୌଠାରୁ ପ୍ରାୟ ଷାଠିଏ ମାଇଲ ଉତ୍ତରରେ ଥିବା (ରେଳ ଓ ସଡ଼କ ପଥଦ୍ୱାରା ସଂଯୁକ୍ତ) ନୈମିଷାରଣ୍ୟ ଇତିହାସପ୍ରସିଦ୍ଧ ସ୍ଥାନ ଅଟେ । ଏହି ସ୍ଥାନରେ ବ୍ୟାସଦେବ ଦେବଭାଷ୍ୟ, ବେଦାନ୍ତଦର୍ଶନ, ମହାଭାରତାଦି ରଚନା କରିଥିଲେ । ନୈମିଷାରଣ୍ୟରେ ମହର୍ଷି ମନୁ, ଦଧୀଚି ପାଣ୍ଡବ, ଶୌନକ ଶୁକଦେବ, ସୂତପ୍ରଭୃତିଙ୍କର ଇତିହାସଜଡ଼ିତ ବହୁ ସ୍ମାରକ ରହିଛି ।

ଏହି ତପୋଭୂମିର ଏକ ବିସ୍ତୃତ ଅଞ୍ଚଳରେ ଉତ୍ତର ପ୍ରଦେଶର ପ୍ରସିଦ୍ଧ ସନ୍ନ୍ୟାସୀ ସ୍ୱାମୀ ନାରଦାନନ୍ଦ ସରସ୍ୱତୀଙ୍କ ପ୍ରତିଷ୍ଠିତ ଗୋମତୀ ନଦୀକୂଳସ୍ଥ 'ଅଧ୍ୟାତ୍ମ ବିଦ୍ୟାପୀଠ' ଅତ୍ୟନ୍ତ ରମଣୀୟ ଓ ଆଦର୍ଶସ୍ଥାନ ଅଟେ । ଗୋମତୀର ସ୍ୱଚ୍ଛ ଜଳପ୍ରବାହ, ଆମ୍ର ଉପବନ, ପଲାଶବନ, କୁଶାଚ୍ଛାଦିତ ଭୂମି, ଶୁକସାରିସାଦିଙ୍କ ଧ୍ୱନିରେ ଏହି ସ୍ଥଳ ଅତ୍ୟନ୍ତ ମନୋହର ଓ ପବିତ୍ର ହୋଇଛି । ତପୋବନରେ ରହୁଥିବା ଶତାଧିକ ବାନପ୍ରସ୍ଥୀ ଏ ଆଶ୍ରମର ସମସ୍ତ ବ୍ୟବସ୍ଥା ସ୍ୱାବଲମ୍ବୀଭାବରେ ସମ୍ପାଦନ କରନ୍ତି । ଅବସରପ୍ରାପ୍ତ ବିବିଧ ପ୍ରକାରର କର୍ମଚାରୀ, ବ୍ୟବସାୟୀ, କୃଷକ, ସ୍ତ୍ରୀ-ପୁରୁଷ ବାନପ୍ରସ୍ଥୀରୂପରେ ଏଠାରେ କାର୍ଯ୍ୟ କରନ୍ତି । କେତେକ ନିଜ ପେନ୍‌ସନ ବା ପୁତ୍ରାଦିଙ୍କଠାରୁ ମାସିକ କିଛି ପାଆନ୍ତି, ଅନେକେ

ନାଃଶ୍ରୀଲଙ୍କୁ ବୁଝନ୍ତି । ପ୍ରତ୍ୟେକେ ନିଜ ଗୁଣ ଓ ଶକ୍ତି ମତେ ଆଶ୍ରମ କାର୍ଯ୍ୟ କରନ୍ତି । ପୂର୍ବେ ଯେଉଁମାନେ ଗୃହସ୍ଥାଶ୍ରମରେ ଶିକ୍ଷକ ଥିଲେ, ସେମାନେ ଏଠାରେ ବ୍ରହ୍ମଚାରୀଙ୍କ ପାଠଶାଳା ପରିଚାଳନା କରନ୍ତି । ଡାକ୍ତର ଥିବା ଲୋକେ ଆଶ୍ରମବାସୀଙ୍କ ସ୍ୱାସ୍ଥ୍ୟବିଷୟରେ ବୁଝନ୍ତି । ଇଞ୍ଜିନିୟର ଥିବା ଲୋକେ ଆଶ୍ରମ ନିର୍ମାଣର ତତ୍ତ୍ୱାବଧାନ କରନ୍ତି । ଅନ୍ୟାନ୍ୟ ଲୋକେ ଆଶ୍ରମର କାର୍ଯ୍ୟାଳୟ, ଯନ୍ତ୍ରପାତି, ରୋଷାଇଘର ଇତ୍ୟାଦି ବିଷୟ ବୁଝନ୍ତି । ଯୋଗ୍ୟ ବାନପ୍ରସ୍ଥୀମାନେ ଆଶ୍ରମ ଅଧୀନରେ ବିଭିନ୍ନ ସ୍ଥଳରେ ଥିବା ପ୍ରାୟ ଏକଶତ ଆଶ୍ରମର ପରିଚାଳନା ମଧ୍ୟ କରନ୍ତି ।

ଶ୍ରଦ୍ଧାଳୁ ଅବସରପ୍ରାପ୍ତ ଓଡ଼ିଶାବାସୀ ଉକ୍ତ ଆଶ୍ରମର ବାନପ୍ରସ୍ଥ ଜୀବନଯାପନପାଇଁ ଅଧ୍ୟାତ୍ମ୍ୟ ସାଧନାପୀଠ ନୈମିଷାରଣ୍ୟ, ସୀତାପୁର, ଉତ୍ତରପ୍ରଦେଶ ଠିକଣାରେ ପତ୍ରାଳାପ କରିପାରନ୍ତି । ଗୋଟିଏ ଦିନ ମାତ୍ର ଏଠାରେ ରହି ବେଦୋପଦେଶ ଶୁଣି ଓ ଶୁଣାଇ ମୁଁ ଓ ମୋର ପତ୍ନୀ ଶ୍ରୀମତୀ ଶଶୋଦେବୀ ଅତ୍ୟନ୍ତ କୃତାର୍ଥ ହେଲୁ ।

ପ୍ରିୟବ୍ରତ ଦାସ
ଏକ୍‌ଜିକ୍ୟୁଟିଭ ଇଞ୍ଜିନିୟର
ନୈମିଷାରଣ୍ୟ
ତା ୯ । ୩ । ୭୭

# ହିମାଳୟ ଆକର୍ଷଣ

କବିଶ୍ରୀ ନାରାୟଣ ବୀରବର ସାମନ୍ତଙ୍କ ଭାଷାରେ

"ପୃଥିବୀପୃଷ୍ଠରେ ଥିବା ବିସ୍ମୟକର ବସ୍ତୁମାନଙ୍କ ମଧ୍ୟରେ ହିମାଳୟ ପର୍ବତ ଅନ୍ୟତମ ନୁହେଁ, ଶ୍ରେଷ୍ଠତମ । ଭାରତବର୍ଷର ଲଲାଟସ୍ଥିତ ବୈଦୁର୍ଯ୍ୟମଣିନଦୀ ସମୁଜ୍ଜ୍ୱଳ ହିମାଳୟର ଅଭ୍ରଂକଷ ତତ୍ତୁଙ୍ଗ ପର୍ବତମାଳା ସୌନ୍ଦର୍ଯ୍ୟର ଅମରାବତୀ କହିଲେ ଯଥେଷ୍ଟ ହେବ ନାହିଁ; ମୁଗ୍‌ଧନେତ୍ର ବିସ୍ମୟ-ବିହ୍ୱଳ ହୋଇ ଏହି ରୁଦ୍ର ସୁନ୍ଦର ମୂର୍ତ୍ତିରୁ ଅନୁପ୍ରାଣିତ ହୁଏ ଏକ ମହାନ୍ ବିରାଟତ୍ୱ ଦିଗରେ । ତୁଷାରମୌଳୀ ଶୃଙ୍ଗଶ୍ରେଣୀ, ହୃତ୍‌କମ୍ପନକାରୀ ଗଭୀର ଗହ୍ୱରରାଜି, ଭୟ-ଭୀଷଣ ଅରଣ୍ୟାନୀ, ବନ୍ୟପାର୍ବତ୍ୟ ନଦୀମାନଙ୍କର ଜନୁତ୍ତରଣରାଗ, ମୃଗ ମୟୂରମାନଙ୍କ ଗମନାଗମନ, ପକ୍ଷୀ ପ୍ରଜାପତିମାନଙ୍କ ବିଶ୍ରମ୍ଭାଳାପ, ଦିଗ୍‌ଦିଗନ୍ତବ୍ୟାପୀ ନିଃଝୁମ ପାର୍ବତ୍ୟ ପ୍ରକୃତି ସତେ ଯେପରି ସମାଧିସ୍ଥ ହୋଇ ରହିଛି । ସହସ୍ର କ୍ରୋଶବ୍ୟାପୀ ଅନନ୍ତ ସୌନ୍ଦର୍ଯ୍ୟଖଣି ଶତ ସହସ୍ର ଉପତ୍ୟକା ଓ ଅଧିତ୍ୟକାମଣ୍ଡିତ ହିମାଳୟ ପର୍ବତମାଳା ମଧ୍ୟରେ ସର୍ବାପେକ୍ଷା ଅଧିକ ଘନସନ୍ନିବିଷ୍ଟ-ତୁଷାରଚୂଡ଼ା କୁମାୟୁନ ଅଞ୍ଚଳ ସମସ୍ତ ଗୌରବ-ଗରିମାରେ ଗରୀୟାନ୍, ସୌନ୍ଦର୍ଯ୍ୟ ଶ୍ରୀରେ ବିକଶିତ ଓ ହିନ୍ଦୁତୀର୍ଥରାଜିରେ ସଙ୍କୁଳ । ଏହି ସର୍ବଶୋଭାମୟ ସ୍ଥଳୀକୁ ହିନ୍ଦୁଶାସ୍ତ୍ର-ପୁରାଣବର୍ଣ୍ଣିତ କିନ୍ନରଦେଶ କୁହାଯାଏ । ଏଠାରେ ପ୍ରତ୍ୟେକଟି ପର୍ବତ ଗୋଟିଏ ଗୋଟିଏ ଦେବତା । ପ୍ରତି ଜଳଧାରା ଗୋଟିଏ ଗୋଟିଏ ଗଙ୍ଗା । ପ୍ରତି ପ୍ରସ୍ତରଖଣ୍ଡ ଗୋଟିଏ ଗୋଟିଏ ବିଗ୍ରହ ଏବଂ ପ୍ରତ୍ୟେକ ଗୁହା ଗୋଟିଏ ଗୋଟିଏ ମନ୍ଦିର ପରି ବିରାଜିତ । ହିମାଳୟ ଆଶ୍ରିତ ସମସ୍ତ ମହାତ୍ମା, ସାଧୁ, ସନ୍ନ୍ୟାସୀ, ବୈରାଗୀ, ଭକ୍ତ, ସେବକମାନଙ୍କ-ଦ୍ୱାରା ଏହି କୁମାୟୁନ ପରିପୂର୍ଣ୍ଣ । ପ୍ରତ୍ୟେକଟି ତୁଷାରି ଉପତ୍ୟକା-

କୋଳରେ ସାଧୁ-ଆଶ୍ରମ, ସନ୍ନ୍ୟାସୀ-ତପୋବନ, ବୈରାଗୀ-କୁଟୀର କମ୍ବା ମୌନୀଙ୍କ ଗୁହା ଅବସ୍ଥିତ ରହିଛି । ଦାର୍ଶନିକ, ପଣ୍ଡିତ, ତତ୍ତ୍ୱଜିଜ୍ଞାସୁ, ଯୋଗୀ, ନାଗା, ଭିକ୍ଷୁକ, ସତ୍ୟାନ୍ୱେଷୀ, ସର୍ବତ୍ୟାଗୀ, ନୈରାଶ୍ୟବାଦୀ, ବ୍ୟର୍ଥ-ପ୍ରଣୟୀ, ସନ୍ତାନ-ଶୋକାତୁର, ତୀର୍ଥବାସୀ, ପୁଣ୍ୟକାମୀ, ମୃତ୍ୟୁକାମୀ କାହା ପଦାଙ୍କରେ କୁମାୟୁନ ଲାଞ୍ଛିତ ନୁହେଁ ? କାମନାରେ, ବାସନାରେ, ବେଦନାରେ, ପିପାସାରେ ଜର୍ଜର ହୋଇ, ସନ୍ତପ୍ତ ହୋଇ ଭାରତର ଶ୍ରେଷ୍ଠତମ ତୀର୍ଥଲୋକ ଏହି କୁମାୟୁନକୁ ଆସିଲେ ସାଂସାରିକ ସମସ୍ତ ଦହନ ସମସ୍ତ ଜ୍ୱାଳା ଉପରେ ଏକ ଅନିର୍ବଚନୀୟ ଶାନ୍ତିପ୍ରଲେପ ବୋଳା ହୋଇଯାଏ । ଏଠାକାର ସ୍ୱଚ୍ଛ ନୀଳ ଜଳବେଣୀରେ ଦୁରାରୋଗ୍ୟ ବ୍ୟାଧିର ଆରୋଗ୍ୟକାରୀ ଶକ୍ତି, ପୁଷ୍ପଶଯ୍ୟାରେ ଦେବସୌରଭ, ଭୂମିରେ ଚନ୍ଦନ କସ୍ତୁରୀ ଗନ୍ଧ, ଲତାପତ୍ରରେ ବୀଜମନ୍ତ୍ରର ମର୍ମର ଧ୍ୱନି, ମନ୍ଦିରମାନଙ୍କରେ ବେଦମନ୍ତ୍ରର ଉଦ୍ଦାତ୍ତ ଓଁକାର ଇତ୍ୟାଦିର ସଚରାଚର ସନ୍ଧାନ ମିଳେ । ପ୍ରତ୍ୟେକଟି ତୁଷାର ଶିଖରରେ ଦେବସିଂହାସନ ଉନ୍ନତ ଓ ପ୍ରତି ବାଙ୍କରେ ଦେବବନ୍ଦନା ଝଂକୃତ, ଗିରିନଦୀର କଳତାନରେ ଗଙ୍ଗାଙ୍କ ସ୍ତବ ମୁଖରିତ, ପ୍ରତିପକ୍ଷୀକଣ୍ଠରେ ଦେବମନ୍ତ୍ର ଗୁଞ୍ଜିତ । କେତେବେଳେ ଦୁଗ୍ଧଧବଳ, କେତେବେଳେ ଗୈରିକ, କେତେ-ବେଳେ ସ୍ୱର୍ଣ୍ଣାଭ, କେତେବେଳେ ପୀତନୀଳାଭ ଓ କେତେବେଳେ ମେଘମୟ ହୋଇ ରୂପ, ବର୍ଣ୍ଣ, ସୌନ୍ଦର୍ଯ୍ୟମହିମାରେ ହିମାଳୟର ଏହି ଅଂଶଟିକୁ ନିତ୍ୟ ଅନୁପ୍ରାଣିତ କରି ରଖିଛି । ବସ୍ତୁତଃ କୁମାୟୁନ ପରି ଦିଗ୍‌ବଳୟ ପ୍ରସାରିତ ହିମାଳୟର ଅପାର ସୌନ୍ଦର୍ଯ୍ୟ ଅନ୍ୟ କୁତ୍ରାପି ନୟନପଥାରୂଢ଼ ହୋଇ ନ ପାରେ । ଏହି ଅଖଣ୍ଡ, ଅନନ୍ତ, ଅନାଦି ନିସ୍ତବ୍ଧତା ମଧ୍ୟରେ ଯେଉଁ ପରମର ଆହ୍ୱାନ, ଆଧ୍ୟାତ୍ମି-କତାର ସ୍ୱାଗତିକା ମନ୍ତ୍ର ନିତ୍ୟନନ୍ଦିତ ହୋଇ ରହିଛି, ତାହା

ସାରାପୃଥିବୀର ପ୍ରକୃତି-ସୌନ୍ଦର୍ଯ୍ୟପିପାସୁ ଦେବାତ୍ମାମାନେ କାନଡେର ଶୁଣୁଛନ୍ତି ଏବଂ ସୁଯୋଗ ପାଇବା ମାତ୍ରେ ହିମାଳୟର ପୁଣ୍ୟପରଶ ଲଭପାଇଁ ଧାଇଁ ଆସୁଛନ୍ତି ।

ଏହିପରି ଭାରତବର୍ଷର ଧମନୀ କେନ୍ଦ୍ର ଏହି ହିମାଳୟ, ଯେଉଁ ହିମାଳୟ ତପସ୍ୱୀମାନଙ୍କୁ ଯୁଗଯୁଗ ଆକୃଷ୍ଟ କରିପାରିଛି, ସେ ଯେ ରାଜ୍ୟଲିପ୍ସୁ, ବନିଲିପ୍ସୁମାନଙ୍କୁ ଲୋଭାକୃଷ୍ଟ ନ କରିବ ଏହା କିଏ କହିବ ?"

## ଭକ୍ତକବି ମଧୁସୂଦନଙ୍କ ଭାଷାରେ

"ଯେଉଁ ନଗାଧିରାଜ ହିମାଳୟର ବିଚିତ୍ରାଦ୍ଭୁତ ମହିମା ବର୍ଣ୍ଣନ କରିବାକୁ ଯାଇ ବ୍ୟାସ, ବାଲ୍ମୀକି, କାଳିଦାସପ୍ରଭୃତି ମହାକବି-ମାନଙ୍କର କଳ୍ପନା, ଧାରଣା ଓ ପ୍ରକାଶଶକ୍ତି ପରାଜୟ ସ୍ୱୀକାର କରିଅଛି, ତାହାର ଦିଗ୍‌ଦିଗନ୍ତବ୍ୟାପୀ ମହାଗମ୍ଭୀର ମହାବିରାଟ ମହାବିସ୍ମୟକର ଦୃଶ୍ୟରାଜିର ଦର୍ଶନରେ କାହାର ମନ ସ୍ତବ୍ଧ ହେବ ନାହିଁ ? ପ୍ରକାଣ୍ଡ ହିମାଦ୍ରି ପ୍ରଦେଶ ଦିଗ୍‌ଦିଗନ୍ତର-ପ୍ରସାରିତ ମହାସମୁଦ୍ର ସଦୃଶ । ସେଥିରେ ଗଗନଭେଦୀ ଗୌରୀଶଙ୍କରାଦି ମହୋଚ୍ଚ ତୁଷାରକିରୀଟୀ, ଶତ ଶତ ଧବଳ ଗିରିଶିଖରମାଳା ସମୁଦ୍ର ବକ୍ଷରେ ନିପୃତ ପ୍ରକାଶିତ ତୁଙ୍ଗ ଲହରୀମାଳା ପରି ଶାଶ୍ୱତ ମହିମାରେ ବିରାଜିତ । ହିମାଦ୍ରି ବକ୍ଷରୁ ପଞ୍ଚନଦୀସମନ୍ୱିତ ସିନ୍ଧୁ, ଆର୍ଯ୍ୟାବର୍ତ୍ତର ଜନନୀରୂପିଣୀ ଯମୁନା-ସଙ୍ଗିନୀ ମହାନଗରୀ-ମାଳିନୀ ତପୋଧନ-ସେବିତା ସୁଧାମୟୀ ଗଙ୍ଗା ପୂର୍ବାଞ୍ଚଳପ୍ଲାବୀ ଶତୋପନଦୀ-ସେବିତ ମହାପ୍ରବାହ ବ୍ରହ୍ମପୁତ୍ର ଏବଂ ଅନ୍ୟର ଶତ ଶତ କ୍ଷୁଦ୍ର ବୃହତ୍ ନଦୀମାନେ ନିଃସରିତ ହୋଇ ଶହ ଶତ ପ୍ରଦେଶକୁ ଉର୍ବର କରୁଅଛନ୍ତି । ଏହାର ମେଖଳ-ପ୍ରଦେଶରେ ମେଘମାଳା ସର୍ବଦା ବିଚରଣ କରୁଅଛି । ଏହାର ବକ୍ଷରେ ଓ ପାଦଦେଶରେ ପ୍ରକାଣ୍ଡକାୟ ଶାଳ, ଦେବଦାରୁପ୍ରଭୃତି ବନସ୍ପତିର ଅରଣ୍ୟାନୀ

ଏବଂ ଅଗଣ୍ୟ ପ୍ରକାର ବୃକ୍ଷଲତାପରିପୂର୍ଣ୍ଣ ନିବିଡ଼ ବନ ପ୍ରସାରିତ ରହିଅଛି । ଏହାର ନାନା ଦିଗ୍‌ବିଭାଗରେ କେତେ ଅଧିତ୍ୟକା ଓ ଉପତ୍ୟକା, କେତେ ଜନପଦ, କେତେ ଗିରିଦରୀ ଓ ଗିରି ନିର୍ଝରିଣୀ, କେତେ ଜଳପ୍ରପାତ ଓ ହ୍ରଦ, କେତେ ଗିରିସଙ୍କଟ ଏବଂ କେତେ ଶସ୍ୟକ୍ଷେତ୍ର ଓ ରତ୍ନଖଣି, କେତେ ଅପରିଜ୍ଞାତ ଅନାବିଷ୍କୃତ ପ୍ରଦେଶ ବିଦ୍ୟମାନ ରହିଅଛି ତାହା କିଏ କହି ପାରିବ ?

ଚୀନଦେଶ ପ୍ରାନ୍ତରୁ ହିନ୍ଦୁକୁଶ ପର୍ବତ ପର୍ଯ୍ୟନ୍ତ ଯେଉଁ ମହା-ପର୍ବତଶ୍ରେଣୀ ଅଗ୍ନେୟକୋଣରୁ ବାୟବ୍ୟକୋଣ ଅଭିମୁଖେ ପ୍ରସାରିତ ରହିଅଛି, ହିମାଳୟ ସେହି ପର୍ବତ ଶ୍ରେଣୀର ଅନ୍ତର୍ଗତ । ପୂର୍ବ-ଦିଗରେ ଯେଉଁଠାରେ ବ୍ରହ୍ମପୁତ୍ର ଦକ୍ଷିଣାଭିମୁଖରେ ଗତି କରିବାକୁ ଆରମ୍ଭ କରିଅଛି, ସେହିଠାରୁ ଯେଉଁଠାରେ ସିନ୍ଧୁନଦୀ-ଦକ୍ଷିଣାଭିମୁଖୀ ହୋଇଅଛି, ସେ ପର୍ଯ୍ୟନ୍ତ ବିସ୍ତାରିତ ପାର୍ବତ୍ୟ ପ୍ରଦେଶକୁ ହିମାଳୟ-ଶ୍ରେଣୀ ବୋଲିଯାଏ । ଏହି ପର୍ବତଶ୍ରେଣୀର ଦୈର୍ଘ୍ୟ ୧୯୦୦ ମାଇଲ ଏବଂ ପ୍ରସ୍ଥ ପ୍ରାୟ ୧୫୦୦ ମାଇଲ୍ ହେବ । ଏହି ସମୁଦାୟ ପାର୍ବତ୍ୟ ଅଞ୍ଚଳର କ୍ଷେତ୍ରଫଳ ପ୍ରାୟ ଏକଲକ୍ଷ-ଷଷ୍ଟି ସହସ୍ର ବର୍ଗମାଇଲ୍ ଅଟେ । ହିମାଳୟ ଉଚ୍ଚତାରେ ପୃଥିବୀର ଅନ୍ୟ ସମସ୍ତ ପର୍ବତକୁ ଜିଣିଅଛି । ଏହାର ଉଚ୍ଚତମଶୃଙ୍ଗ ଗୌରୀଶଙ୍କର (ଇଂରାଜୀ ନାମ ଏଭରେଷ୍ଟ) ସମୁଦ୍ରପୃଷ୍ଠରୁ ୨୯୦୦୦ ଫୁଟ ଅର୍ଥାତ୍ ସାଢ଼େ ପାଞ୍ଚ ମାଇଲରୁ ଅଧିକ ଅଟେ । କାଞ୍ଚନଜଙ୍ଘା ପ୍ରାୟ ୨୮୦୦୦ ଫୁଟ ଓ ଧବଳଗିରି ପ୍ରାୟ ୨୭୦୦୦ ଫୁଟ ଉଚ୍ଚ । ଏହି ସୁପ୍ରସିଦ୍ଧ ଶୃଙ୍ଗତ୍ରୟ ଛଡ଼ା ବଦରିନାଥପ୍ରଭୃତି ଅନେକ ଶୃଙ୍ଗ ଚିରତୁଷାରାଚ୍ଛନ୍ନ ମହିମାରେ ବିରାଜିତ ରହିଅଛନ୍ତି ।

ଏହି ପର୍ବତଶ୍ରେଣୀର ଏକପାର୍ଶ୍ୱରୁ ଅପରପାର୍ଶ୍ୱକୁ ଯାତାୟାତ କରିବାପାଇଁ ଅନେକ ଦୁର୍ଗମ ସଂକୀର୍ଣ୍ଣ ପଥ ଅଛି । ସେମାନଙ୍କ

ଘାଟି ବା ଗିରିସଙ୍କଟ ବୋଲାଯାଏ । ଏହି ସଙ୍କଟ ବର୍ତ୍ମମାନଙ୍କରେ କୌଣସି ସ୍ଥଳରେ ପାର୍ବତ୍ୟ ମେଷ ଉପରେ ବୋଝ ଲଦି ପଥିକମାନେ ବହୁ କଷ୍ଟରେ ଗମନାଗମନ କରନ୍ତି । ଏହି ଗିରିସଙ୍କଟମାନ ଦଶସହସ୍ର ଫୁଟଠାରୁ ଅଠର ସହସ୍ର ଫୁଟ ପର୍ଯ୍ୟନ୍ତ ଉଚ୍ଚ ଥିବାର ଜଣାଯାଇଅଛି ।

ହିମାଳୟ ହିମ ବା ବରଫର ନିତ୍ୟ ଆଳୟ । ୧୬୦୦୦ ଫୁଟ ଉଚ୍ଚ ଓ ତଦପେକ୍ଷା ଉଚ୍ଚତର ପ୍ରଦେଶମାନ ନିତ୍ୟ ତୁଷାରାବୃତ ଅଟେ । ସେ ପ୍ରଦେଶମାନଙ୍କରେ ବନସ୍ପତି ବା ଶସ୍ୟ ଜନ୍ମି ପାରେ ନାହିଁ । ଦକ୍ଷିଣ ଦିଗରେ ଦଶହଜାର ଫୁଟ ପର୍ଯ୍ୟନ୍ତ ଜନପଦ, ଦେବଦାରୁ ବନ ଓ ଶସ୍ୟକ୍ଷେତ୍ର ଦେଖାଯାଏ ଏବଂ ଉତ୍ତର ଦିଗରେ ତେର ହଜାର ଫୁଟ ପର୍ଯ୍ୟନ୍ତ ମନୁଷ୍ୟର ଆବାସ, ଧାନ୍ୟ, ଗୋଧୂମ କ୍ଷେତ୍ରାଦି ଓ ଭୂର୍ଜ ଭିନ୍ନ ପ୍ରକାରର ବନସ୍ପତି ଦେଖାଯାଏ । ହିମାଳୟରେ ସ୍ୱର୍ଣ୍ଣ, ତାମ୍ର, ସୀସକ, ଲୌହ, ଗନ୍ଧକ, ସୈନ୍ଧବ-ପ୍ରଭୃତି ଧାତବ-ଖଣି ଅଛି ।” —ଉତ୍କଳଶ୍ରୀ ମଧୁସୂଦନ—

## ଜଣେ ଋଷିଙ୍କର ବ୍ୟକ୍ତିଗତ ଅନୁଭୂତ

ହିମାଳୟ ଶିଖରେ ସେ ଭ୍ରମିଣ ଲାଗିଲେ
କ୍ରମେ କ୍ରମେ ଉତ୍ତରଗତ ହୋଇଣ ପଡ଼ିଲେ ।
ହିମାଦ୍ରିର ତୁଙ୍ଗଚୂଡ଼ା ବୈକୁଣ୍ଠ ସମାନ
ମାନସରୋବର ତଟ ଅତି ରମ୍ୟସ୍ଥାନ ।
ନାନା ପକ୍ଷୀ ବିହରନ୍ତି ସେହି ହ୍ରଦଜଳେ
ପଶୁପକ୍ଷୀ ବୁଲୁଥାନ୍ତି ବନେ ଆନନ୍ଦରେ ।
କାହିଁ ପଂକ୍ତି ପଂକ୍ତି ହୋଇ ଅପସରାମାନେ
ଭ୍ରମଣ କରୁଅଛନ୍ତି ନୃତ୍ୟ ଗୀତ ଗାନେ ।

କାହିଁ ବାଦ୍ୟ ବାଜୁଛନ୍ତି ଗନ୍ଧର୍ବ କିନ୍ନର
କାହିଁ ଦେବ ଦେବୀ ବସି କରନ୍ତି ବିଗ୍ରହ।
ଶିବ ବସନ୍ତରେ ସ୍ଥାନ ସଦା ଆମୋଦିତ
ନାନା ଜାତି ଫୁଲ ଫୁଟି ସୁବାସେ ମୋହିତ ।
ସ୍ୱର୍ଗଠାରୁ ରମଣୀୟ ଏହି ହିମାଳୟ
ଏଠାକୁ ଆସିଲେ ହୁଏ ପୁଲକ ହୃଦୟ ।
ଯେଉଁମାନେ ସଦା ବାସ କରନ୍ତି ଏ ସ୍ଥାନେ
ନବ ଯୌବନ ଲଭନ୍ତି ଆନନ୍ଦିତ ମନେ ।

## ହିମାଳୟର ପ୍ରାକୃତିକ ବୈଚିତ୍ର୍ୟ

ଅସୀମ ବୈଚିତ୍ର୍ୟରେ ହିମାଳୟ ପରିପୂର୍ଣ୍ଣ । ଯେଉଁ ହିମାଳୟ ହିମରେ ପରିପୂର୍ଣ୍ଣ ତା' ମଧ୍ୟରେ ପୁଣି ପ୍ରଚଣ୍ଡ ଅଗ୍ନିକୁଣ୍ଡ ବିଦ୍ୟମାନ । ଏଥିପାଇଁ ଭକ୍ତ କବି ଗାଇଥିଲେ "ଜ୍ୱଳନ ବୃଷ୍ଟି ପରିଜିତ ଚିତୋ ଚିତ୍ତ ଶିଶିରେ" ହିମାଳୟର କୋଳରେ ଯମୁନୋତ୍ରୀଠାରେ ଏକ କୁଣ୍ଡ ରହିଛି, ଯେଉଁଠାରେ କି ପାଣି ସବୁବେଳେ ଟକ୍ ମକ୍ ହୋଇ ଫୁଟୁଥାଏ । ଚାଉଳ ଡାଲି ବା ପନିପରିବାକୁ କନାରେ ବାନ୍ଧି ଏହି କୁଣ୍ଡଭିତରେ ବୁଡ଼ାଇ ଦେଲେ ଅଳ୍ପ ସମୟ ମଧ୍ୟରେ ତାହା ସିଝି ଯାଏ ଓ ଖାଇବା ଉପଯୋଗୀ ହୁଏ । ହିମାଳୟର ଏହି ସ୍ଥାନଟିର ଚାରିଆଡ଼େ ବରଫ ଜମି ରହିଥିବା ବେଳେ ଏଭଳି ଏକ ଗରମ ଜଳର କୁଣ୍ଡଥିବା ବାସ୍ତବରେ ଆଶ୍ଚର୍ଯ୍ୟର ବିଷୟ । ପ୍ରତିଦିନ ଶହ ଶହ ଯାତ୍ରୀ ଓ ଆଖପାଖ ଅଞ୍ଚଳର ଲୋକେ ଏ କୁଣ୍ଡକୁ ଆସି ନିଜ ଖାଦ୍ୟ ପ୍ରସ୍ତୁତ କରିଥାନ୍ତି । ଜାଳେଣି କାଠ କି କୋଇଲା ଦରକାର ନାହିଁ, ନିଆଁ ଜାଳିବାକୁ ମଧ୍ୟ ହୁଏ ନାହିଁ । ଶୂନ୍ୟରେ ରନ୍ଧା ଭାତଡାଲି ତରକାରୀ ମିଳିଯାଏ । ଏ ଭଳି ବହୁ ପ୍ରାକୃତିକ ବୈଚିତ୍ର୍ୟରେ ଆମ ହିମାଳୟ ଭରି ରହିଛି । —ସ୍ୱାମୀ ରାମ ତୁଳସୀ

# ମନୁଷ୍ୟକୁ ଚେତାବନୀ

## (ସତର୍କ ବାଣୀ)

"ଖଟ ପଲଙ୍କେ ମନ ଶେଯାଇ ଶୋଉ
ଖଳ ଦୁର୍ଗନ୍ଧ ହେବ ଏ ତୋର ଦେହୁ ।
ଘର ବୋଲି ଅର୍ଜିଛୁ ଯେତେ ପଦାର୍ଥ
ଘଟ ଛୁଟିଲେ ତୋତେ ବୋଲିବେ ଭୂତ ।
ଘର-ଘରଣୀ ଦେହ ଲାଗିଥିବେ
ଘେନି ବନ୍ଧ , କୁଟୁମ୍ବ ଶୁଦ୍ଧ ହୋଇବେ ।
ଛୁଇଁବେ ନାହିଁ ତୋତେ ବୋଲିବେ ମଡ଼ା
ଛ'ଖଣ୍ଡି କାଠ ତୋତେ ହୋଇବ ଜୋଡ଼ା ।
ଥୋଇଲା ଧନ ତୋର ଖଣ୍ଟି ଖାଇବେ
ଥାନେ ତୋହର ଘର କରି ରହିବେ ।
ମଲା ବୋଲିଣ ଦିନେ ପଡ଼ିବ ହୁରି
ମଲା ବୋଲି କାନ୍ଦିଛୁ ଯିବୁ ତୁ ମରି ।"

—ମନବୋଧ ଚଉତିଶା

"ଏକାକୀ ଆସଇ ପ୍ରାଣୀ ଏ ମହୀ ମଣ୍ଡଳେ
ଶୂନ୍ୟହସ୍ତେ ଯାଏ ପୁଣି ଏଥୁଁ ଗଲାବେଳେ ।
ପଣ୍ଡିତହେ ଧନ ରତ୍ନ ଦାରା ସୁତ ଯେତେ
ସକ୍ଷମ ନୁହନ୍ତି କେହୁ ଯିବାକୁ ସଙ୍ଗତେ ।
ଅତଏ ମନରେ ଏହି ସଂସାର ତ ଜାଣ
ଦୁଇଦିନପାଇଁ ମାତ୍ର ତୁମ୍ଭ ଆଗମନ ।

ହାଟ ସାର ଫେରଯିବ ଅସିଥିଲ ଯହୁଁ
ଅହେଇ ଧନକୁ କେଉଁ ଗର୍ବ ଏତେ ଅଜ୍ଞ ।
ମିଛ ମାୟା ଖେଳଘର ଅଟଇ ସଂସାର
ପୁତ୍ର, ନାତି, ଭାର୍ଯ୍ୟା କେହି ନୁହନ୍ତି କାହାର ।
କିଏ ରାଜା କିଏ ପ୍ରଜା କେବା ପୁଣ ଦାସ
କିଏ ପିତା କିଏ ଗୁରୁ କିଏ ଅବା ଶିଷ୍ୟ ।
ସକଳ ଅଟଇ ମିଥ୍ୟା, ମିଥ୍ୟା ଏ ସଂସାର
ମୋହେ ଘାଣ୍ଟି ହେବା ବିନା ଅଟେ ଅବାସ୍ତବ ।
ଯେଉଁ ରୂପେ ପଦ୍ମପତ୍ରେ ଜଳବିନ୍ଦୁ ଥାଇ
ଟଳ ଟଳ ହେଉଥାଏ ସୁସ୍ଥିର ନ ରହି ।
ତେମନ୍ତ ଅଟଇ ସିନା ସଂସାରର ସ୍ଥିତି
କ୍ଷଣକେ ହୁଅଇ ଲୀନ କ୍ଷଣକେ ଉତ୍ପତ୍ତି ।
ଜନ୍ମିଲେ ମରଣ ନିଶ୍ଚେ ହେବ ଏହା ସତ୍ୟ
ନ ମରି ଜନମି ରହିଅଛୁ କେ ଜଗତ ।
ଧନ ରତ୍ନ ଯେଉଁପରି କାଳର ବର୍ତ୍ତନ
ସେହିପରି ଜାଣ ବସ୍ତୁ ଜୀବନ ମରଣ ।
ମରଣର ପରେ ଜନ୍ମ ଜନ୍ମ ପରେ ମୃତ୍ୟୁ
ଅସାର ଏ ଖେଳଘର ଅମ୍ଭମାୟା ହେତୁ ।
ଅମର ହୋଇ କେ ଭବେ ନାହିଁ କଦାକାଳେ
ମରିବେ ସକଳେ ଜନ୍ମ ହେଲେ ଧରାତଳେ ।
ଜନ୍ମିଲେ ମରଣ ଧ୍ରୁବ ବିଧାତା ଲିଖନ
ମରଣ ଅସ୍ଥାୟୀ ନୁହେଁ ଅସ୍ଥାୟୀ ଜୀବନ ।"

— ବ୍ରହ୍ମବୈବର୍ତ୍ତ ପୁରାଣ

## ମୃତ୍ୟୁପରେ ପ୍ରାଣୀର ଅବସ୍ଥା

“କେ କାହାର କୁଟୁମ୍ବ ଯେ ବାନ୍ଧବ ପରିଜ
ଅଦୃଶ୍ୟ ହୋଇଲେ ଯେହ୍ନେ ନ ଥାଇ ସେ ସ୍ୱଜ ।
ସେହୁ ପରକାରେ ଅଟେ ଦେହ ବୃଦ୍ଧି ଗୋଟି
ଅସ୍ଥାଗୁଡ଼ୁ ଘେନିଯାନ୍ତି ଦେବାକୁ ଯେ ମାଟି ।
ବନ୍ଧୁ ବାନ୍ଧବ ଯେତେକ ପ୍ରୀତି ଜନ ଥାଇ
କେହୁ ଦୁଃଖେ କାନ୍ଦନ୍ତି କେ ମଡ଼ା ଘେନିଯାଇ ।
ଗ୍ରାମ ବାହାର ଭୂମିରେ କରନ୍ତି ଶ୍ମଶାନ
କାଠ ଯୋଡ଼ି ଦହନ୍ତି ଯେ ଜାଳି ହୁତାଶନ ।
ଯେ କୁମରକୁ ଅନେକ ଯତନେ ଥାଇ ପାଳି
ସେ ନେଇ ମୁଖରେ ତା'ର ଅଗ୍ନି ଦିଏ ଜାଳି ।
ପୋଡ଼ି ପୋତି କରି ଶବ-ସଂସ୍କାରବିଧାନ
ଏକେ ଏକେ ଫେରିଯାନ୍ତି ଯେ ଯାହା ସଦନ ।
ବିସର୍ଜି ତୋ ସୁନା ଦେହ କରି ନାରଖାର
ତୋ ଲାଗି ରହିବେ ନାହିଁ ଛଳେହେଁ ଜଞ୍ଜାଳ ।
ଗଲାବେଳେ ଜୀବ କେହୁ ନୁହନ୍ତି କାହାର
ପଥର ସମ୍ବଳ ଅଟେ ହରିନାମ ସାର ।
ତୋଠେ ତେଜି ଲୁଟି ନେବେ ତୋ ଅର୍ଜିଲା ବିତ୍ତ
ବ୍ୟଥିତ ନୋହିବ ଛଳେ କା'ର ହେଲେ ଚିତ୍ତ ।
ତୋ ଜୀବନ-ପାପଭାର ତୋତେ ଦେବେ ଲଦି
ପାପ ଘୁଣ୍ଡି ବାକି ସବୁ ରହିବେ ସମ୍ପାଦି ।
କିପରି ତୁ ଉଦ୍ଧରିବୁ ନ ଭାବିବେ ଛଳେ
ନରକେ ପଡ଼ି ତୁ ଛଟପଟ ହେବା କାଳେ ।
ତେଣୁରେ ବାଇଆ ଜୀବ ନ ହୋଇ ବାଉଳା
ନିଜର ଉଦ୍ଧାରପାଇଁ ସଜକର ଭେଳା ।”

# ଯମ

ପ୍ରାଚୀନ ଶାସ୍ତ୍ରମାନଙ୍କରେ ଯମ ଏକ ବିଶିଷ୍ଟ ଓ ବିଚିତ୍ର କଳ୍ପନା । ସାଧାରଣତଃ ଯମନାମ ଶୁଣିଲେ ଲୋକେ ଭୟ ପାଇଥାନ୍ତି; କାରଣ ସେ ମୃତ୍ୟୁର ଦେବତା । "କାଳ ପ୍ରଶଗଲ" ଇତ୍ୟାଦି ଅର୍ଥ ମୃତ୍ୟୁ ଆସିଗଲା । ଯମକୁ କାଳ ବୋଲି କହନ୍ତି । ଜାତହେଲେ ତ ମୃତ୍ୟୁ ଅବଶ୍ୟମ୍ଭାବୀ, ଅତଏବ ଭୟର କାରଣ କ'ଣ ? ପୁରାଣକାରମାନେ ସତ୍ତ୍ୱ, ରଜ, ତମ, ତିନିଗୁଣ, ଦେବଲୋକ, ମର୍ତ୍ତ୍ୟଲୋକ ଓ ନରକର ବର୍ଣ୍ଣନା କରି ଅଛନ୍ତି । ପ୍ରକୃତପକ୍ଷେ ଯମ ଏକ ଦେବତା; କିନ୍ତୁ ସେ ନରକର ଅଧୀଶ୍ୱର । ଯମକୁ ନ୍ୟାୟାଧୀଶ କୁହାଯାଏ । ସେ ଦୋଷୀକୁ ଦଣ୍ଡ ଦିଅନ୍ତି—ସତ୍ୟ; କିନ୍ତୁ ସାଧୁଲୋକଙ୍କୁ ଭଲ ବର ଦିଅନ୍ତି । ତେଣୁ ଯେ ସତ୍ ମାର୍ଗରେ ଗଲୁଛି ତା'ର ଯମକୁ ଭୟ କରିବାର କାରଣ ନାହିଁ । ମହାଭାରତରେ ଓ ପୁରାଣମାନଙ୍କରେ ଯମଙ୍କ ଉତ୍ପତ୍ତି କେଉଁଠି ଓ ସେ କିପରି କାହାକୁ ବର ଦେଇଛନ୍ତି ସେସବୁ ବିଷୟ ଭିନ୍ନ ଭିନ୍ନ ସ୍ଥଳରେ ଭିନ୍ନ-ଭିନ୍ନଭାବରେ ବର୍ଣ୍ଣିତ ଅଛି ।

ପତିବ୍ରତା ସାବିତ୍ରୀଙ୍କ ତପସ୍ୟା-ଫଳରେ ତାଙ୍କ ମୃତ ସ୍ୱାମୀ ସତ୍ୟବାନଙ୍କୁ ଯମ ପୁନର୍ଜୀବନ ଦାନ କରିଥିଲେ । ମାଣ୍ଡବ୍ୟ ଋଷିଙ୍କୁ ଯମ ମହାଭାରତବର୍ଣ୍ଣିତ ବିଦୁରରୂପେ ଜନ୍ମ ଦେଇଥିଲେ; ଏହିପରି ଅନେକ ଦୃଷ୍ଟାନ୍ତ ଅଛି ।

ଗୋଟିଏ ଜନ୍ମରୁ ପୁନର୍ଜନ୍ମ ମଧ୍ୟରେ ମନୁଷ୍ୟର ଦୁଷ୍କୃତର ପରିମାଣ ଅନୁସାରେ ପ୍ରାୟଶ୍ଚିତ୍ତ ନିର୍ଦ୍ଦେଶ କରିବା ଯମଙ୍କ କାର୍ଯ୍ୟ; ଯମଙ୍କ ହାତରେ ଦଣ୍ଡ ଥାଏ । ତାହା କାଳଦଣ୍ଡ । ତେଣୁ ତାଙ୍କୁ ଦଣ୍ଡଧର କହନ୍ତି । ଦେବଗଣମଧ୍ୟରେ ସେ ପୁଣ୍ୟବାନ୍ ବୋଲି ତାଙ୍କୁ ଧର୍ମରାଜ କହନ୍ତି ।

କୁନ୍ତୀଙ୍କ ଗର୍ଭରୁ ଯମଙ୍କର ଔରସରେ ଯୁଧିଷ୍ଠିରଙ୍କ ଜନ୍ମ । ଯୁଧିଷ୍ଠିର ଧର୍ମରେ ଚଳୁଥିଲେ ବୋଲି ତାଙ୍କୁ ଧର୍ମପୁତ୍ର କୁହାଯାଏ । ଯମ ଶାସ୍ତି ଦଅନ୍ତି ବୋଲି ତାଙ୍କ ନାମ ଶମନ । ସେ ଅନ୍ତ (ଶେଷ) ଆଣନ୍ତି ବୋଲି ତାଙ୍କ ନାମ କୃତାନ୍ତ । ପିତୃପୁରୁଷ ଉପରେ ଏହାଙ୍କର ପ୍ରଭାବଥିବାରୁ ଏହାଙ୍କୁ ପିତୃପତି ବୋଲନ୍ତି; ଏ ହେଉଛନ୍ତି ଜୀବନର ପାପପୁଣ୍ୟର ବିଗୃହକର୍ତ୍ତା ।

ଋକ୍‌ବେଦରେ ଏହାଙ୍କ ସମ୍ବନ୍ଧରେ ଅନେକ ତଥ୍ୟପୂର୍ଣ୍ଣ ବିବରଣୀ ଅଛି । ଏହାଙ୍କୁ ଅଗ୍ନି, ବରୁଣଙ୍କ ସଙ୍ଗେ ଉଲ୍ଲେଖ କରି-ଯାଇଅଛି । ଯମ ଦକ୍ଷପ୍ରଜାପତିଙ୍କ ୧୩ ଗୋଟି କନ୍ୟାଙ୍କୁ ବିବାହ କରିଥିଲେ । ଏମାନଙ୍କ ଗର୍ଭରେ ଯମଙ୍କ ଔରସରେ ତେରଗୋଟି ସନ୍ତାନ ଜାତ ହୋଇଥିଲେ । ଯଥା:—

| ମାତା | ସନ୍ତାନ |
|---|---|
| ଶ୍ରଦ୍ଧା | ସତ୍ୟ |
| ମୈତ୍ରୀ | ପ୍ରସାଦ |
| ଦୟା | ଅଭୟ |
| ଶାନ୍ତି | ଗର୍ବ |
| କ୍ରିୟା | ଯୋଗ |
| ଉନ୍ନତି | ଦର୍ପ |
| ବୁଦ୍ଧି | ଅର୍ଥ |
| ମେଧା | ସ୍ମୃତି |
| ତିତିକ୍ଷା | ମଙ୍ଗଳ |
| ଲଜ୍ଜା | ବିନୟ |
| ମୂର୍ତ୍ତି | ନରନାରାୟଣ |

ଆମ ପୁରାଣମାନଙ୍କରେ ଯମଙ୍କର ଯେପରି କଳ୍ପନା ହୋଇ ଅଛି; ପାଶ୍ଚାତ୍ୟ, ଗ୍ରୀସ୍ ଓ ରୋମ୍ ଦେଶର ପୁରାଣରେ ମଧ୍ୟ ସ୍ୱର୍ଗ, ମର୍ତ୍ତ୍ୟ, ପାତାଳ ଓ ଯମପୁରୀର ବର୍ଣ୍ଣନା ସେହିପରି ଅଛି। ସୃଷ୍ଟିରେ କେତେ ନର ବର ପାଉଛନ୍ତି, କେତେ ଦଣ୍ଡ ପାଉଛନ୍ତି; କିନ୍ତୁ ସବୁ କଥାର ସାର ହେଲା ଏହି ଯେ ଯେବେ ମନୁଷ୍ୟ ସତ୍ତ୍ୱଗୁଣ ଭୁଲି ତମ ଆଡ଼କୁ ମନ ବଳାଏ ଓ ପାପ କର୍ମ କରେ; ସେଥିପାଇଁ ତାକୁ ଦଣ୍ଡଭୋଗ କରିବାକୁ ହୁଏ। ଏ ଦଣ୍ଡର ଦାତା କିଏ ? ଯମ। ଯମ ପୁଣ୍ୟବାନ୍ ଲୋକଙ୍କୁ (ପୁରସ୍କାର)ବର ଦିଅନ୍ତି। ମାନବ ତା'ର ଜୀବନ-କାଳମଧ୍ୟରେ ଯେଉଁ ସୁକର୍ମ ବା କୁକର୍ମ କରିଥାଏ ଯମଙ୍କ ସିରସ୍ତାରେ ତା'ର ତାଲିକା ବିସ୍ତୃତଭାବରେ ରହେ। ମୃତ୍ୟୁ ପରେ ତା'ର ବିଚାର ହୁଏ; ଯମ ନିକଟରେ ଉଚିତ୍ ଦଣ୍ଡ ବା ପୁରସ୍କାର ଦିଅନ୍ତି। ଯମଭୟ ନ ଥିଲେ ମାନବମାନେ ପାପୀ ଦୁରାଚାର ହୋଇ ପଡ଼ନ୍ତେ। ଅତଏବ ଭାରତରେ ମୁନିଋଷିମାନେ ଯେଉଁ ସଂସ୍କୃତ ଓ ଆଧ୍ୟାତ୍ମିକ ମାର୍ଗ ଦର୍ଶାଇ ଯାଇ ଅଛନ୍ତି ତହିଁରେ ଯମଙ୍କ କଳ୍ପନା ଓ ତାଙ୍କର ଦାୟିତ୍ୱ ଓ ବିଚାର ସର୍ବପ୍ରଧାନ। ଯମଙ୍କର ପ୍ରଧାନ ହିସାବରକ୍ଷକ (ଆକାଉଣ୍ଟାଣ୍ଟ) ହେଉଛନ୍ତି ଚିତ୍ରଗୁପ୍ତ। ମଣିଷ ଅଜାଣତରେ ପାପ କରିଗଲେ ତା'ର ନିସ୍ତାର ନାହିଁ। ସେ ଦଣ୍ଡ ପାଇବ, ତେଣୁ ପୁରସ୍କାର ଆଶାରେ ସତ୍କର୍ମରେ ପ୍ରୟାସୀ ହେବ।



# ଚିତ୍ରଗୁପ୍ତ

ଚିତ୍ରଗୁପ୍ତ ଯମଙ୍କର ପ୍ରଧାନ କର୍ମଚାରୀ ଓ ହିସାବରକ୍ଷକ । ସେ ବ୍ରହ୍ମାଙ୍କଠାରୁ ଜାତ । ସେ ବର ପାଇଥିଲେ—ସେ କର୍ମରେ ନିଯୁକ୍ତ ପାଇବେ । ବ୍ରହ୍ମା କହିଲେ, "ମନୁଷ୍ୟର ପାପପୁଣ୍ୟ ବିଚାର କରିବାପାଇଁ ତୁମ୍ଭେ ଯମାଳୟରେ ବାସ କର ଓ ଆମ୍ଭ କାୟାରୁ ତୁମ୍ଭର ଉତ୍ପତ୍ତି ହେବାରୁ ତୁମ୍ଭଙ୍କୁ କାୟସ୍ଥ କୁହାଯିବ । ସେ ମାନବ-ଜୀବନର ପାପପୁଣ୍ୟର ଚିତ୍ର ବିଚିତ୍ର ହିସାବକୁ ଗୁପ୍ତଭାବରେ ରଖନ୍ତି ବୋଲି ତାଙ୍କ ନାମ ଚିତ୍ରଗୁପ୍ତ । ସେ ମନୁଷ୍ୟର ଲଲାଟରେ ଭାବୀ ଶୁଭାଶୁଭ ଫଳ ଲେଖୁଥାନ୍ତି । କାର୍ତ୍ତିକ ମାସର ଶୁକ୍ଳ ଦ୍ୱିତୀୟାଦିନ ଚିତ୍ରଗୁପ୍ତଙ୍କର ପୂଜାହୁଏ । ଏହି ତିଥିରେ ଭୀଷ୍ମ ଚିତ୍ରଗୁପ୍ତ ପୂଜାକରି ଇଚ୍ଛାମରଣପାଇଁ ବର ପାଇଥିଲେ । ଏହାଙ୍କ ବିଚାର ଅନୁସାରେ ପାପୀ ଦଣ୍ଡ ପାଆନ୍ତି । ପୁଣ୍ୟବାନ୍ ଲୋକେ ପୁରସ୍କାର ପାଆନ୍ତି । ପୁରାଣମାନଙ୍କରେ କଥିତ ଅଛି ଚିତ୍ରଗୁପ୍ତଙ୍କର ବାରଗୋଟି ପୁତ୍ର ଥିଲେ ଓ ପ୍ରତ୍ୟେକ ପୁତ୍ରର ଗୋଟିଏଁ ଲେଖାଏ ପୁତ୍ର ଏପରି ବାରଗୋଟି ପୌତ୍ର ଥିଲେ । ଯଥାଃ—

| ପୁତ୍ର | ପୌତ୍ର | ପୁତ୍ର | ପୌତ୍ର |
|---|---|---|---|
| ଭାନୁ | ଶ୍ରୀବାସ୍ତବ | ବିଭାନୁ | ସୁରଧ୍ୱଜ |
| ବିଶ୍ୱଭାନୁ | ଅସ୍ଥାନ | ଚିତ୍ର | ଭଟ୍ଟନଗର |
| ଚାରୁ | ମାଥୁର | ସୁଚାରୁ | ନିଗମ |
| ଚିତ୍ରଚାରୁ | ଗୌଡ଼ | କେତୁମାନ | ବାଲ୍ମୀକ |
| ମତିମାନ | ସାକ୍ସେନା | ହିମବାନ୍ | ଅମ୍ବଷ୍ଠ |
| ଅରୁଣ | କରଣ | ଅତୀନ୍ଦ୍ରିୟ | କୁଳଶ୍ରେଷ୍ଠ |

ଏହି ପୌତ୍ରମାନେ ଉତ୍ତର-ଭାରତର ବିଭିନ୍ନ ଅଂଶରେ ବସବାସ କରି ଶାସନକାର୍ଯ୍ୟର ଦାୟିତ୍ୱ ନେଲେ । ଦ୍ୱାଦଶ ପୁତ୍ର

ଅରୁଣଙ୍କ ପୂଜା କରଣ । ପ୍ରଥମେ ଗୁଜୁରାଟର କରଣଲ୍ ନର୍ମଦାକୂଳକୁ ଯାଇ ସେଠାରୁ ଓଡ଼ିଶାକୁ ଆସିବାରେ ତାଙ୍କ ସମ୍ଭ୍ରାନ୍ତ ଅଢ଼େଇଘରଅ କରଣନାମରେ ପରିଚିତ ହେଲେ । 8. **Patna Law Times Page-34.** ମାନ୍ୟବର ପାଟଣା ହାଇକୋର୍ଟଙ୍କର ଜଜ୍ ( ଜ୍ୱାଇଁ ପ୍ରସାଦଙ୍କ ରାୟ) ଆମ ଓଡ଼ିଶାର ଗଜପତି ରାଜାମାନଙ୍କର ଯେପରି କୋଠକରଣ, ପାଞ୍ଜିଅଳକରଣ ଥାଆନ୍ତି ସେହିପରି ଚିତ୍ରଗୁପ୍ତଙ୍କ ବଂଶଧର ଯମରାଜାଙ୍କର ପାଞ୍ଜିଅଳକରଣ ଥିଲେ ।

**କବିବର ରାଧାନାଥ—ଚିତ୍ରଗୁପ୍ତଙ୍କ ପାଞ୍ଜିସମ୍ବନ୍ଧରେ ଦରବାରରେ ଲେଖିଅଛନ୍ତି—**

"ବଡ଼ ଠାଣ ଭାଇ, ଚିତ୍ରଗୁପ୍ତ ହୁଅ
ବିଚକ୍ଷଣ ତା'ର ପାଞ୍ଜିଅ-ପଣିଆ ।
ଥାଉ ଅନ ଚିତ୍ତେ ଚିନ୍ତୁଥାଉ ଯାହା
ତା' ପାଞ୍ଜିରେ ଲେଖା ହୋଇଯାଏ ତାହା ।
ନରର ସମଗ୍ର ଜୀବନର ଚିତ୍ର
ପଲକେ ଦେଖାଏ ସେ ପାଞ୍ଜି ବିଚିତ୍ର ।
ଚିନ୍ତା-ପୁରେ ଅଛୁ ଯେତେ ଗଳି କୁଞ୍ଜ,
ରହି ନ ପାରେ ତା ଆଲୋକରେ ଲୁଚି ।
କି ବହିର୍ଜଗତେ, କି ଅନ୍ତର୍ଜଗତେ,
ଯେତେବେଳେ ଯାହା ଘଟେ ଏ ମରତେ ।
ସବୁ ଲେଖେ ସେହି ପାଞ୍ଜିକାର ରଢ଼,
କଡ଼ା ଦାଢ଼ ତହୁଁ ଯାଏ ନାହିଁ ଛାଡ଼ ।
ବ୍ରହ୍ମାଣ୍ଡେ ତା' ପରି ନାହିଁ ପଞ୍ଜିକାର,
ତା' ହିସାବ ପୁଣି ବୁଝିଅଁ ବାହାର ।

ପ୍ରତାରଣା ବର୍ଣ୍ଣି ନ ପାରେ ତା' ଅଟଗ,
ବାହାର ଭିତର ଦେଖେ ସେହୁଲଗେ ।
ବଡ଼ ତାଙ୍କ କ୍କ ସେ, ଶୁଣି ତା ଯୁକତ
ବଣା ହେବେ ନିଜେ କଣାଦ-ଭରତ ।
ମାନଦଣ୍ଡ ତା'ର ଅଦ୍ଭୁତ ଉଆଣ,
ମାପେ ଯା'ର ସାନ ବଡ଼, ବଡ଼ ସାନ ।
ଭଲ ସୁନା ବୋଲି ଭବେ ଯେ ବାଲସେ,
ତେଲ ସିନା ଶବଗୁପ୍ତର ନିକଷେ ।...
ତରାଜୁ ତାହାର ଦୁନିଆଁ ବାହାର,
ଗୁରୁ ଲଘୁ ଲଘୁ ଗୁରୁ ତୁଲେ ଯା'ର ।
ବାଗୀଶ ଉପରେ ବସାଏ ବାଲୀଶ,
ସବାର ଉପରେ ବସାଏ ସଇସ ।
ଦୁର୍ବଳକୁ ଦିଏ ବଳୀପରେ ସ୍ଥାନ,
ସୁସ୍ଥଠାରୁ ଦିଏ ରୋଗୀଙ୍କ ସମ୍ମାନ ।
ସୁନ୍ଦର ଉପରେ ବସାଏ କୁତ୍ସିତ,
ବସାଇ ଦିଏ ସେ ଜେତାପରେ ଜିତ ।
ସେ ନ ମାନେ, ଭାଇ, ଯେସନ ଚେହେରା;
ବାଘୁ ପରେ ଦିଏ ବସାଇ ବେହେରା ।
ସିଂହ ପରେ ଦିଏ ବସାଇ ଶଶାଙ୍କୁ,
କରଣ ଉପରେ ବସାଏ ଚଷାଙ୍କୁ ।
ବସାଏ ଚଣ୍ଡାଳ ତଳେ ଶ୍ରେଷ୍ଠବର୍ଣ୍ଣ,
ଅଧମର୍ଣ୍ଣ ତଳେ ତା'ର ଉତ୍ତମର୍ଣ୍ଣ ।
ମାଗିବ ଯେବେ ହେ ମର୍ତ୍ତ୍ୟର ହିସାବ,
କ୍କ ହିସାବ ଦେବ, ଦେଖ ତାହା ଭାବ ।

ଭଣ୍ଡିବାର ତାଙ୍କୁ ନୁହଇ ସହଜ
ନଖାଇ ନଖାଇ ଦେଖେ ସେ କାଗଜ ।
ସେ ଦରବାରର ରୀତି ନୀତି ଭବି
ଧର୍ମେ ବଳବାନ୍ କର ନିଜ ଦାବି ।
ଚତୁର ପଣର ଥିଲେ ଅଭିମାନ
ମର୍ତ୍ତ୍ୟ-ଅଭିମାନ ଦିଅ ବଳି ଦାନ ।"

—ରାଧାନାଥ-ଦରବାର—

---

## ଯମପୁର ବର୍ଣ୍ଣନା

"ଯମଙ୍କର ପୁର ଅଟେ ମହାଶୂନ୍ୟ ସ୍ଥିତ
କୋଟି ଯୋଜନ ତାହାର ଅଟେ ଦୀର୍ଘ ପ୍ରସ୍ଥ ।
ଚାରିପାଖେ ରହିଛନ୍ତି ହ୍ରଦ, ସରୋବର
କୂଳେ ବୃକ୍ଷଲତାମାନ ଅତି ମନୋହର ।
ନାନାଜାତି ପକ୍ଷୀ ବୃକ୍ଷେ ସଦା ବାସ କରି
ରହିଥାନ୍ତି ଆନନ୍ଦରେ ସତତ ବିହରି ।
ତା'ର ଅଟେ ଉପବନ ଅତି ଶୋଭାବନ
ବସନ୍ତ ଋତୁ ବିରାଜେ ତହିଁ ସଦାଦିନ ।
କୋକିଳର କୁହୁ କୁହୁ ଗୀତ ଶୁଣାଯାଏ
ମନ୍ଦ ମନ୍ଦ ମରୁତ ଯେ ନିତି ବହୁଥାଏ ।
ନାନାଜାତି ଫୁଲ ଫୁଟି ଦିଶେ ଅତି ଶୋଭା
ନାନା ପକ୍ୱଫଳେ ବନ ହୋଇଥାଏ ଲୋଭା ।
ସର୍ବଫଳ ସର୍ବଫୁଲ ହୋଇଛି ଭୂଷିତ
ବିଶ୍ୱକର୍ମା ଯତନେ ଯତନେ କଲେ ଯା ନିର୍ମିତ ।

ତା ମଧ୍ୟରେ ଶୋଭାପାଏ ରତ୍ନମୟ ପୁର
ଗୃହେ ଗୃହେ ହୀରା ନୀଳା ମାଣିକ୍ୟ ଅପର ।
ଯତନେ ଶୋଭଇ ଅଟ୍ଟାଳିକାମାନ ତହିଁ
ମଧ୍ୟରେ ରତ୍ନନିର୍ମିତ ସିଂହାସନେ ରହି ।
ଜନ୍ତୁଗଣ ବୃନ୍ଦ ଥାଏ ନ୍ୟାୟାନ୍ୟାୟ ସର୍ବ
ପାଶେ ବେଢ଼ି ଥାନ୍ତି ପାରିଷଦ ଖର୍ବ ଖର୍ବ ।
କାଳ ବିକାଳ ବେନି ଯେ ଧରି ପାଞ୍ଜି ବଡ଼ା
ବାମ ଦକ୍ଷିଣ ପାର୍ଶ୍ୱରେ ହୋଇଥାନ୍ତି ଠିଆ ।
ଦ୍ୱାରେ ଯମଦୂତଗଣ ଥାଅନ୍ତି ପ୍ରହରୀ
ବିକଟାଳ ରୂପ ଅସି ଖଡ୍ଗ ଗଦା ଧରି ।
ପ୍ରଳୟ କାଳର ଅଗ୍ନି ଜଳେ କେଉଁଠାରେ
ତପତ ଜଳ ମ ପୁଣି ଅଛଇ କାହିଁରେ ।
କେଉଁଠାରେ ପୁଣି ତପ୍ତ ଅଙ୍ଗାର ଅଛଇ
ତପ୍ତଜ୍ୱାଳ କାହିଁ ଅଗ୍ନିଶିଖା ଝଟକଇ ।
କେଉଁଠାରେ ତପ୍ତଜଳ ବରଷେ ପାଷାଣ
ଅଗ୍ନି ପ୍ରାୟେ ବାୟୁ ବହେ କେବଣ ଠାବେଣ ।
କେଉଁଠାରେ ଅନ୍ଧକୂପ ଦିଶେ ନ ଦିଶଇ
ପାପୀ ଯିବାବେଳେ ତହିଁ ଭିତରେ ପଡ଼ଇ ।
ଲୁହାର ନାରାଚ କଣ୍ଟା କେଉଁଠାରେ ଥାଇ
ଯିବାବେଳେ ପାପୀଙ୍କର ପାଦେ ଫୁଟିଯାଇ ।
ମାଂସ ଦୁର୍ଗନ୍ଧ ଗନ୍ଧାଇ ପୁଣି କେଉଁଠାରେ
ଯାନ୍ତେ ରକ୍ତ-ପୂଜେ ବୁଡ଼ି ପଡ଼ଇ କାହିଁରେ ।
କେଉଁଠାରେ ମଳ-ମୂତ୍ରେ ପଡ଼ଇ ବୁଡ଼ିଣ
ଘୋରଜୀବେ ଥାନ୍ତି ତହିଁ,ଖାନ୍ତି ଘୋଷାଡ଼ିଣ ।

କେଉଁଠାରେ ସିଂହ ବ୍ୟାଘ୍ର ଗଣ୍ଡା ହସ୍ତୀ ଥାନ୍ତି
ଅରଣ୍ୟ ମନୁଷ କାହିଁ ଭୟ ସେ ଦେଖନ୍ତି ।
କାହିଁ ଘୋଡ଼ା ଓଟ ଗଧ ବାୟସ ଶୃଗାଳ
ଭଲ୍ଲୁକ ଖାଆନ୍ତି ପାପୀ ହୁଅନ୍ତି ବିକଳ ।
କାହିଁରେ ଶାଗୁଣା ଚିଲ୍ ହାଡ଼ ଘିଣି ନଅଇ
କାହିଁରେ ଛଞାଣ ପକ୍ଷୀ ଆଖି ଖୋଳି ଖାଇ ।
ଦୂର ବାର୍ତ୍ତାବହମାନ ଖଞ୍ଜା ଥାଏ ହୋଇ
ଶୁଣୁଥାନ୍ତି ବୁଝୁଥାନ୍ତି ସବୁ କାନ ଦେଇ ।
ଯମ ଆଦେଶରେ ମନ୍ତ୍ରୀ କାଳ ଯେ ବିକାଳ
ପାଞ୍ଜି ଦେଖି କରନ୍ତି ତା ପାତକ ବିଗ୍ଭର ।
ସେହି ଅନୁସାରେ ଦଣ୍ଡ ଦିଅନ୍ତି ବହୁତ
ଜଳନ୍ତା ଅନଳେ କେହୁ ହୁଏ ଭସ୍ମୀଭୂତ ।
ତପତ ତଇଲେ କାକୁ ପକାନ୍ତି ନେଇଣ
କା ମାଂସ ଭକ୍ଷନ୍ତି ପଶୁ, ପକ୍ଷୀ, କୀଟଗଣ ।
କା ମୁଣ୍ଡ ଚିରନ୍ତି ଅଣ୍ଟେ କରତ ଲଗାଇ
କା ନେତ୍ର ଖୋଳନ୍ତି କର୍ଣ୍ଣ ନିଅନ୍ତି ଛିଣ୍ଡାଇ ।
କାହାକୁ ରୌରବ ନର୍କେ ମଳରେ ପକାନ୍ତି
ମୂତ୍ରକୁଣ୍ଡେ ଛଟପଟ କାହାକୁ କରନ୍ତି ।
କା ଦେହେ ପିଟି ଶାବଳ ବୁହାନ୍ତି ରକତ
କା ମୁଖେ ଭରନ୍ତି ମଳ, କାକୁ ଦିଅନ୍ତି ମୁତ ।
କାହା ଦୁଇପାଦ ଦୁଇଜଣ ଓଟାରନ୍ତି
ବେଳଫାଳ କରି ପୁଣି କାହାକୁ ଚିରନ୍ତି ।
କାହାକୁ ଅନ୍ଧାରଘର ଭିତରେଣ ଥୋଇ
ଚକ୍ଷୁରେ ଦିଅନ୍ତି ଧୂଆଁ ଲଙ୍କା ଯେ ମିଶାଇ

ଯେଉଁ ପାପୀମାନେ ଲୋକେ ଅହାର ମାଗନ୍ତି
ତାହାଙ୍କର ଦେହ କାଟି ମୁଖରେ ଭରନ୍ତି ।
କାହାର ଦେହର ମାଂସ କାଟିଣ ଖୁଆନ୍ତି
ଖଙ୍କାର, ସିଙ୍ଘାଣି, ରେତ କାହା ମୁଖେ ଦ୍ୟନ୍ତି ।
କାହାର ନାକଭିତରେ ଜୋକ ଦ୍ୟନ୍ତି ନେଇ
ଅତ ଜୋରେ କା'ର ଦାନ୍ତ ଉପାଡ଼ନ୍ତି ଯାଇ ।
କେବଣ ପାପୀର ଜିହ୍ୱା ଛୁରିତ ଛେଦନ୍ତି
ତପତ ଅଙ୍ଗାରେ ନେଇ କାହାକୁ ଶୁଆନ୍ତି ।
କାହା ନାକ ଖୋଳଣି ମାରନ୍ତି ଲୌହକଳା
ଓଠାରନ୍ତି ଦଉଡ଼ିରେ ବାନ୍ଧି କାହା ଗଳା ।
କାହା ଦେହ ହାଣି ଲୁଣ ବେସର ଯେ ଦେଇ
ତପତ ଲବଣି ଜଳ କେ ପୁଣ ଢାଳଇ ।
ଏହିରୂପେ ବହୁଦୁଃଖ ଦଅନ୍ତି ପାପୀକୁ
ସେ ଦୁଃଖ ବର୍ଣ୍ଣିନେ ଫାଟି ଯାଉଅଛି ବୁକୁ ।
କି ପାପେ କି ଦଣ୍ଡ ତାଙ୍କୁ ଦଏ ଜମ୍ଭୂରାଣ
କହିବ ସେହି କଥା ମୁଁ କର ହେ ଶ୍ରବଣ ।
ଶତେ ପାପ ଅର୍ଜିଲେ ଚରଣେ ଖୋଟା ଦଣ୍ଡ
ସହସ୍ରେକ ପାପରେ ଯେ ବନ୍ଧ ହୁଏ ତୁଣ୍ଡ ।
ଲକ୍ଷେ ପାପ କଲେ କୁଷ୍ଠ ବ୍ୟାଧି ହୁଏ ଗଲ
ଅଇବତେ ପାପ କଲେ କର୍ଣ୍ଣ ହୁଏ କାଲ ।
ଲକ୍ଷେକ ପାପ କଲେ ପ୍ରାଣୀ ହୁଏ ଭିକ୍ଷୁ
କୋଟିଏ ପାପରେ ଅନ୍ଧ ହୁଏ ବେନି ଚକ୍ଷୁ ।
ବେନି କୋଟି ପାପ କଲେ ଅପୁର୍ବିକ ହୋଇ
ସେ ପ୍ରାଣୀମାନଙ୍କ ମୁଖ ପ୍ରଭାତୁଁ ନ ଚାହିଁ ।

———

# କର୍ମଫଳ

ପରଲୋକ ଓ ପରମେଶ୍ୱର ନେଇ ଧର୍ମ । ପୂର୍ବ ଓ ପରଜନ୍ମ ଜନ୍ମାନ୍ତର ନ ଥିଲେ ମାନବର ଧର୍ମ କରିବା କ'ଣ ଦରକାର ପଡ଼ନ୍ତା ? ପୁଣ୍ୟ ସଞ୍ଚୟ କରିବାକୁ ଆଗ୍ରହ ଓ ପାପ କରିବାକୁ ଭୟ କରିବାର କାରଣ ବା କ'ଣ ଥାଆନ୍ତା ? ଏତେ ତପଜପର ବ୍ୟବସ୍ଥା କ'ଣ ଦରକାର ହୁଅନ୍ତା ? ହିନ୍ଦୁମାନେ ପ୍ରାୟ ସମସ୍ତେ ପରଜନ୍ମ ଓ ପରଲୋକ ବିଶ୍ୱାସ କରନ୍ତି; କିନ୍ତୁ କେତେକ ଲୋକ ଏହାକୁ କବି-କଳ୍ପନା ବୋଲି ଭାବନ୍ତି । ଏହା କେବଳ ପାଶ୍ଚାତ୍ୟ ଶିକ୍ଷା-ପ୍ରଭାବରୁ ଏପରି ଧାରଣା ଜନ୍ମିଛି । ଯଦି ଆମ୍ଭମାନଙ୍କ ହୃଦୟରେ ପିଲାଟିଦିନୁ ସ୍ୱର୍ଗସୁଖ, ନରକଯନ୍ତ୍ରଣା ଓ ଜନ୍ମାନ୍ତର ବିଷୟମାନ ଭଲଭାବରେ ଦୃଢ଼ ଧାରଣା ହୋଇଯାଇଥାନ୍ତା, ତାହା-ହେଲେ ଆମ୍ଭେମାନେ କେବେହେଲେ ଅସତ୍ କର୍ମ କରିବାକୁ ପ୍ରୟାସୀ ହୁଅନ୍ତେ ନାହିଁ । ପରକାଳ ଓ ପରଲୋକ ସମ୍ବନ୍ଧରେ ଗବେଷଣା କରିବାଦ୍ୱାରା ମାନବ ତା'ର ଗତିପଥ ଉଜ୍ଜ୍ୱଳ କରି-ଦିଏ । ଏହିସବୁ ବିଷୟରେ ଚର୍ଚ୍ଚାର ନିହାତି ଦରକାର । ଚର୍ଚ୍ଚା-ଦ୍ୱାରା ଭାବ ବିଜ୍ଞମୟ ହୁଏ ।

ସନାତନ ଧର୍ମର ପ୍ରଧାନ ଓ ପ୍ରଥମ ଭିତ୍ତି ହେଲା ଜନ୍ମାନ୍ତର-ବାଦ ଓ ପରଲୋକରେ ବିଶ୍ୱାସ । ଭଗବାନଙ୍କୁ ନ ମାନିଲେ କିଛି କ୍ଷତି ନ ହୋଇପାରେ; କିନ୍ତୁ ଜନ୍ମାନ୍ତର ସ୍ୱୀକାର ନ କଲେ ଅର୍ଥାତ୍ ପରଲୋକର ଅବିଶ୍ୱାସ କଲେ, ଅଉ ରହିଲା କ'ଣ ? ଜନ୍ମାନ୍ତର ସ୍ୱୀକାର ନ କଲେ ମାନବ କିପରି ଜାତ ହୁଏ, ତାହା ବୁଝିବା ବଡ଼ କଷ୍ଟ ଓ ଆଶ୍ଚର୍ଯ୍ୟର ବିଷୟ । ସାଧାରଣତଃ ଦେଖାଯାଏ ମାନବ ସୁଖଦୁଃଖ ଭୋଗ କରେ, ଅଳ୍ପାୟୁ ହୁଏ ଓ ଦୀର୍ଘାୟୁ ହୁଏ ।

ଇତ୍ୟାଦି ବହୁ କଥା । ଏତେ ବିଭିନ୍ନତା, ଏତେ ତାରତମ୍ୟର କାରଣ କ'ଣ ? ଏହାର କାରଣ—କର୍ମଫଳ ।

କର୍ମଫଳ, ଜନ୍ମାନ୍ତର ଓ ପରଲୋକ ନେଇ ସନାତନ ଧର୍ମର ସୂତ୍ରପାତ । ଯେ ଯେପରି କର୍ମ କରିବ ତଦନୁଯାୟୀ ଫଳ ପାଇବ, ପରଲୋକରେ ସୁଖ ଓ ଦୁଃଖ ପାଇବ ଏବଂ ଇହଲୋକରେ ଜାତି ଆୟୁ ଓ ଭୋଗନେଇ ଜନ୍ମଗ୍ରହଣ କରିବ । ଏହିଭାବରେ ଚକ୍ରାକାରରେ ଜନ୍ମମୃତ୍ୟୁ, ପରଲୋକ ସୁଖ-ଦୁଃଖ ପ୍ରଭୃତିର ଅବର୍ତ୍ତନର ଲୀଳା ଚାଲିଅଛି ।

ଆଜି ଯାହା କରିବ, କାଲି ତାହା ଭୋଗ କରିବ ଏବଂ କାଲିର କାର୍ଯ୍ୟ ତହିଁ ଆରଦିନ ଭୋଗ କରିବାକୁ ହେବ । କେବଳ ତାହା ନୁହେଁ, ଏ ଜନ୍ମର କାର୍ଯ୍ୟ ପରଜନ୍ମରେ ଭୋଗ କରିବାକୁ ହେବ—ଏ ଚକ୍ରଟି ଏହିପରି ଭାବରେ ଚାଲିଛି । କେବଳ ନିଜେ ନୁହେଁ, ନିଜର ପୁତ୍ର ପୌତ୍ର, ପ୍ରପୌତ୍ରମାନଙ୍କୁ ମଧ୍ୟ ଏହି କର୍ମଫଳ ଭୋଗ କରିବାକୁ ହେବ ବୋଲି ମନୁସ୍ମୃତି ଓ ମହାଭାରତରେ ଉକ୍ତ ହୋଇଛି । ( ମନୁ ୪-୧୭୩ ମ.ଭା ଆ-୮୦-୩)

ଅତଏବ ଏଥିରୁ ସ୍ପଷ୍ଟ ବୁଝାଯାଏ ଯେ, ଜନ୍ମାନ୍ତର ସତ୍ୟ । ତାହା ନ ହୋଇଥିଲେ ଗୁଣୀ, ଅଗୁଣୀ, ରାଜା, ମନ୍ତ୍ରୀ, ନେତା, ବକ୍ତା, ଧନୀ, ଦରିଦ୍ର, କବି, ପଣ୍ଡିତ, ସାଧୁ, ଅସାଧୁ, ଶଠ ଓ ଦୁର୍ବୃତ୍ତପ୍ରଭୃତି ଏବଂ ପଶୁପକ୍ଷୀ ଆଦି ଏତେ ଶ୍ରେଣୀବିଭାଗ କଦାପି ଦେଖା ଯାଉ ନ ଥାନ୍ତା । ଅର୍ଥାତ୍ ଜୀବ-ଜଗତରେ ଜାତିର ଶ୍ରେଣୀ-ବିଭାଗ ହିଁ ପୂର୍ବଜନ୍ମ କର୍ମର ଅବତାର ବୋଲି ଅନୁମିତ ହୁଏ ।

ଏହି ବାକ୍ୟରୁ ଅନୁମିତ ହୁଏ ପର୍ବଜନ୍ମ ଓ ତା'ର ପୁଣି ଜନ୍ମାନ୍ତର ଅଛି । ତେଣୁ ପୂର୍ବ ଜନ୍ମରେ ସାଧୁମାର୍ଗରେ ଅନୁଶୀଳିତ

ହୋଇଥିବା ସୁଖ ଦୁଃଖ ଓ ବିଦ୍ୟାଦି ସତ୍‌ଫଳ ଇହଜନ୍ମରେ ସୁଦ୍ଧା ଆଗେ ଆଗେ ମିଳିଥାଏ ।

ଲୋକ ଇହଜନ୍ମରେ ଧର୍ମ-କର୍ମ ଓ ସାଧୁମାର୍ଗରେ ରହି ଈଶ୍ୱରଚିନ୍ତାପୂର୍ବକ ନାନା ମହତ୍ କାର୍ଯ୍ୟ କଲେ ସେ ଇହଲୋକେ ସ୍ୱର୍ଗତୁଲ୍ୟ ସୁଖ ଭୋଗ କରି ପୁଣି ଉଚ୍ଚଗାମୀ ହୁଏ । ତାହା ନ କରି ଅସାଧୁ, ଅନ୍ୟାୟ ଓ ଅଧର୍ମ କର୍ମ ଆଚରଣ କଲେ ତା'ର କ୍ରମଶଃ ଅଧିକରୁ ଅଧିକ ଅଧୋଗତି ହୁଏ । ଅର୍ଥାତ୍ ସେ ନାନା ନୀଚ ଓ ତିର୍ଯ୍ୟକ୍ ଯୋନିରେ ଜନ୍ମ ଗ୍ରହଣ କରି କ୍ଳେଶମୟ ନରକ ଭୋଗ କରେ । ଅଧାର୍ମିକର ଶାସ୍ତି ଓ ଶିକ୍ଷାପାଇଁ ଏବଂ ଧାର୍ମିକର ଅସୀମ ସୁଖ ଶାନ୍ତି ଲାଭ ନିମନ୍ତେ ଜନ୍ମାନ୍ତରର ସୃଷ୍ଟି ବୋଲି ଉପର୍ଯ୍ୟୁକ୍ତ ବାକ୍ୟାବଳୀରୁ ବିଶ୍ୱାସ କରାଯାଏ ।

ଦୟାମୟ ଈଶ୍ୱରଙ୍କର ଅପାର କୃପାରୁ କୋଟି କୋଟି ପୁଣ୍ୟ ଉପାର୍ଜନ କରି ଜୀବ ସୁଦୁର୍ଲ୍ଲଭ ମାନବଜୀବନ ଲାଭ କରେ ; କଥା ଅଛି—"ନରତ୍ୱଂ ଦୁର୍ଲ୍ଲଭଂ ଲୋକେ

ବିଦ୍ୟା ତତ୍ର ସୁଦୁର୍ଲ୍ଲଭା" ।

ଅର୍ଥାତ୍ ଦାନ, ଧ୍ୟାନ, ଦର୍ଶନ, ଶ୍ରବଣ, କଥନ; ସ୍ପର୍ଶନ, ଭ୍ରମଣ, ଜ୍ଞାନ, ସ୍ୱାଦୁଗ୍ରହଣ, ପ୍ରେମ, ସ୍ନେହ ଏବଂ ସୌଜନ୍ୟପ୍ରଭୃତି ସର୍ବସୁଖଭୋଗୀ ମାନବ ଜୀବନରେ ସତ୍ ଓ ମହତ୍ କାର୍ଯ୍ୟ ନ କରି ଯେ ନୃଶଂସ ଆତତାୟୀ, ତସ୍କର, ଶଠ, ଦୁର୍ବୃତ୍ତ, ଉତ୍କୋଚଗ୍ରାହୀ ପରସୁଖ-ଅସହିଷ୍ଣୁ ଓ ଦୁଃଶୀଳ ହୁଏ ସେ ଜନ୍ମାନ୍ତରରେ ଗୁରୁତର ପାପର ପରିଣାମ ହେତୁରୁ ମୂକ, ବଧିର, ଅନ୍ଧ, ଖଞ୍ଜ, କୁବ୍‌ଜ, ଜଡ଼ ଓ ଦୀନ ହୁଏ; ଅଥବା ନାନା ହିଂସ୍ର ପ୍ରାଣୀଯୋନିରେ ଜନ୍ମଗ୍ରହଣ-କରେ ବୋଲି ଜୀବଜଗତର ପ୍ରଭେଦରୁ ଅନୁମିତ ହୁଏ । ଅତଏବ

ଜନ୍ମାନ୍ତର ଯେ ନିଶ୍ଚିତ ଓ ସତ୍ୟ ତାହାର ଦୈବ ଅର୍ଷ ବାଣୀରୁ ପ୍ରମାଣ ମିଳେ ।

ସହସ୍ର ଗାଈମଧ୍ୟରୁ ବାଛୁରୀ ଯେପରି ଅପଣା ମାଆକୁ ଚିହ୍ନି ନିଏ, ପୂର୍ବକୃତ କର୍ମଫଳ ସେହିପରି କର୍ତ୍ତା ପଛରେ ଲାଗିଥାଏ । ମୃତ୍ୟୁ ପରେ କେବଳ ଧର୍ମ ସଙ୍ଗରେ ଯାଏ, ଅନ୍ୟ ସବୁ ଶରୀର ସହିତ ନଷ୍ଟ ହୁଏ । —ମନୁ—

"ଯେଉଁ କର୍ମ ଲୋକ ପୂର୍ବରେ ଥାଏ କରି
ଜନ୍ମ ହେଲେ ସେ କର୍ମ ଭୁଞ୍ଜେ ଦଣ୍ଡଧାରୀ ।
ଦୁଃଖ ସୁଖରୁ ପୂର୍ବକର୍ମକୁ ଜାଣିବ
ଜ୍ଞାନର ଅଭ୍ୟାସରେ ବସି ଧନ ନେବ ।"

—ମହାଭାରତ—

କର୍ମାନୁସାରେ ଫଳଭୋଗ ହୋଇଥାଏ । ଏହି ନିୟମ କେବଳ ଏକ ବ୍ୟକ୍ତି ପ୍ରତି ପ୍ରଯୁଜ୍ୟ ନୁହେଁ—ପରିବାର, ଜାତି, ରାଷ୍ଟ୍ର, ଏପରି କି ସମସ୍ତ ଜଗତ ପକ୍ଷରେ ମଧ୍ୟ ଉପଯୋଗୀ । ପରିବାର, ଜାତି ଓ ଦେଶମଧ୍ୟରେ ପ୍ରତ୍ୟେକ ମନୁଷ୍ୟକୁ ବାସ କରିବାକୁ ହୁଏ । ସୁତରାଂ ପ୍ରତ୍ୟେକ ଯେ କେବଳ ନିଜକୃତ କର୍ମର ଫଳ ଭୋଗ କରିବେ, ତାହା ନୁହେଁ; ପାରିବାରିକ, ସାମାଜିକ କର୍ମଫଳ ମଧ୍ୟ ଅଂଶତଃ ଭୋଗ କରିବାକୁ ବାଧ୍ୟ ।

ପରମେଶ୍ୱର କାହାରି ପାପ ଗ୍ରହଣ କରନ୍ତି ନାହିଁ, ପୁଣ୍ୟ ମଧ୍ୟ ଗ୍ରହଣ କରନ୍ତି ନାହିଁ; କର୍ମର ସ୍ୱାଭାବିକ ଚକ୍ର ଚାଲୁଥିବାରୁ ପ୍ରାଣୀମାନଙ୍କୁ ନିଜ ନିଜ କର୍ମାନୁରୂପ ସୁଖ ଦୁଃଖ ଭୋଗିବାକୁ ହୁଏ ।

—ଭଗବଦ୍‌ଗୀତା—

ଏକାକୀ ଆସଇ ପ୍ରାଣୀ ଏ ମହୀ ମଣ୍ଡଳେ
ଶୂନ୍ୟ ହସ୍ତେ ଯାଏ ପୁଣି ଏଥୁଁ ଗଲାବେଳେ ।

ପଣ୍ଡିତହେ ଧନରତ୍ନ ଜାୟା ପୁତ୍ର ଯେତେ
ସକ୍ଷମ ନୁହନ୍ତି କେହି ଯିବାକୁ ସଙ୍ଗତେ ।
କେବଳ ଧରମ ଯାଏ ଧାର୍ମିକ ସଙ୍ଗରେ
ରକ୍ଷା କରେ ସଦା ତାକୁ ସର୍ବ ବିପଦରେ ।
ସ୍ୱର୍ଗ ନରକକୁ କେ ନୟନେ ଦେଖି ନାହିଁ
ଦାନ କରୁଥିବ ଧର୍ମଶାସ୍ତ୍ରକୁ ଅନାଇଁ ।
ଭାର୍ଯ୍ୟା, ପୁତ୍ର, ବନ୍ଧୁ ସର୍ବେ ସ୍ୱାର୍ଥସାଥୀ ପର
ଥାଆନ୍ତି ଅଟେ୍ର କରି ଜାଣି ହେ ଭଲ କରି ।
ଅନ୍ତିମକାଳେ କେହି ନୁହନ୍ତି କାହାର
ସେ କାଳେ ସାଥୀ ଏକା ସୁକୃତ ମନେକର ।
ନଦୀପ୍ରବାହରେ ଏକଠା କାଠି କୁଟା
ହୋଇ କ୍ଷଣକରେ ହୁଅଇ ପୁଣି ଫିଟା ।
ସେହିରୂପେ ପୁତ୍ର ଭାରିଯା-ସଙ୍ଗମ
କ୍ଷଣକେ ବ୍ୟର୍ଥ ହୋଇ ଯାଏ ହେ ନରୋତ୍ତମ ।
ଧନମାନ ଯଶ କେହି ନ ରହିବେ ଆଉ
ସମ୍ପଦ କାଳରେ ସିନା ରହିଥାନ୍ତି ସେହୁ ।
ବିପଦରେ ପଛଘୁଞ୍ଚା ଦିଅନ୍ତି ସକଳେ
ଧର୍ମ ଏକା ସାହା ହୋଇଥାଏ କାଳେ କାଳେ ।
ଶୁଭାଶୁଭ କରମ ବିନା ମଲେ ଆନ
ସଙ୍ଗ ନୁହଇଟି ଜାଣ ହେ ନନ୍ଦନ ।
ଅଷ୍ଟରତ୍ନ-ମଣ୍ଡିତ ପୁର କରିଥିଲେ
ନ ଯାଏଟି ସେ ଜାଣ ସଙ୍ଗତରେ ମଲେ ।
ଜନ୍ମ ଗ୍ରହ କରେ ଜୀବ ନିଜ କର୍ମଫଳେ
ଯୋନିଗତ ହୁଅନ୍ତି ଯେ କର୍ମ ଅନୁସାରେ ।

କେହୁ ଜନ୍ମେ ରାଜବଂଶେ କେହୁ ହୁଏ ହୀନ
କର୍ମଫଳେ କେହୁ ପାଏ ନରକ ଭୀଷଣ ।
କେ ବ୍ରାହ୍ମଣ କୁଳେ ଜନ୍ମ କେ ହୁଏ ଚଣ୍ଡାଳ
ଏକ ପିତାମାତାଙ୍କର ବିଭିନ୍ନ କୁମର ।
କେ ପଣ୍ଡିତ ହୁଏ କେହୁ ମୂର୍ଖ ଦୁରାଚାର
ରାଜସୁଖେ ମହାନନ୍ଦେ କଟେ କା'ର କାଳ ।
ରତ୍ନ-ପଲଙ୍କରେ କାକୁ ନ ଲାଗଇ ନିଦ
ପଥପାର୍ଶ୍ୱେ ଶୋଇଥାଏ କାହୁ କର୍ମ ମନ୍ଦ ।
କାହା ପଛେ ସହସ୍ର ଲୋକ ଥାଆନ୍ତି ଗୋଡ଼ାଇ
ମୃତ୍ୟୁକାଳେ କାହା ମୁଖ କେହୁ ଗୁହେଁ ନାହିଁ ।
ଧର୍ମକର୍ମେ ସଦା ରତ ଥାଏ କାର ଚିତ୍ତ
ଆକଣ୍ଠ ପାପରେ ମଗ୍ନ ହୁଏ କେ ହତତ ।
କେହୁ ଦିବ୍ୟ ଶାଳୀଅନ୍ନ ଫିଙ୍ଗଇ ଯେ ତଳେ
ବଗଡ଼ା ଅନ୍ନ ନ ମିଳେ କାହାକୁ ତ ଥରେ ।
ମୂର୍ଖ ହୋଇ ପାଇଥାଏ ସଂସାରେ ସମ୍ମାନ
କେ ପଣ୍ଡିତ ହୋଇ ମନେକରେ ବୃଥା ଜନ୍ମ ।
ଯାହାର ମରଣ ଲୋଡ଼ା ହୁଅଇ ଅଗ୍ରତ
ସେ ବଞ୍ଚି ରହଇ ବହୁ ଯୁଗ ପରଯନ୍ତ ।
ପର ଉପକାରୀ ଯା'ର ବଞ୍ଚିବା ସଫଳ
କରମଫଳେ ସେ ଆଗେ ଯାଏ ଯମଆଳ ।
ମହାସୁଖ ଶାନ୍ତିରେ କେ କାଟଇ ଜୀବନ
କା ଜୀବନ ଯାକ ଅଟେ ହାହାକାର ପୂର୍ଣ୍ଣ ।
କା ମୁଖ ଫିଟନ୍ତେ ରୁଣ୍ଡେ ହୋନ୍ତି ସସ୍ତ୍ରନତ
କେ ମୁଣ୍ଡ ପିଟି ଗଡ଼ିଲେ ହୋଇଣ ଅକୁଳ ।

ଜଳଟୋପେ ଦେବାପାଇଁ ନ ଥାଇ ସନ୍ତ୍ର କେହୁ
କେହୁ ପଥଘାଟେ ପଡ଼ି ମରଣ ବରଇ ।
କେହୁ ମଲେ ହାହାକାର କରଇ ଜଗତ
କା'ରମୁଣ୍ଡେ ଅଭିଶାପ ପଡ଼େ ଅବିରତ ।
କର୍ମଯୋଗେ ରାଜା ହୋଇପାରେ କ୍ଷୁଦ୍ର ନର
ବରିଷ୍ଠ ଲୋକ ଯେ କର୍ମେ ହୁଅଇ ଶୂକର ।
କର୍ମଯୋଗେ ଧନବନ୍ତ ଦରିଦ୍ର ହୁଅଇ
ଦରିଦ୍ର ଲୋକଙ୍କୁ ଧନ କର୍ମରେ ମିଳଇ ।
ରୂପଗୁଣଗୌରବ ହୁଏ କର୍ମଫଳେ
କର୍ମରେ ପଡ଼ଇ ଲୋକ ବ୍ୟାଧିର କବଳେ ।
କର୍ମରେ ହିଁ ଲୋକ ଶତ ଆୟୁଷ ଲଭଇ
ଅଥବା ଅଳ୍ପ ଆୟୁଷ ହୋଇଣ ମରଇ !
କର୍ମ ଅନୁସାରେ ଲୋକ ସୁନ୍ଦର ହୁଅଇ
କର୍ମଫଳେ ବ୍ୟାଧିଯୁକ୍ତ କୁତ୍ସିତ ହୁଅଇ ।
ବିକଳାଙ୍ଗ ହୁଏ କେହୁ ହୁଅଇ ସୁନ୍ଦର
ରୋଗହୀନ ପୁଣି ରୋଗୀ ହୁଏ କେଉଁ ନର ।
ଅପୁତ୍ରିକ ହୋଏ କେବା ପୁତ୍ରବାନ୍ ହୁଏ
ଅନ୍ଧ ବଧିର ହୋଇ କେ କଷ୍ଟ ଭୋଗୁଥାଏ ।
ପାତକୀ ହୁଅଇ ଲୋକ ନିଜ କର୍ମଫଳେ
ପୁଣି ଧର୍ମ ଉପାର୍ଜନ କରଇ ସେ ହେଲେ ।
କର୍ମରେ ବୈକୁଣ୍ଠପୁରେ ହୁଅଇ ନିବାସ
ନରକ ଭୋଗ ହୁଅଇ କର୍ମରେ ଅବଶ୍ୟ ।
କର୍ମରେ ଉତ୍ତମ ଭାର୍ଯ୍ୟା ପୁତ୍ର ଲାଭ ହୁଏ
କୁତ୍ସିତ ଭାରିଯା ସୁତ କର୍ମେ ଘଟିଥାଏ ।

କର୍ମରେ ହୁଅଇ ଲୋକ ପୀରତଭାଜନ
ବନ୍ଧୁ କଣ୍ଟକ ହୁଅଇ କର୍ମରେ ଟି ଜାଣ ।
ବ୍ରାହ୍ମଣ, ଚଣ୍ଡାଳ, ମୂର୍ଖ, ଜ୍ଞାନୀ, ଦୁଃଖୀ, ଧନୀ
ଯୋଦ୍ଧା, ଋଷି କର୍ମଫଳେ ଥାନ୍ତି ସର୍ବେ ଜନ୍ମି ।
କର୍ମଫଳେ ରାଜା, ପ୍ରଜା, ପଣ୍ଡିତ, ଭିକାରି
ସକଳ କର୍ମର ଫଳ ଅଟଇ ଏପରି ।
କର୍ମେ ସେବ୍ୟ ସେବକ ଯେ ରଖିଥାଅ ମନେ
ଲୋକ ସେବା ପାଉଛନ୍ତି ପୂର୍ବ କର୍ମଗୁଣେ ।
କର୍ମେ ଦୋଳା ପରେ ଗଡ ମନୁଷ୍ୟ କନ୍ଧର
ଯେ କାନ୍ଧାଏ ସେହୁ ଭୋଗେ ତା'ର କର୍ମଫଳ ।
କେ ଘୋଡ଼ା ଚଢ଼ୁଅଛି କେ ଘୋଡ଼ା-ପରଡ଼ା
ଘୋଡ଼ା ବାଗ ଧରି ଆଗରେ କେ ହୋଏ ଛିଡ଼ା ।
ଦାତା, ଦାନୀ, ଗ୍ରହୀତା ଯେ ଦସ୍ୟୁକୁ, ନିଷ୍ଠୁର
ମାରେ କେ ବା ମାଡ଼ ଖାଏ ସର୍ବ କର୍ମଫଳ ।
ଦେବତା, ଅସୁର, ନର ପଶୁପକ୍ଷୀ ଯେତେ
ଏହୁ କର୍ମଫଳ ଭୋଗୁ ଅଛନ୍ତି ସମସ୍ତେ ।
ତୁଳୀତଳ୍ପେ ଶୋଇ କେହୁ ରାତି ଉଜାଗର
କେ ସୁଖେ ଶୟନ କରେ ପଥର ଉପର ।
କେହୁ କଟୁବାକ୍ୟ ଆନେ ଦେଉଥାଏ ଗାଳି
କେହୁ ସହୁଥାଏ ସର୍ବ ନିଜ କର୍ମ ବୋଲି ।
ଉତ୍ତମର୍ଣ୍ଣରୂପେ କେହୁ କରୁଥାଏ ଋଣ
ଅଧମର୍ଣ୍ଣ କେହୁ ନିନ୍ଦୁଥାଏ ନିଜ କର୍ମ ।
ସବୁ ତ କର୍ମର ଫଳ ଜାଣ ଗୋ ଭବାନୀ
ସଂସାରେ ଜନମ ହୋଇଛନ୍ତି ଯେତେ ପ୍ରାଣୀ ।''

—ଶିବ ପୁରାଣ—

କଳିକାଳରେ କଅଣ ଘଟିବ ତାହା ମହାତ୍ମା ତୁଳସୀ ଦାସ କହିଯାଇଥିଲେ :—

"ବ୍ରାହ୍ମଣାଦି ଚତୁର୍ବର୍ଣ୍ଣ ଓ ବ୍ରହ୍ମଚର୍ଯ୍ୟାଦି ଚତୁର ଆଶ୍ରମର ଧର୍ମ ଠିକ୍ ରହିବ ନାହିଁ । ବ୍ରାହ୍ମଣମାନେ ବେଦକୁ ଠକ ବ୍ୟବସାୟରେ ଲଗାଇବେ । ରାଜାମାନେ ବା ଶାସନକର୍ତ୍ତାଗଣ ପ୍ରଜାର ରକ୍ତ ଶୋଷଣ କରିବେ; କେହି ଶାସ୍ତ୍ର ଅନୁଶାସନ ମାନିବେ ନାହିଁ । ଯାହାକୁ ଯାହା ଭଲ ଲାଗିଲା ସେ ତାହା କରିବ । ଯେ ଗାଲବାଦୀ ଅର୍ଥାତ ବଡ଼ ପାଟିରେ କଥା କହିଲା—ସେ ହେବ ପଣ୍ଡିତ । ମିଥ୍ୟା-ବ୍ୟବସାୟୀ ଦାମ୍ଭିକମାନଙ୍କୁ ସମସ୍ତେ ସାଧୁ କହିବେ । ଯେ ଛଳେ ବଳେ, କୌଶଳେ ପରଧନ ହରଣ କରିବ ସେ ହେବ ଚତୁର । ଯେ ଦାମ୍ଭିକପଣରେ ପାଷଣ୍ଡ ବୃତ୍ତିରେ ନିଷ୍ଠା ରଖିବ, ସେ ହେବ ଆଚାରବନ୍ତ । ଯେ ମିଥ୍ୟା କହିବ ଓ ଥଟ୍ଟା ଉପହାସ କରିବ ସେ ଗୁଣବାନ୍ ବୋଲାଇବ । ଯେ ସଦାଚାର ଓ ବେଦମାର୍ଗ ତ୍ୟାଗ କଲା ସେ କଳିଯୁଗରେ ହେବ ଜ୍ଞାନୀ ଓ ବୈରାଗୀ । ଯାହାର ନଖ ଓ ବିଶାଳ ଜଟା ଦେଖାଗଲା ସେ କଳିଯୁଗରେ ହେବ ସିଦ୍ଧ ତପସ୍ୱୀ । ଯେ ଅଶୁଭ ଚିତାଭସ୍ମ ଓ ନର କପାଳ ଧାରଣ କଲା ଓ ଅଭକ୍ଷ ଭକ୍ଷଣ କରି ପାରିଲା ସେ କଳିଯୁଗରେ ସିଦ୍ଧପୁରୁଷ ବୋଲି ପୂଜା ପାଇବ । ଯେ ଅନ୍ୟର ଅପକାର କରିବା ଆଚରଣ କଲା ତାକୁ ଲୋକେ ବହୁତ ଗୌରବ ଓ ମାନ୍ୟ କରିବେ । ଯେ ମନରେ, ବାକ୍ୟରେ ଓ କର୍ମରେ ଲମ୍ପଟ ହେଲା ସେ ବକ୍ତା ବୋଲାଇବ । ସବୁ ମନୁଷ୍ୟ ନାରୀବଶ ହୋଇ ତାଙ୍କ ହାତରେ ମାଙ୍କଡ଼ ଭଳି ନାଚିବେ । ଶୂଦ୍ର ବ୍ରାହ୍ମଣକୁ ଜ୍ଞାନମାର୍ଗ ବା ଉପଦେଶ ଦେବେ ଓ ପଇତା ପକାଇ କୁତ୍ସିତଦାନ ଗ୍ରହଣ କରିବେ । ସବୁଲୋକ କାମ, ଲୋଭ ଓ

କ୍ରୋଧରେ ରତ ହେବେ । ଦେବତା, ବ୍ରାହ୍ମଣ, ଗୁରୁ ଓ ସାଧୁଙ୍କୁ କେହ୍ଲୁ ନ ମାନି ବରଂ ବିରୋଧ କରିବେ । ହତଭାଗିନୀ ରମଣୀଗଣ ସୁନ୍ଦର ଗୁଣବାନ ସ୍ୱାମୀଙ୍କୁ ଛାଡ଼ି ପର ପୁରୁଷଙ୍କୁ ମନ ବଳାଇବେ । ସୁହାଗିନୀ, ପତିବ୍ରତା ରମଣୀଗଣ ଭୂଷଣହୀନା ହେବେ; କିନ୍ତୁ ବିଧବାମାନେ ନୂତନ ନୂତନ ଶୃଙ୍ଗାରବେଶ ସାଜିବେ । କେତେ କୁଳବତୀ ସ୍ତ୍ରୀକୁ ଘରୁ ବାହାର କରିଦେଇ ପୋଇଲି ଛୋଟ ଜାତି ରମଣୀକୁ ଘରେ ନେଇ ରଖିବେ । ଲୋଭୀ ଗୁରୁ ଶିଷ୍ୟର ଦୁର୍ଗୁଣ ଦେଖି ଅନ୍ଧପରି ରହିବେ ବା ଦେଖିବେ ନାହିଁ ଓ ଶିଷ୍ୟ ଗୁରୁଙ୍କ ଉପଦେଶ ଶୁଣିବେ ନାହିଁ । ଓଲଟି ଗୁରୁର ଗୁରୁଗିରି ଯିବ । ପିତା ମାତା ପୁତ୍ରକୁ କେବଳ ପେଟପୋଷିବା ଧର୍ମ ଶିଖାଇବେ, ମାତ୍ର ପରମାର୍ଥ(ମୋକ୍ଷକଥା)ଶିକ୍ଷା ଦେବେ ନାହିଁ । ପରସ୍ତ୍ରୀ,ଲମ୍ପଟ,କପଟାଗୃହୀ, ମୋହ, ଦ୍ରୋହ ମମତାରେ ସମସ୍ତେ ଲିପ୍ତ ହୋଇ ଅପେ ନଷ୍ଟ ହେବେ ଓ ଅନ୍ୟକୁ ମଧ୍ୟ ନଷ୍ଟ କରିବେ । ବ୍ରାହ୍ମଣମାନେ ଲୋଭୀ କାମୀ, ଶଠ, ଆଗ୍ନିରହୀନ ହେବେ । ନୀଚ ଜାତି ତେଲି, କୁମ୍ଭାର, ଶବର, କୋହ୍ଲି; ମୁଣ୍ଡ ଲଣ୍ଡା କରି କେହ୍ଲୁ ବା ଜଟା ଓ ଦାଢ଼ି ବଢ଼ାଇ ସନ୍ନ୍ୟାସୀ ହୋଇଯିବେ ଓ ବ୍ରାହ୍ମଣଙ୍କୁ ପାଦପୂଜା କରାଇବେ । ସମସ୍ତେ ବର୍ଣ୍ଣସଙ୍କର ହେବେ । ଜାତିଭେଦ ବାଛିବିଚାର ରହିବ ନାହିଁ ।

—x—

# ବର୍ତ୍ତମାନ କଅଣ ଘଟିଲାଣି

(କବି ଯଦୁନାଥ ମହାପାତ୍ର, ଡେପୁଟି କଲେକ୍ଟର)

ସେ କାଳ କଥାକୁ ଏ କାଳ ହେଲା କେତେ ଅନ୍ତର
ପୂର୍ବକଥା ସବୁ ଶ୍ରବଣ ଛାଡ ହୁଏ ପଥର।
ପୂର୍ବକଥାମାନ ଗଲାଣି ଯୁଗ ଗଲା ଓଲଟି
ଦୃଷ୍ଟିକୋଣ ଲୋକମାନଙ୍କ ଏବେ ଗଲା ପାଲଟି ।
ପାଶ୍ଚାତ୍ୟ ସଂସ୍କୃତି, ସଭ୍ୟତା ଦେଶେ ଦେଲାଣି ଜାଳ
ଭାରତର କୃଷ୍ଟି ପଣ୍ଡିତ ଧରି ଗଲାଣି କାଳ।
ଜୀବନଧାରଣମାନ ଯେ ନିତ୍ୟ ଯାଉଛୁ ବଢ଼ି
ସବୁ ମିଳୁଅଛୁ ଏ କାଳେ ଅନ୍ନ ବସ୍ତ୍ରକୁ ଛାଡ଼ି ।
ଅନ୍ତଃସାରଶୂନ୍ୟ ହେଲେଣି ଯେତେ ପୁରୁଷ-ନାରୀ
ବସହୀନ ହେଲେ କଙ୍କଡା ଦିଶେ ଖୋଲ ଯେପରି ।
ନ ପୂରୁଣୁ ବିଂଶ ବରଷ ଚକ୍ଷୁ ଘେନେ ଚଷମା
ଟୋକାଙ୍କର କେଶଗୁଚ୍ଛରୁ ଛାଡ଼ିଯାଏ କାଳିମା ।
ଏ କାଳର ଚାଲିଚଳନ ଦେଖି ଘୂରିଏ ଶିର
ସ୍ୱେଚ୍ଛାଚାରୀ ସର୍ବେ ହେଲେଣି ଭୁଲି ଶାସ୍ତ୍ରବିଚାର ।
ଶିକ୍ଷିତା କବାଳ କେତେ ଯେ ହେଲେ ସ୍ୱେଚ୍ଛାଚାରିଣୀ
ସ୍ୱାମୀ ପଦ ବୋଲି ନ ମାନେ ଧରୁଛନ୍ତି ମାର୍ଜନୀ ।
ଦେଉଛନ୍ତି କଥା କଥାକେ 'ଇସ୍ତଫା'ର ଧମକ
'ମ୍ୟାରେଜ୍ ଅକ୍ଟ'ର ଦଫାଠା ବାରେ ଖୋଲି ହେ ଦେଖ ।
ଦାମ୍ପତ୍ୟ ଜୀବନ ହେଉଛି କ୍ରମେ ବଡ଼ ହୁଗୁଳା
ଜନମିବେ ବର୍ଣ୍ଣସଙ୍କର ହୋଇ ମେଳାକୁ ମେଳା ।

ଶିକ୍ଷିତା ରମଣୀ କେତେକ ଉତ୍କଳର ବେଉସା
ଧରି **Brief** ପାଇଁ ଡାକନ୍ତି 'ଅସ ଅସ ମଉସା' ।
**M B B S** ଉତ୍ତୀର୍ଣ୍ଣା କେତେ କେତେ ଯେ ନାରୀ
ଶଲ୍ୟଚିକିତ୍ସା ବେଉସା କରନ୍ତି ସେବା ଭାବ ପାସୋରି ।
ଶାସ୍ତ୍ର କହେ ନାରୀ ହୃଦୟ ଅଟେ ବଡ଼ କୋମଳ
କ୍ରନ୍ଦନ ନ ତା'ର ପାରିବ ଦେଲେ ଡେଢି ଖୋହଳ ।
ଦେଶ-ପ୍ରଗତିର ଏ ସବୁ ଅଟେ ଶୁଭ ଲକ୍ଷଣ,
ସ୍ୱାଧୀନତା ଲଭେ ହେଲେଣି ଏବେ ସର୍ବେ ସମାନ ।
ସେ କାଳରେ 'ଜନ୍ମ-ନିରୋଧ' କେବେ ନ ଥିଲା ଶୁଣା
ଏବେ ଏଥିପାଇଁ ଖଞ୍ଜା ଯେ କେତେ କେତେ କର୍ମକଣା ।
କେନ୍ଦ୍ରେ କେନ୍ଦ୍ରେ ଖୋଲାଯାଉଛି, ଶତ ଶତ **'Clinic'**
ଜନ୍ମନିୟନ୍ତ୍ରଣ କରିବେ ନାରୀମାନଙ୍କୁ ଡାକି ।
ନାରୀ କାହିଁ ଏକା ଭୋଗିବେ ଏବେ ଗର୍ଭଯନ୍ତ୍ରଣା
ପୁରୁଷଙ୍କୁ କ୍ଲୀବ କଲେ ଯେ ହେବ ଦେଶଟା ସୁନା ।
ବାର୍ଦ୍ଧକ୍ୟାଳୟକୁ ଧାବନ୍ତି କେତେ କେତେ ରମଣୀ
ଖୋରାକ-ପୋଷାକ ନେବାକୁ ସ୍ୱାମୀଠାରୁ ଯେ ଟାଣି ।
ସେ କାଳର ସ୍ତ୍ରୀ ଥିଲେ ଯେ ଲଜ୍ଜାବତୀ ସୁଶୀଳା
ଡେଲକା ମାରୁଛି ଦେଖିଣ ତାଙ୍କ ଅଦ୍ଭୁତ ଲୀଳା ।
ଧିକ ଧିକ ବଡ଼ ପାଠକୁ ଧିକ ଏହି କାଳକୁ
ଟାଣି ନେଉଅଛି ଅଲକ୍ଷ୍ୟେ ନୀଚ ପଶୁ ସ୍ତରକୁ ।
ସ୍ୱାର୍ଥକୀଟ ହୃଦେ ପ୍ରବେଶି ତାକୁ ଦେଉଛି ଝୁଣି
ପରସ୍ପରେ ସ୍ନେହ ମମତା କମି ଯାଉଛି ପୁଣି ।
ସୁଖ ଶାନ୍ତି ଆଉ ସୁସ୍ଥତା ଗଲା କୁଆଡ଼େ ଚାଲି
ବାହାରେ ଚହଟ, ଶରୀରଟି ଭିତରଟା ଯେ ଖାଲି ।
ଦେଶ-ପ୍ରଗତିର ଏ ସବୁ ଅଟେ ଶୁଭ ଲକ୍ଷଣ
ସ୍ୱାଧୀନତା ଲଭେ ହେଲେଣି ଏବେ ସର୍ବେ ସମାନ ।

## କବି ଡକ୍‌ଟର ଭିକାରିଚରଣ ପଟ୍ଟନାୟକଙ୍କ ଭାଷାରେ

ଈଶ୍ୱରଙ୍କୁ ଡର ନାହିଁ ତ ଆଜି,
ତାଙ୍କର ଭିତରୁ କେତେ ମହେଶ୍ୱର
ଫୁଟି ଉଠୁଛନ୍ତି କହୁଁ ନ ଗୃହୁଁ ।
ଫନ୍ଦରେ ଯେହ୍ନ ଯେଡ଼େ ପ୍ରଖର,
ସେହି ତ ମାଡ଼ି ବସେ ଶିଖର
ଥିଲା ମୁନିବଙ୍କୁ ଭୃତ୍ୟଙ୍କ ଡର
ସେତକ ଏଣିକି ଗଲାଣି ଓଲଟି
ଡର ବଢ଼ିଲଣି ମୁନିବରଙ୍କର !
ନ ଡରନ୍ତି ଏବେ ଗୁରୁଙ୍କୁ ଚାଟ
ପଦକ କଥାକୁ ଯୁକ୍ତି ମାତପଦ
ଶୁଣି ଶୁଣି ଗୁରୁ ହୁଅନ୍ତି କାଠ
ନାହିଁ ତ ଆଜି ହାତରେ ଛାଟ
[illegible]ଟା ଘାଟ, ଓଲଟା ବାଟ ।
ମିଣିପଙ୍କୁ ଡର ମାଇପଙ୍କର
ଥିଲା ଏତେକାଳ ଆଜି ନ ରହିବ
କହିବା କାହିଁ ଯା ଅଛି ମାତର
ସେତକ ଉଡ଼ିଯିବ ଏଥର
ନାରୀଙ୍କ ଜୋର ହେବ ପ୍ରଖର ।
ଆହାରଭିତରେ ବିଷ ମିଶାଇ
ବଙ୍କୁଚନ୍ଦ୍ର ଜନ କଣ୍ଠୁଚନ୍ଦ୍ର ଜନ
ନ୍ୟାୟର ନମୁନା ଦେଖ ତା ଚାହିଁ
ଡର ତ ଉଡ଼ିଗଲାଣି କାହିଁ
ନ୍ୟାୟକୁ କିଏ ଖୋଜୁଛି କାହିଁ ।

—*—

# ସମାଜ ନୀତି

## ପିତା-ମାତାଙ୍କର ଅର୍ଚ୍ଚନା

"ପିତା-ମାତା ଏ ମରତେ ଜୀବନ୍ତ ଦେବତା
ଏ ପିଣ୍ଡ ଖଣ୍ଡର ମୂଳେ ଅଛନ୍ତି କରତା ।
ସହ୍ୟ କେତେ ଦୁଃଖ କଷ୍ଟ ବାଲ୍ୟତ କାଳରେ
କୋଳରେ ଖେଳାଇ ଅତି ଗେଲବସରରେ ।
ନିଜ ଦେହୁଁ ରକ୍ତକଣା ବିନ୍ଦୁ ବିନ୍ଦୁ କରି
ପୁତ୍ର ସୁଖ ଶାନ୍ତି-ଅର୍ଥେ କର୍ମ ଥାନ୍ତି କରି ।"

—ଗରୁଡ଼ ପୁରାଣ—

"ଉପାଧ୍ୟାୟଠାରୁ ଆଚାର୍ଯ୍ୟ ଦଶଗୁଣ ବଡ଼
ପିତା ଶହେ ଗୁଣ ବଡ଼, ପୁଣି ମାତା ହଜାର ଗୁଣବଡ଼,
ଯଦି ସେ ଶିକ୍ଷିତା ବିଦୁଷୀ ହୋଇଥାଏ ।"

—ମନୁ—

"ଆପଣା ପିତା-ମାତାଙ୍କୁ ସମାଦର କର,
ସେଥିରେ ତୁମ୍ଭର ମଙ୍ଗଳ ହେବ,
ଅଉ ତୁମ୍ଭେ ପୃଥିବୀରେ ଦୀର୍ଘାୟୁ ହେବ ।"

—ବାଇବେଲ—

"ପିତା-ମାତା ଗୁରୁଙ୍କୁ ପୂଜା ଯେ କରଇ
ପ୍ରଜାପତି ମହୀ, ବ୍ରହ୍ମାଙ୍କୁ ସେ ପୂଜଇ ।"

—ମହାଭାରତ—

ପିତାଙ୍କୁ ଯେବଣ ପୁତ୍ର କରଇଛି ଦ୍ୱେଷ
ପିତାର ବଚନାକୁ ଯେ ମନେ ପାଏ ତ୍ରାସ ।
ପିତାର ସନ୍ତୋଷେ ଯେହୁ ପୁତ୍ର ନ ପୋଷଇ
ସେ ପୁତ୍ରଟି ଜନ୍ମେ ଜନ୍ମେ ଦରିଦ୍ର ହୁଅଇ ।

———

# ଗୋ ମାହାତ୍ମ୍ୟ

ଗାଭୀ ବିଶ୍ୱର ଜନନୀ । ଗାଭୀ ହିଁ, ବିଶ୍ୱର ଆଦିମାତା କହିଲେ ଅତ୍ୟୁକ୍ତି ହେବ ନାହିଁ । ସେ ସୃଷ୍ଟି ପାଳନୀ ସଂରକ୍ଷଣୀ ଶକ୍ତି ଧେନୁ ପୃଥିବୀପୃଷ୍ଠରେ ଅବତୀର୍ଣ୍ଣା । ଗୋଦୁଗ୍ଧ ମୃତସଞ୍ଜୀବନୀ ତୁଲ୍ୟ । ଗାଭୀର ମଙ୍ଗଳରେ ଦେଶର ଓ ଜାତିର ମଙ୍ଗଳ ।

ଗୋରୁ ଦେହର ବିଭିନ୍ନ ଅଂଶବିଶେଷରେ ତେତିଶ କୋଟି ଦେବତା ବାସ କରନ୍ତି ବୋଲି ହିନ୍ଦୁର ଦୃଢ଼ ବିଶ୍ୱାସ ।

ଗୋରୁର ଚକ୍ଷୁରେ ଚନ୍ଦ୍ର ସୂର୍ଯ୍ୟ, କଣ୍ଠଦେଶରେ ବିଷ୍ଣୁ, ଗଣ୍ଡସ୍ଥଳରେ ସରସ୍ୱତୀ, ଉଦରରେ ପୃଥ୍ୱୀ ଦେବୀ ବାସ କରନ୍ତି । ସ୍ତନରେ ଅମୃତାଦି ସପ୍ତସମୁଦ୍ର ଓ ମୂତ୍ରରେ ଗଙ୍ଗାଦି ନଦୀସମୂହ ପ୍ରବାହିତ ।

ଯେଉଁ ଗୃହ ଗାଭୀଶୂନ୍ୟ, ଯେଉଁଠାରେ ଗୋ-ସେବା ନାହିଁ ସେଠାରେ ସମସ୍ତ ଐଶ୍ୱର୍ଯ୍ୟ ନିଷ୍ଫଳ ଏବଂ ସମସ୍ତ ପୁଣ୍ୟ ବିଫଳ ବୋଲି ଶାସ୍ତ୍ରରେ ଉକ୍ତି ଅଛି । —ବସନ୍ତତିଲକ—

ସମସ୍ତ ଦେବ ଓ ଦେବୀ ଆରାଧନା, ସମସ୍ତ ଗ୍ରହ ନକ୍ଷତ୍ର ପୂଜା ଓ ସମସ୍ତ ତୀର୍ଥାଦି ପର୍ଯ୍ୟଟନରେ ଯେଉଁ ଫଳ ମିଳେ, ଏକମାତ୍ର ଗୋ-ସେବାରେ ତତୋଽଧିକ ଫଳ ଲବ୍ଧ ହୋଇଥାଏ ।

ଶତ ଶମ୍ଭୁ ପୂଜି ଯେତେ ପୁଣ୍ୟ ହେବ
ଏକା ଗୋ-ସେବାରେ ସେତିକି ପାଇବ ।
ଗୋଜାତି ଜଗତ-କଲ୍ୟାଣ
ଗୋଜାତି ମାନବର ପ୍ରାଣ । —ବ୍ରହ୍ମବାକ୍ୟ—

ସବୁ ଜୀବ ଉପରେ ସେ ଅଟେ ସାରସ୍ୱତ
ତାହାର କ୍ଷୀର ଅଟଇ ପୃଥ୍ୱୀକି ଅମୃତ ।—ମହର୍ଷି ବଶିଷ୍ଠ

ସ୍ୱର୍ଗକୁ ଯିବାକୁ ଅଛି ସୋପାନ ଗାଈସେବା
ଆନ ପୁଣ୍ୟ ତହିଁ ସମାନ ନୋହେ ବାବା ।

—ବ୍ରହ୍ମାବଚନ—

ଗୋଷ୍ଠୀଗତ ରାଜନୀତିରେ ଭାଗ ନେଇ ରାଜନୈତିକ ସମାଲୋଚନା କରିବ ନାହିଁ ।

ସମସ୍ତ ଲୋକଙ୍କଠାରେ ମିତ୍ରତା ରଖିବାକୁ ଯତ୍ନବାନ୍ ହେବ । ସଜ୍ଜନ ଓ ଅସଜ୍ଜନ ଉଭୟ ଲୋକଙ୍କ ସହିତ ଭାବ ରଖିଥିବ ।

## କେଉଁମାନଙ୍କୁ ଅବଜ୍ଞା (ତାଚ୍ଛଲ୍ୟ) କରିବ ନାହିଁ

ଶାସନ-କର୍ତ୍ତା, ହାକିମ, ଅନ୍ନଦାତା, ସନ୍ନ୍ୟାସୀ, ସର୍ପ, କ୍ଷତ୍ରିୟ, ଜ୍ଞାତି ଓ ଅଗ୍ନି ଏମାନଙ୍କୁ ଅବଜ୍ଞା ବା ହେୟଜ୍ଞାନ କରିବ ନାହିଁ। କାରଣ ବନାଗ୍ନିର ଦାହିକା ଶକ୍ତି ପରି ଏମାନଙ୍କର ଦାହିକା ଶକ୍ତି (ପୋଡ଼ି ଦେବା ଶକ୍ତି) ପ୍ରଚ୍ଛନ୍ନଭାବରେ ଥାଏ ।

ବ୍ରାହ୍ମଣ କଳା—ଭଣ୍ଡାରି କାଲ
ପଠାଣ ଟେରି – ଭୃତ୍ୟ ମଗରି
ହାକିମ ଟେଢ଼ା—ପୁଲିସ ବାଲ
ବିଟପୀ ନାରୀ—ଗୋଦରି ଦାରି
ଗ୍ରାମ ଝାଉଁଟିରେ—ଏମାନଙ୍କୁ ସଦା ଡରି ।

## କେଉଁମାନଙ୍କ ପାଖରେ ଥିଲେ ବିପଦ ଅଛି

ବିଟପୀ ନାରୀ, ମୁଖରା ସ୍ତ୍ରୀ, ମୁହଁଖୋର ଚାକର, ଦୁର୍ଜନ, ଅର୍ଥଲୋଭୀ, ଶଠ ମିତ୍ର, ପେଟ, କାଷ୍ଟମୀ, ଶିର ରୁଗ୍ଣ, ଲାଞ୍ଚଖୋର, ଖଟୁଆ, ମିଛୁଆ, ଭସ୍ମାକ୍ତ,ଏମାନଙ୍କ ପାଖରେ ରହିଲେ ବିପଦ ପଡ଼ିବ ବୋଲି ଜାଣି ରଖିବ ।

## କେଉଁମାନଙ୍କୁ ବିଶ୍ୱାସ କରିବ ନାହିଁ

ଅର୍ଥହୀନ କ୍ଷତ୍ରିୟ, ନିଷ୍କର୍ମା ଯୁବକ, ଅସତୀ ସ୍ତ୍ରୀ, ବିବାଦୀ ଭାଇ, ଶଠ ମିତ୍ର, କୃପଣ ମୁନିବ, ଅବରଣୀୟ ମଧ୍ୟସ୍ଥ, ନିଜଗାଁ ମଶାଣି ଦୂର ଗାଁ ନଦୀ, ବିଷଧର ସର୍ପ ଏମାନଙ୍କୁ ବିଶ୍ୱାସ କରିବ ନାହିଁ ।

## କେଉଁମାନେ ହଠାତ୍ ବିପଦରେ ପଡ଼ନ୍ତି

ଅନୁଚିତ କର୍ମ କଲେ, ନିଜର ଜ୍ଞାତିମାନଙ୍କ ସହିତ ବିରୋଧ ଘଟିଲେ, କୌଣସି ପରାକ୍ରମୀ ଲୋକ ସହିତ ଶତ୍ରୁତା କଲେ, ଅନ୍ୟର ସ୍ତ୍ରୀ ସହିତ ପ୍ରେମରେ ପଡ଼ିଲେ, ଯେ କୌଣସି ଲୋକ ବିପଦରେ ପଡ଼େ ।

## କେଉଁମାନଙ୍କ ନିକଟରେ ସାବଧାନରେ ଚଳୁଥିବ

ରିପୁ, ରୋଗ, ଅହି (ସର୍ପ), ବହ୍ନି, ପାପ, ପ୍ରଭୁ
"ଏ ଷଡ଼ ପଦାର୍ଥେ ଭାଇ
ଗ୍ଲୋଟ ମଣି ମନେ ହେଲା ନ କରିବ
ସାବଧାନେ ଥିବ ରହି ।" —ତୁଳସୀଦାସ—

ନିଜର ସାମାନ୍ୟ କ୍ଷତି ହେଲେ ସୁଦ୍ଧା ସେଥିପାଇଁ କାହାର ସହିତ କଳି-ତକରାଳ ଓ ମାଲିମକଦ୍ଦମା କରିବ ନାହିଁ। ମହାତ୍ମା ତୁଳସୀଦାସ କହିଛନ୍ତି, "ଯେପରି ସାମାନ୍ୟ ନିଆଁ ଲାଗିଥିବା ବଳିତାଟିଏ ଗୃହ, ଗ୍ରାମ ଓ ସହରକୁ ଅଳ୍ପକ୍ଷଣ ମଧ୍ୟରେ ପୋଡ଼ି ପାଉଁଶରେ ପରିଣତ କରିଦିଏ, ସେହିପରି କଳହ ଓ ଶତ୍ରୁତା ସାମାନ୍ୟ ହେଲେହେଁ ଏହା ମନୁଷ୍ୟର ଓ ଜାତିର ଧ୍ୱଂସ ସାଧନ କରିଥାଏ ।"

ଦୁଇଜଣଙ୍କ କଳହରେ ଜଣକର ପକ୍ଷ ନେବ ନାହିଁ ।

ପତି-ପତ୍ନୀର କଳହରେ କିମ୍ବା ବାପ ପୁଅର କଳହରେ ସାକ୍ଷ୍ୟ ପ୍ରଦାନ କରିବ ନାହିଁ ।

ଭାର୍ଯ୍ୟା ଓ ପୁତ୍ର-କନ୍ୟାଙ୍କୁ କଟୁ କଥା କହିବ ନାହିଁ କି କଠିନ ଦଣ୍ଡ ଦେବ ନାହିଁ ।

କୌଣସି ଲୋକ ଆଗରେ ନିଜ ଶତ୍ରୁର ପରିଚୟ ଦେବ ନାହିଁ କି ନିଜର କାହାପ୍ରତି ଶତ୍ରୁତା ଥିବା କଥା ପ୍ରକାଶ କରିବ ନାହିଁ ।

### ଶତ୍ରୁ ସହିତ ଆଚରଣ ପଦ୍ଧତି

ପ୍ରତ୍ୟେକ ଜ୍ଞାନୀ ଲୋକ ନିଜର ଶତ୍ରୁକୁ ଭୟ କରି ଚଳିବା ଉଚିତ । ସମକକ୍ଷ ଶତ୍ରୁ ସହିତ ହଠାତ୍ ବଳି କଜିଆ, ମାଲିମକଦ୍ଦମା କିମ୍ବା ଯୁଦ୍ଧ କରିବ ନାହିଁ ।

"ପରାକ୍ରମଶାଳୀ ବଳିଷ୍ଠ ଶତ୍ରୁ ନିକଟରେ କେବେ ହେଲେ ପରାକ୍ରମ ଦେଖାଇବ ନାହିଁ ବା ତାହା ସହିତ ଭାଳ ପକାଇବ ନାହିଁ ।"

"ସର୍ପକୁ ଛୁଇଁଲାମାତ୍ରେ ସେ ଯେପରି ଫଣା ଉଠାଇ ଦଂଶନ କରିବାକୁ ଉଦ୍ୟତ ହୁଏ, ସେହିପରି ହେବନାହିଁ, କାରଣ ବେତପରି ନଇଁଗଲେ ବିପଦରୁ ରକ୍ଷା ପାଇବ, ମାତ୍ର ସର୍ପପରି ଦଂଶନ କଲେ ନିଜେ ଧ୍ୱଂସପ୍ରାପ୍ତ ହେବ ।

ଯେ ପର୍ଯ୍ୟନ୍ତ ନିଜର ବଳଠାରୁ ଶତ୍ରୁର ଅଧିକ ବଳ ଓ ପରାକ୍ରମ ବୋଲି ମନରେ ବିଶ୍ୱାସ ଥିବ, ସେତେଦିନ ପର୍ଯ୍ୟନ୍ତ ଶତ୍ରୁକୁ ନିଜ କାନ୍ଧରେ ବୋହୁଥିବ ।

ଯେତେବେଳେ ଜାଣିବ ଶତ୍ରୁ ନିର୍ବଳ ହୋଇଗଲା, ସହାୟଶୂନ୍ୟ ହୋଇଗଲା, ସେତେବେଳେ ମାଠିଆକୁ ପଥର ଚଟାଣ ଉପରେ

କରୁଥିଲା ପରି ଶତ୍ରୁକୁ କାନ୍ଧରୁ ତଳକୁ କରୁଥିଲା ଦେଇ ଗୋଡ଼ରେ ଦଳିଦେବ ।"

—ଶୁକ୍ରନୀତି—

## କେଉଁ ମାନଙ୍କ ସହିତ ଶତ୍ରୁତା କରିବ ନାହିଁ

"ଶୁଣି ମାରୀଚ ହୃଦୟେ କରଇ ବିଚାର
ଶସ୍ତ୍ର ଧରିଥିବା ଜନେ ନୁହେଁ ଉତ୍ତରିବାର ।
ମରମ ଯେ ଜାଣିଥିବ ତା'ରେ ଏଡ଼ି ନୁହେଁ
ପ୍ରଭୁ, ଶଠ, ଧନୀତୁଲେ ବିବାଦ ନ ଶୋହେ ।
ବୈଦ୍ୟ, ଭାଟ, କବି, ଗୁଣୀ ଏମାନଙ୍କ ତୁଲେ
ବିପଦ ଅଛି ଏ ନଅ ତୁଲେ ବାଦ କଲେ ।"

—ଜଗବନ୍ଧୁ-ତୁଳସୀ-ରାମାୟଣ—

ପୋଷ୍ଟମାଷ୍ଟର, ଗ୍ରାମ ଠାକୁରେ, ଅପୁତ୍ରିକା-ବିଧବା ନାରୀ, ସର୍ବହରା, ଯେଉଁମାନଙ୍କର ଏ ସଂସାରରେ କିଛି ନାହିଁ ଏବଂ ବାଲୁଙ୍ଗା ଘରପୋଡ଼ିଆ, ଛତରା, ଅତ୍ୟନ୍ତ କ୍ରୋଧୀ ଏମାନଙ୍କ ସହିତ ଶତ୍ରୁତା କରିବ ନାହିଁ । କାରଣ, ଏମାନଙ୍କ ସହିତ ଶତ୍ରୁତା କଲେ ତମ ଘର ପୋଡ଼ିଦେବେ, ତମ ପ୍ରାଣ ନେଇ ନେବେ ଓ ତୁମକୁ ମାଲି-ମକଦ୍ଦମାରେ ଅସ୍ତବ୍ୟସ୍ତ କରାଇଦେବେ ।

ଦୁର୍ଜନ ଲୋକକୁ ଆଶ୍ରୟ ଦେବ ନାହିଁ କିମ୍ବା ତାହାର ଆଶ୍ରୟରେ ରହିବ ନାହିଁ । ଦୁର୍ଜନ ଯଦ୍ୟପି ହସି ହସି ମିଠା କଥା କହେ ତଥାପି ସେଥିରେ ପ୍ରାଣ ଯିବାର ଆଶଙ୍କା ଅଛି ବୋଲି ମନେକରିବ ।

ମହାତ୍ମା ତୁଳସୀଦାସ କହନ୍ତି—ଦୁର୍ଜନର କୂଟ ଚକ୍ରରେ ବା ଜାଲରେ ପଡ଼ି କେହି ରକ୍ଷାପାଇବାର ସେ ଜାଣନ୍ତି ନାହିଁ ।

ବିଷଧର ସର୍ପ ଅପେକ୍ଷା ଦୁର୍ଜନ ଅଧିକ ଭୟଙ୍କର ।

ଅତ୍ୟନ୍ତ ଉତ୍ପୀଡ଼ିତ ହେଲେ ସୁଦ୍ଧା କାହାରିକୁ ତାହାର ମର୍ମକଥା କହି ତାକୁ ଗାଳି ଦେବ ନାହିଁ । ସେପରି କଲେ ତୁମ୍ଭେ ସଙ୍ଗେ ସଙ୍ଗେ ତାହାର ଫଳ ପାଇବ ଅର୍ଥାତ୍ ମାଡ଼ ଖାଇବ ।

ମର୍ମକଥା ବଳାବଳ ଗୃହର ଦୂଷଣ
ଏ ସବୁ ସନ୍ଧାନ ଜାଣେ ଆପଣାର ଜନ ।
ବନର ଅଗ୍ନିରେ ବନ ପୋଡ଼ଇ ଯେପରି ।
ଆତ୍ମୀୟ ହେଲେ ହେଁ ଶତ୍ରୁ ମଜାଏ ସେପରି ।
ଯେଉଁମାନେଣ୍ଟି ଜ୍ଞାତିଭେଦକୁ କରନ୍ତି
ରାଜାରେ ସ୍ତ୍ରୀ ପାଖରେ ଥିଲେ ସେ ଡରୁଥାନ୍ତି ।
ଦରପୋଡ଼ା କାଠର ପରି ଜ୍ଞାତିଏ ତ
ପୃଥକେ ଧୂମାୟିତ ଏକତ୍ରେ ପ୍ରଜ୍ୱଳିତ ।—ରାମାୟଣ—

## ସାବଧାନ-ବଡ଼ଲୋକ ଓ ହାକିମ

ବଡ଼ଲୋକ ଓ ଉପରପାହିଆ ହାକିମମାନଙ୍କୁ ସବୁବେଳେ ଡରିକରି ଚଳୁଥିବ ।

ବଡ଼ଲୋକ କିମ୍ବା ହାକିମମାନଙ୍କ ସହିତ ମିତ୍ରତା ଥିଲେ ମଧ୍ୟ କିମ୍ବା ସେମାନଙ୍କର ପ୍ରୀତିପାତ୍ର ହୋଇଥିଲେ ମଧ୍ୟ ହାତେ ମାପି ହାତେ ଗୁଣ୍ଡିଥିବ ।

ବଡ଼ଙ୍କର ପୀରତି—ବାଲିର ବାନ୍ଧ
କ୍ଷଣେ ଦଣ୍ଡ (ଦଉଡ଼ି) କ୍ଷଣେ ହାତେ ଗୁନ୍ଧ ।
"ରାଜା କିମ୍ବା ମନ୍ତ୍ରୀ କିମ୍ବା ବଡ଼ଲୋକଙ୍କର
ଦ୍ୱାରକୁ ନ ଯିବ ବିନା ଅଣାରେ ତାହାର
ଶ୍ୱାନ ଅଜ ପ୍ରହରୀ ଦରିଦ୍ର ଜନ ପାଇ
ଏ ଧରେ ପଣତ ସେ ଯେ ତର୍ଜିଆ ମାରଇ ।

ବଡଲୋକମାନଙ୍କ ସଙ୍ଗେ ସଙ୍ଗୀ ହୋଇ
ତାହାଙ୍କ ଲୁପ୍ତ ଧାଣ୍ଡେ ନ କହିବ କାହିଁ
କହିଲେ ନିକଟରେ ବାଜେ ଢେଙ୍କେ ଖଣ୍ଡା
ଡାକଇ ତାଙ୍କୁ ଯମ ଅସ୍ତ୍ର ଅରେ ଢେଣ୍ଡା"[୨] ।

—ଭୀଷ୍ମବଚନ—

ଘୋଡ଼ାର ପଛ ଓ ହାକିମଙ୍କ ଅଗ ଭଲ ନୁହେଁ—

ଯେଉଁ ଈର୍ଷଗ୍ରସ୍ତ ହାକିମଙ୍କର ବେଶି ପ୍ରିୟ-ପାତ୍ର ହେବାକୁ ଚେଷ୍ଟା କରେ ବା ହୁଏ—ସେ ସମୟରେ ନିଶ୍ଚୟ ଦଗା ପାଇବ ।

ହାକିମଙ୍କ ପ୍ରିୟ-ପାତ୍ର ହୋଇଥିଲେ ସୁଦ୍ଧା—ସେ ନ ଡାକିଲେ ତାଙ୍କ ପାଖକୁ ଘନ ଘନ ଯିବ ନାହିଁ ଓ ତାଙ୍କ ନ ପଚାରି ମନମୁତାବକ କିଛି କାମ କରିଯିବ ନାହିଁ ।

ସ୍ୱେଚ୍ଛାଗ୍ରସ୍ତ ମୁନିବର ସେବା କରିବା ଖଣ୍ଡାଧାର ଗ୍ରହିବା ସଙ୍ଗେ ସମାନ ।

## କେଉଁମାନଙ୍କୁ ଗୋପନୀୟ କଥା କହିବ ନାହିଁ

କ୍ରୋଧୀ, ନାସ୍ତିକ, ସ୍ତ୍ରୀ ଜାତି, ଲମ୍ପଟ, ଦସ୍ୟୁ, କୃତଘ୍ନ, ଆଳସ୍ୟପରାୟଣ ଓ ଭୀରୁ ଏମାନଙ୍କୁ ଗୋପନୀୟ କଥା କହିବ ନାହିଁ ।

## କେଉଁମାନଙ୍କ ସହିତ ବନ୍ଧୁତା ସ୍ଥାପନ କରିବ ନାହିଁ

ଅଭାବଗ୍ରସ୍ତ, ଅଳସୁଆ, ଖୋସାମଦିଆ, ଗୁଲୁଲିଆ, ମଦୁଆ, ଅଫିମଖୋର, ଗୁଲିଖୋର, ଗୁଣ୍ଡା, ଚୋର, ବିଳାସୀ, ବେଶ୍ୟାସକ୍ତ, ମୂର୍ଖ, ଠକ, ଲୋଭୀ ଓ ରୋଗୀମାନଙ୍କ ସହିତ ବନ୍ଧୁତା କଲେ ହଠାତ୍ ବିପଦରେ ପଡ଼ିଯିବ ।

———

# ସ୍ୱାସ୍ଥ୍ୟ ନୀତି

## ଆହାର ସମ୍ବନ୍ଧରେ ଭୀଷ୍ମ ମନୁଷ୍ୟମାନଙ୍କ ସତର୍କବାଣୀ ଶୁଣାଉ ଅଛନ୍ତି

ନିଜଙ୍କ କ୍ଷୁଧାକୁ ଚାରିଭାଗରେ ବିଭକ୍ତ କରି ଭୋଜନ କରିବା ଉଚିତ । ଦୁଇଭାଗ ଅନ୍ନଦ୍ୱାରା, ଏକଭାଗ ଜଳପାନଦ୍ୱାରା ଓ ଚତୁର୍ଥ ଭାଗ ବାୟୁ ସଞ୍ଚାଳନ ସକାଶେ ରଖିବ ।

ଅର୍ଦ୍ଧ ପାଦ ହୋଇ ଭୁଞ୍ଜଇ ଯେଉଁ ନର
ଶତେକ ବରଷ ଆୟୁ ବଢ଼ଇ ତାହାର ।
ଓଦା ଗୋଡ଼େ ଭୁଞ୍ଜିବ, ଓଦା ଗୋଡ଼ଟିରେ
ଶୋଇଲେ ମହାଦୋଷ ଥାଏ ଏ ମହୀରେ ।
ପର୍ଯ୍ୟୁଷିତ ଅନ୍ନ ନ କରିବଟି ଭୋଜନ
କଲେ ତହିଁରୁ ଟି ପାତକ ହୁଏ ଜାଣ ।
ଭୋଜନ କଲାବେଳେ ଶିର ନ ଛୁଇଁବ
ଛୁଇଁବ ଯେବେ ଆୟୁ ଊଣା ହୋଇଯିବ ।
ହାତରେ ଧରି ଲୁଣ ଭୋଜନ ଯେ କରେ
ତାକୁ ଜାଣିବ ଏ ମରିବ ନର୍କଠରେ ।
ଛତୁଆ ଦହି ରାତିରେ କେବେ ନ ଖାଇବ
ପାଣିଟିରେ ଧୂଆଇ ଥାଳିକି ରଖିବ ।
ଅନ୍ୟମନା ହୋଇ ଲିପ୍ତ ନୋହିବ ଭୋଜନେ
ଅବର ଯେ ନ ଭୁଞ୍ଜିବ ଜନାକୀର୍ଣ୍ଣ ସ୍ଥାନେ ।
ଲୋକଗହଳି ଜାଗାରେ ଖାଇବ ନାହିଁ ।
ହସି ହସି କରି ଖାଇବ ନାହିଁ ।
ଚାଲି ଚାଲି କରି ଖାଇବ ନାହିଁ,
କଥା କହି କହି ଖାଇବ ନାହିଁ ।

ରହୁ ରହୁ କରି ଖାଇବ ନାହିଁ
ବେଶିଗୁଡ଼ାଏ ଖାଇବ ନାହିଁ ।
କାହାରିକୁ ଜୋର କରି ବେଶି ଖୁଆଇବ ନାହିଁ ।
ଦିନରେ ଗୃହଅଗ୍ନିରୁ ବେଶି ଖାଇବ ନାହିଁ ।
ବେମାରିଆ ଗୋରୁର ଦୁଧ ଖାଇବ ନାହିଁ ।
ବାସି ଦୁଧ ଖାଇବ ନାହିଁ ।
ମୁଢ଼ିରେ ଘିଅ ମିଶାଇ ଖାଇଲେ ପାଣି ପିଇବ ନାହିଁ ।
ଶୁଖିଲା ଶାଗ ଖାଇବ ନାହିଁ ।
କୁହ୍ନା କାକୁଡ଼ି ଖାଇବ ନାହିଁ ।
ଜଲବକମ ବସି ନ ଥିବା ଦହି ଖାଇବ ନାହିଁ ।
କଂସା-ପାତ୍ରରେ ପଇଡ଼ପାଣି ପିଇବ ନାହିଁ ।
ମହୁ ଓ ଘିଅ ସମାନ ଭାଗରେ ଖାଇବ ନାହିଁ ।
ପଇଡ଼ ପାଣିରେ କର୍ପୂର ମିଶାଇ ପିଇବ ନାହିଁ ।
ତମ୍ବା ପାତ୍ରରେ ଘିଅ, ମହୁ ଓ ଦୁଧ ଥିଲେ ତାକୁ
ଖାଇବ ନାହିଁ ।
ଭୋଜନର ମଧ୍ୟ ଭାଗରେ ପାଣି ପିଇବ ।
ଶୋଷ ନ ଥିଲେ ପାଣି ପିଇବ ନାହିଁ ।
ଅଞ୍ଜଳିଦ୍ୱାରା ପାଣି ପିଇବ ନାହିଁ ।
ଲୁଗାରେ ଛାଣି ପାଣି ପିଇବ ।
ଖାଇସାରି ଦୌଡ଼ିବ ନାହିଁ । ଆହାର କରିସାରି
ଦୌଡ଼ିଲେ ମୃତ୍ୟୁ ତା ପଛେ ପଛେ ଦୌଡ଼ୁଥାଏ ।
ଖାଇସାରି ନିଆଁ ପୁଇଁବ ନାହିଁ ।
ନିଆଁରେ ପାଦ ଦୁଇଟିକୁ ଉତ୍ତପ୍ତ କରିବ ନାହିଁ ।

## ଭୀଷ୍ମ କହୁଛନ୍ତି—

ଅଗ୍ନି, ଗାଈ, ଦ୍ୱିଜେ ଅଇଁଠାହାତେ ଯାଇ
ନ ଛୁଇଁବ, ଛୁଇଁଲେ ପାପ ଯେ ବଢ଼ଇ ।
ସୂର୍ଯ୍ୟ, ଚନ୍ଦ୍ର, ନକ୍ଷତ୍ର ଏ ତିନିଙ୍କି ଉଚ୍ଛିଷ୍ଟ
ଭ୍ରଷ୍ଟ ହୋଇ ଗୃହିଁଲେ ଆୟୁ ହୁଏ ନଷ୍ଟ ।
ଭାଙ୍ଗିଯିବା ଖଟ ପିଢ଼ାରେ ନ ବସିବ
ବସିଲେ ଜାଣୁ ଜାଣୁ ଦୋଷ ଅରଜିବ ।
ସ୍ନାନ କଲା ଲୁଗା ଚୁପୁଡ଼ି ଝାଡ଼ିଦେଇ
ଘୋଡ଼ି ନୋହିବ ହେ ପାଣ୍ଡବ ନରସାଇଁ ।
ନିତ୍ୟରେ ଓଦା ଲୁଗା ପିନ୍ଧେ ଯେଉଁ ନର
ଦୋଷ ଘେନି ଆୟୁଷ ହାନି ହୁଏ ତା'ର ।
ପୂର୍ବ ଉତ୍ତର ଦିଗେ ମୁଖ କରି କ୍ଷୌର
ହେଲେ ଆୟୁଷ୍ମାନ ହୁଏ ଜାଣ ନର ।
କ୍ଷୌର ହୋଇ ଯେ ଜନ ନ କରଇ ସ୍ନାନ
ଆୟୁଷ ହାନି ହୁଏ ତା'ର ନିଶ୍ଚେ ଜାଣ ।
ସୂର୍ଯ୍ୟ, ଅଗ୍ନି, ଗାଈ ଗୃହିଁ ଯେ ମୂତଇ
ଅଳପକେ ଯାଇ ଯମକୁ ସେ ଭେଟଇ ।
ଦିବସରେ ଉତ୍ତର ରାତ୍ରରେ ଦକ୍ଷିଣ
ଆଡ଼କୁ ଗୃହିଁକରି ମୂତିବଟି ଜାଣ ।
ସନ୍ଧିକାଳ ନ ଯାପିବ ଦେଉଳେ, ଶ୍ମଶାନେ
ଚତୁଷ୍ପଦ ବନ୍ଧଭୂମି କ୍ଷମ୍ବା ଉପବନେ ।
ଏକାକୀ ପ୍ରବେଶ ଶୂନ୍ୟଗୃହେ ବା ଅରଣ୍ୟେ
ନ କରିବ ନର ମାନି ଏ ଆପ୍ତ ବଚନେ ।

ସୂର୍ଯ୍ୟଙ୍କର ଉଦୟୁ ଅସ୍ତକୁ ଚାହିଁଲେ
ଆୟୁଷ ହାନ ହୋଇଯାଏ ଜାଣ ଭଲେ ।
ପରର ବସ୍ତ୍ର ପିନ୍ଧ ପରର ପାଣ୍ଡୋଇ
ମାଡ଼ିକର ନ ଯିବ ଭୂମରେଟି କାହିଁ ।

ଦନ୍ତ ଦେଖାଇଲେ, ପରସ୍ରା ମାଡ଼ିଲେ, ଛିଙ୍କ ଆସିଲେ, ହାଇ ମାଡ଼ିଲେ, ବାନ୍ତି ଦେଖେଇଲେ, ଶୋକର ଉଦ୍ରେକ ହେଲେ, ନିଦ୍ରା ଆକର୍ଷଣ କଲେ ଏ ସବୁର ବେଗକୁ କଦାପି ବନ୍ଦ କରିବ ନାହିଁ । ଏ ନିୟମ ନ ମାନିଲେ ଏଥିରେ ସ୍ୱାସ୍ଥ୍ୟର ହାନି ଘଟେ ।

ଅତି ସାହସ, ଅତି ନିଦ୍ରା, ଅତି ଭୋଜନ ଓ ଅଧିକ ରାତି ଜାଗରଣ ଏ ସବୁ ପରିତ୍ୟାଗ କରିବ ।

ହସ୍ତୀ, ମହିଷ; ଗୋରୁ, ସର୍ପ, ତରବାରି-ଖେଳ ଓ ଦଙ୍ଗା-ହେଙ୍ଗାମା—ଏ ସବୁର ପାଖଦେଇ ଯିବ ନାହିଁ ।

ଉଚ୍ଚ ଶବ୍ଦ କରି ହସିବ ନାହିଁ ।

ପ୍ରଜ୍ୱଳିତ ଚିତାଗ୍ନି ଓ ପ୍ରଖର ଆଲୋକ ପ୍ରତି ଓ ପାପୀ ଲୋକର ମୁଖକୁ, ଅବର୍ଜନାପୂର୍ଣ୍ଣ ସ୍ଥାନକୁ, ଅପରର ନାରୀପ୍ରତି ଏକ ଦୃଷ୍ଟିରେ ଅନେଇ ରହିବ ନାହିଁ । ଜଳରେ ନିଜର ପ୍ରତିବିମ୍ବ ଦେଖିବ ନାହିଁ । ସର୍ବଦା ପାଦୁକା (ଜୋତା ବା କଠୋଉ) ବ୍ୟବହାର କରିବ । ନଖଦ୍ୱାରା ଭୂମିରେ ଗାର କାଟିବ ନାହିଁ । ନିଜ ଦେହରେ ବାଜା ବଜାଇବ ନାହିଁ ।

ଯାତାୟାତ ସମୟରେ ଆଗକୁ ଚାରିହାତ ଭୂମି ଭଲରୂପେ ଦେଖି ସାବଧାନ ହୋଇ ଚାଲିବ । ଘଡ଼ଘଡ଼ି ମାରୁଅଛି କିମ୍ବା ପ୍ରବଳ ବର୍ଷା ହେଉଅଛି କିମ୍ବା ବର୍ଷାର ଆଗମ ହେଉଅଛି ଏପରି ସମୟରେ ଘରୁ ବାହାରି କେଉଁଆଡ଼େ ଯିବ ନାହିଁ । ଜଳରେ ଛେପ, ଖଙ୍କାର, ବିଷ୍ଠା, ମୂତ୍ର ରେତଃ ଓ ଅଳିଆ ନିକ୍ଷେପ କରିବ

ନାହିଁ । ପ୍ରଖର ସ୍ରୋତା ନଦୀରେ ସନ୍ତରଣ କରିବ ନାହିଁ । କୁପଥ ବା ଅବାଟଦ୍ୱାରା ଗ୍ରାମ, ମନ୍ଦିର ବା ଘରେ ପ୍ରବେଶ କରିବ ନାହିଁ ।

ପତ୍ନୀ ରଜସ୍ୱଳା ହୋଇଲେ ଦିନ ଚାରି
ତ୍ୟାଗ ତାକୁ କରିବ ଧର୍ମକୁ ବିଚାରି ।
ଚତୁର୍ଥ ଦିବସରେ ରାତ୍ରିରେ ସଙ୍ଗମ
କଲେ ଦୋଷ ନାହିଁ ଶାସ୍ତ୍ରର ଏ ବିଧାନ ।
ଚତୁର୍ଦ୍ଦଶୀ, ଅମାବାସ୍ୟା, ପୂର୍ଣ୍ଣିମା, ଅଷ୍ଟମୀ
ସଂକ୍ରାନ୍ତି, ଏ ପଞ୍ଚଦିନେ ନୋହିବ ରତିଗାମୀ ।
ରମଣ କରିବାପାଇଁ ନ ଯିବ ଦିବସେ
ଗର୍ଭେ ପଡ଼ିଲେଟି ଶିଶୁ ଜନ୍ମେ ଦୈତ୍ୟ ଅଂଶେ ।
ଦୁହିତା ଜନମ ହେଲେ ହୁଅଇ ଦୋଚାରୀ
ପୁତ୍ର ଜନ୍ମ ହେଲେ ଭୋଗ କରେ ନୀଚ ନାରୀ ।
ଦିବସରେ ରମଣଟି ଅଟେ ବଡ଼ ଦୋଷ
ସୁରତ କଲା ଲୋକ ଯେ ହୁଏ ଅଳ୍ପାୟୁଷ ।
ପରସ୍ତ୍ରୀଠାକୁ ଗମନ ଯେହୁ କରେ
ବରଷ ଶତ ଆୟୁ ଦିନକେ ତେସ ସାରେ ।
ଉଲଗ୍ନ ହୋଇ ରାତି ଧରଣ ନବୀନା
ନ ଶୋଇବ କେବେହେଁ ହୋଇ କାମମନା ।
ଶ୍ରାଦ୍ଧ-ଦ୍ୱିଜ, ଶ୍ରାଦ୍ଧ-କରତା, ରତି କଲେ
ପ୍ରେତ ପିତୃମୁଖେ ପ୍ରାପତ ହୋଏ ଭଲେ ।
ଅବଶ୍ୟ ନର୍କ-ଯନ୍ତ୍ରଣା ତାଙ୍କପାଇଁ ଥୁଆ
ଅନ୍ୟ ପ୍ରକାର ଏଥିରେ ଶାସ୍ତ୍ରେ ନାହିଁ ରାହା ।
ପରସ୍ତ୍ରୀ-ନିରତ ବ୍ରହ୍ମସ୍ୱ ହରଣ
ବନ୍ଧ୍ୟାସ୍ତ୍ରୀ ମୈଥୁନ ସମାନ ଦୋଷ ଜାଣ ।

———

# ଆସନ୍ନ ମୃତ୍ୟୁର ଲକ୍ଷଣ

ଋଷି ସନତ୍‌କୁମାର କହୁଅଛନ୍ତି—

ବାମ ହସ୍ତ ଅନୁବ୍ରତେ ଥରଇ ଯାହାର
ସାତଦନ ସାତରାତ୍ର ଏସନ ପ୍ରକାର ।
ତାହାର ମରଣ ଜାଣ ଅତ୍ୟନ୍ତ ନିକଟ
କହିଲି ମୁଁ ପାର୍ବତୀ ଗୋ ନ କର କପଟ ।
ଲୋମ ଟାଙ୍କୁରତ ହୁଏ ଜ୍ୱଲ୍ଲସଇ ଦେହ
ତାଳୁ ଶୁଖିଯାଉଥାଏ ଯାର ଅହରହ ।
ମସ୍ତିଷ୍କ ଘୂରଇ ଦଗ ନ ପାରଇ ବାର
ମାସକରେ ମୃତ୍ୟୁ ନିଶ୍ଚେ ହୁଅଇ ତାହାର ।
ଜିଭ କୃଷ୍ଣ ହୋଇଯାଏ ଯେଉଁ ମାନବର
ଓଦା ମାଳ ରହୁଥାଏ ସଦା ଦନ୍ତମୂଳ ।
ତାହାର ମୃତ୍ୟୁ ନିକଟ କହଇ ପୁରାଣ
ଅବର ଶୁଣ ଭବାନୀ ମରଣର ଚିହ୍ନ ।
ନିଜ ଛାୟା ଦେଖି ଯେହୁ ନ ଦେଖଇ ଶିର
ତାହାର ମୃତ୍ୟୁ ନିକଟ ଜାଣ ଗିମାବର ।
ଏକାବେଳେ ଦୁଇସୂର୍ଯ୍ୟ ଯେ କରେ ଦର୍ଶନ
ଅଥବା ଦୁଇଟି ଚନ୍ଦ୍ର ଦେଖେ ଯା ନୟନ ।
ପକ୍ଷକ ମଧ୍ୟରେ ତାର ମୃତ୍ୟୁ ସୁନିଶ୍ଚିତ
ଦେଖି ନ ପାରଇ ଯେହୁ ଆକାଶେ ନକ୍ଷତ୍ର ।
ଯାର ଶିରେ କୁଆ ଅଭ ଶାଗୁଣା ବସନ୍ତି
ସେ ଜନ ଯମ ସଦନେ ଅବଶ୍ୟ ଗମନ୍ତି ।

ସର୍ବଦା ମୁଖ, କଣ୍ଠ ଯେ ଶୁଖଇ ପ୍ରାଣୀର
ଛ ମାସ ମଧ୍ୟରେ ମୃତ୍ୟୁ ଘଟଇ ତାହାର ।
ଜଳ ଘିଅ ତେଲ୍ ଦର୍ପଣରେ ମୁହଁ ଯାର
ନ ଦଶଇ ଅବା ଦଶେ ବିକୃତ ଆକାର ।
ଛ ମାସେ ମରଇ ସେହୁ ଏ ଧ୍ରୁବ ଅଟଇ
ଦୀପ ଲିଭିଲେ ଯେ ଗନ୍ଧ ବାରି ନ ପାରଇ ।
ଛ ମାସ ମଧ୍ୟରେ ସେ ଲୋକର ମୃତ୍ୟୁ ହୋଇ
କଳଙ୍କହୀନ ଚନ୍ଦ୍ର ଯେ ନୟନେ ଦେଖଇ
ସେ ମଧ୍ୟ ଛ ମାସ ମଧ୍ୟେ ଯମାଳୟ ଯାଇ ।
ଅରୁନ୍ଧତୀ, ଧ୍ରୁବ, ପୂର୍ଣ୍ଣଚନ୍ଦ୍ରମା, ଦୀପ
ନ ଦଶିଲେ ଜାଣିବ ଆୟୁ ହେଲା ଲୋପ ।

## ସ୍ୱପ୍ନଫଳ

ଯାହା ଯାହା କାଲି ମୁହଁ ଦେଖିଲି ସ୍ୱପ୍ନରେ
କହୁଛି ସେ ସବୁ ଏବେ ଶୁଣିଥାଅ ଥରେ ।
ବିଧବା କାମିନୀଟିଏ ଫିଟାଇଣ ବାଳ
ନାଚୁଅଛି ମୋର ଆଗେ ମାରି କରତାଳ ।
ରକ୍ତବର୍ଣ୍ଣ ବସ୍ତ୍ର ଖଣ୍ଡେ ପିନ୍ଧିଅଛି ସେହୁ
ହସୁଅଛି ପୁଣି ମୋର ମୁଖକୁ ଅନାଇ ।
ଚିତା ପରେ ଶବଟିଏ ଲଦା ହୋଇଅଛି
ଅଗ୍ନିର ବ୍ୟବସ୍ଥା ତହୁଁ ହୋଇନାହିଁ କିଛି ।
ପଡ଼ିଅଛି ସବୁସ୍ଥାନେ ପାଚିଥିବା ତାଳ
ଆବର ପଡ଼ୁଛି ପୁଣି ଅସ୍ଥି ମାଳମାଳ !

ମୋ ହସ୍ତରୁ ପୂର୍ଣ୍ଣକୁମ୍ଭ ଖସି ମହୀପରେ
ପଡ଼ି ଚୂର୍ଣ୍ଣ ହୋଇ ମିଶି ଯାଉଛି ଧୂଳିରେ ।
ଚନ୍ଦ୍ର ସୂର୍ଯ୍ୟ ବିମ୍ବ ଛୁଟି ଆକାଶ ମଧ୍ୟରୁ
ପଡ଼ୁଛନ୍ତି ମୋର ଆଗେ ଅଗୋ ଗୃହୁ ଭୂରୁ
ଗୃହଦ୍ୱାରେ ଉଲ୍‌କାଚୟ ପଡ଼ୁଛନ୍ତି ଘୋଟି,
ଖାଉଛନ୍ତି ଶିବା ଶିବ ମାଉଁସ ରେକଟି ।
ବିକୃତ ପୁରୁଷଟାଏ ଦିଗମ୍ବର ହୋଇ,
ଧାଇଁ ଆସୁଅଛି ତୀକ୍ଷ୍ଣ ଦନ୍ତକୁ ଦେଖାଇ !
କାନ୍ତୁରେ ଚିତ୍ରିତ ହେବା ପ୍ରତିମା ସକଳ
ନୃତ୍ୟ କରୁଛନ୍ତି ସଦା ହୋଇ ଏକମେଳ ।
ମହିଷ, ଗର୍ଦ୍ଦଭ,ଗୃଧ୍ର, କାକ ପକ୍ଷୀ ଗଣ
ପୀଡ଼ା ଦେଉଛନ୍ତି ମୋତେ ମାରି ପୁନଃପୁନଃ ।
ତଇଲ ପେଡ଼ିବା ଯନ୍ତ୍ର ଘେନି ତେଲିକାର
ବୁଲୁଅଛି ମୋହର ଆଗେ ବାରମ୍ବାର ।
ରାଜମାର୍ଗରେ ପୁରୁଷ ସ୍ତ୍ରୀ ଯୋଡ଼ ଯୋଡ଼,
କାମ କ୍ରୀଡ଼ା କରୁଛନ୍ତି ଲଜ୍ଜା, ଭୟ ଛାଡ଼ି ।
କେଉଁଠାରେ ମିଶାମିଶି ହୋଇ ଦୁଇ ଜଣ,
କରୁଛନ୍ତି ପରସ୍ପର କେଶ ଆକର୍ଷଣ ।
ବିଧବା ସ୍ତ୍ରୀଏ ପିନ୍ଧି କୃଷ୍ଣ ବର୍ଣ୍ଣ ଶାଢ଼ୀ,
ମୁକୁଳା କରିଣ କେଶ ଓଷ୍ଠ ଦନ୍ତ ଭିଡ଼ି ।
ଜଣେ ପରେ ଜଣେ ଆସି ମୋତେ ଆଲିଙ୍ଗନ,
କରି ଦେଉଛନ୍ତି ମୋର ମୁଖରେ ଚୁମ୍ବନ ।
ଏହିରୂପେ ନାନା ଶେଷେ ଅଦ୍ଭୁତ ସ୍ୱପନ
ଦେଖିକରି ଅଗୋ ସଖି ବିକଳ ମୋ ମନ ।

—ବ୍ରହ୍ମବୈବର୍ତ୍ତ ପୁରାଣ—

# ରୋଗ ଓ ତାହାର ପ୍ରତିକାର

## ହଇଜା (କଲେରା)—ଗ୍ରାମରେ ହଇଜା (କଲେରା) ଲାଗିଲେ ଗ୍ରାମରେ ଥିବା ପ୍ରତ୍ୟେକ ଗୃହସ୍ଥର କର୍ତ୍ତବ୍ୟ

ହଇଜା ଲାଗିଥିବା ସମୟରେ ପ୍ରତ୍ୟେକ ଗୃହସ୍ଥର ନିମ୍ନଲିଖିତ ନିୟମମାନ ପାଳନ କରିବା ଉଚିତ ।

୧—ରୋଗ ଦେଖାଯିବା ସଙ୍ଗେ ସଙ୍ଗେ ନିକଟବର୍ତ୍ତୀ ସ୍ୱାସ୍ଥ୍ୟବିଭାଗ କର୍ମଚାରୀଙ୍କ ନିକଟକୁ ଖବର ଦିଅ କିମ୍ବା ରୋଗୀକୁ କୌଣସି ଯାନରେ ଡାକ୍ତରଖାନାକୁ ନେଇଯାଅ ।

୨—ସେପରି ସୁବିଧା ନ ଥିଲେ ହଇଜା ରୋଗୀକୁ ସଙ୍ଗେ ସଙ୍ଗେ ଅଲଗା ଘରେ ରଖାଇବ । ହଇଜା ରୋଗୀର ମଳ ଓ ତାହାର ଦୂଷିତ ଲୁଗାପଟାକୁ ବ୍ଲିଚିଙ୍ଗ୍ ପାଉଡ଼ରରେ ଗୋଳାଇ ଅଲଗା ପାଗାରେ ପରିଷ୍କାରଭାବେ ଧୋଇ ସଫାକରି ଶୁଖାଇ ରଖିବ । ପୋଖରୀରେ କିମ୍ବା କୂଅପାଖରେ ଧୋଇବ ନାହିଁ ।

୩—ଯେ ରୋଗୀର ସେବା କରୁଥିବ, ସେ ବ୍ଲିଚିଙ୍ଗ୍ ପାଉଡ଼ର ଅଭାବରେ ସାବୁନରେ ହାତଗୋଡ଼ ଧୋଇ ସଫା-ସୁତୁରା ରହିବ । ଅଗଣା ଭିତର କୂଅରେ ବ୍ଲିଚିଙ୍ଗ୍ ପାଉଡ଼ର ଆଣି ଶୀଘ୍ର ପକାଇବ । ହଇଜା ଇଞ୍ଜେକ୍ସନ୍ ନେଇନେଲେ ହଇଜା ଆକ୍ରମଣରୁ ରକ୍ଷାମିଳେ । ଏହା ଜାଣି ଗ୍ରାମର ସମସ୍ତ ଲୋକେ ଇଞ୍ଜେକ୍ସନ ନେବେ ।

ହଇଜାରୋଗୀ ମରିଗଲେ ତାହାର ଶବକୁ ଯେଉଁଠି ଇଚ୍ଛା ସେଠି ପକାଇଦେବ ନାହିଁ । ବିଶେଷତଃ ନଈପାଖରେ କିମ୍ବା ନଈ ମୁହାଁଣରେ ଭସାଇ ଦେବ ନାହିଁ ।

କଳପାଣି, କୂଅପାଣି ବା ନଈପାଣିକୁ ଫୁଟାଇ ମାଟିଅରେ ଘୋଡ଼ାଇ ରଖି ସେହି ଜଳ ପିଇବ ।

ରନ୍ଧାହୋଇଥିବା ଖାଦ୍ୟକୁ ଘୋଡ଼ାଇ ରଖିବ । ସେଥିରେ ଯେପରି ମାଛି କିମ୍ବା ଧୂଳି ନ ପଡ଼େ । ଗୁଡ଼ିଆ ଦୋକାନ ଜଳଖିଆ ମିଠେଇ, ବାସିକୁ ବିଷତୁଲ୍ୟ ଜ୍ଞାନ କରି ଖାଇବ ନାହିଁ । ପଚା ବା ସଢ଼ା ଆମ୍ବ, କଦଳୀ, ପଣସ, ତାଳ, ପିଜୁଳି ଖାଇବ ନାହିଁ; କି ଅଧିକ ରାତି ଜାଗର ହେବ ନାହିଁ । ପ୍ରତିଦିନ ଖାଦ୍ୟସହିତ ଲେମ୍ବୁ କିମ୍ବା କଳରା କିମ୍ବା କଞ୍ଚା ପିତା ଓ ଖଟା ଜିନିଷ ଖାଇବ । ନିଜ ଘରକୁ ଝୁଣା ଦେଇ ବାୟୁ ସଫା କରିବ ।

**ହଇଜାର ଚିକିତ୍ସା—**

ହିମସାଗର ପତ୍ର ଗୋଟିଏ, ଗୋଲମରିଚ ପଚିଶଟି ଏକାଠି ବାଟି ରୋଗୀକୁ ଖୁଆଇଲେ ଅଧିକାଂଶ ରୋଗୀ ଏକପାନ ମାତ୍ର ଔଷଧରେ ଭଲ ହେବେ । କୌଣସି କୌଣସି ରୋଗୀର ଏକମାତ୍ରାରେ ଭଲ ଫଳ ନ ହେଲେ ଦୁଇଘଣ୍ଟା ପରେ ଆଉ ଏକମାତ୍ରା ଦିଆଯାଇପାରେ ।

**ହଇଜାରେ ପରିସ୍ରା ମୂତ୍ରବନ୍ଦ ହୋଇଗଲେ—**

ହଇଜାରେ ମୂତ୍ର ବନ୍ଦ ହେବା ଏକ ଗୁରୁତର ଆପଦ । ଏହା ଦ୍ୱାରା ଅନେକ ରୋଗୀ ମୃତ୍ୟୁମୁଖରେ ପଡ଼ନ୍ତି । ସେଥିପାଇଁ ମୂତ୍ର ବନ୍ଦହେଲେ ପ୍ରଥମରୁ ସାବଧାନ ହେବା ଉଚିତ ।

ପୁଳାଏ ଗୋରୁଖିଆ (କାଇଁଚ କାକୁଡ଼) ପତ୍ର, ଯବକ୍ଷାର ଦୁଇତୋଳା ଏକତ୍ର ବାଟି ନାଭିମଣ୍ଡଳର ଚତୁଃପାଖରେ ଲେପିଲେ ଶୀଘ୍ର ପରିସ୍ରା ହୋଇଥାଏ ।

**ହଇଜାରେ ତୃଷା ହେଲେ—**

(କ) ତୃଷ୍ଣାନିବାରଣ ଲାଗି ପାଣି ପିଇବାକୁ ଦେବାରେ କୌଣସି ଆପତ୍ତି ନାହିଁ । ତୃଷ୍ଣା ଅଧିକ ନ ଥିଲେ ମଧ୍ୟ ପାଣି ପିଇବାକୁ ଦେବା ଉଚିତ୍ ।

(ଖ) ପାଣି ପିଇସାରି ଯଦି ପେଟରେ ଯଥେଷ୍ଟ ପାଣି ଥିବ କିମ୍ବା ପାଣି ପରିସ୍ରାବାଟେ ନ ଯାଇ ବାନ୍ତିହୋଇ ପଡ଼ୁଥିବ ତେତେବେଳେ ପାଣି ପିଇବାକୁ ଦେବାରୁ କ୍ଷାନ୍ତ ହେବ ।

**ହଇଜାରେ କୋହ୍ଲା ମାରିଲେ—**

ତଳେ ଗୋଟିଏ ସୁପରୀକ୍ଷିତ ପ୍ରଲେପ ଦିଆଗଲା । ଗୋଟିଏ ଜାଇଫଳ ଉତ୍ତମରୂପେ ଚୂର୍ଣ୍ଣକରି ରଖିବ । ଗୋଟିଏ ପିତ୍ତଳ କିମ୍ବା ଆଲୁମୋନିୟମ ଗିନାରେ ନଡ଼ିଆ ସୋରିଷତେଲ ରଖି ଏକଅଣା ଓଜନର ଅଫିମ ତାହା ସଙ୍ଗେ ମିଶାଇ ଘଷିନିଆଁ ରେ ଫୁଟାଇବ । ତା' ସଙ୍ଗେ ଉପରୋକ୍ତ ଜାଇଫଳ ଚୂର୍ଣ୍ଣ ପକାଇ ଘାଣ୍ଟିବ ବା ଫେଣ୍ଟିବ । ପରେ ନିଆଁରୁ ଓହ୍ଲାଇ ଉତ୍ତମରୂପେ ଖଲି ଟିକିଏ ଗରମ ଥାଉଁ ଖିଲି ଉଠିବା ସ୍ଥାନରେ ଭଲକରି ମାଲିସ କରିବ । ଏଥିରେ କୋହ୍ଲା ବା ଖିଲମାରିବା ହଠାତ୍ ବନ୍ଦ ହୋଇଯାଏ ।

**ହଇଜାରେ ପେଟ ଟାଣୁଥିଲେ—**

ଗୋଟିଏ କଳାବୋତଲରେ ଉଷ୍ଣଜଳ ପୂର୍ଣ୍ଣକରି ଠିପି କଷିଦେଇ ତାହା ବେଦନା ସ୍ଥଳରେ ଚଳାଇବ କିମ୍ବା ଉଷ୍ଣ ଫୋମେଣ୍ଟ କରିବ ।

## ବସନ୍ତ ଓ ମିଳମିଳାରେ ଗ୍ରାମବାସୀଙ୍କର ସାବଧାନତା ଓ କର୍ତ୍ତବ୍ୟ

### ମିଳମିଳା ରୋଗର ଅବ୍ୟର୍ଥ ଔଷଧ—

ଅବସରପ୍ରାପ୍ତ ପୁଲିସ ସୁପରଣ୍ଟେଣ୍ଡେଣ୍ଟ ଶ୍ରୀ ଲକ୍ଷ୍ମଣ ମିଶ୍ର ଜଣାଇଛନ୍ତି :—

ମିଳମିଳା ରୋଗ ସାଧାରଣତଃ ଛୋଟ ପିଲାମାନଙ୍କୁ ଆକ୍ରମଣ କରେ । ଏହା ମାରାତ୍ମକ ରୋଗ ନୁହେଁ । ଏହି ରୋଗରୁ ମୁକ୍ତ ହେଲାପରେ ଯେଉଁସବୁ ଆନୁସଙ୍ଗିକ ରୋଗ, ଯଥା—ଶ୍ୱାସନଳୀ ପ୍ରଦାହ (**Bronchitis**), ଫୁସ୍‌ଫୁସ୍ ପ୍ରଦାହ (**pneumonia**), ନାଳରକ୍ତ ଝାଡ଼ା ପ୍ରଭୃତି ରୋଗ ହୁଏ । ସେହି ରୋଗରେ ପିଲାମାନଙ୍କର ପ୍ରାଣନାଶ ହୁଏ ।

ମିଳାମିଳା ରୋଗର ଯେ କୌଣସି ଅବସ୍ଥାରେ ନିମ୍ନଲିଖିତ ଔଷଧଟି ବ୍ୟବହାର କଲେ ମିଳମିଳାର ଯନ୍ତ୍ରଣା ଏବଂ ଆନୁସଙ୍ଗିକ ରୋଗମାନଙ୍କରୁ ରକ୍ଷାମିଳେ । ଏହି ଔଷଧଟି ବହୁ ପରୀକ୍ଷିତ । ୧୯୩୩ ମସିହାଠାରୁ ଆଜପର୍ଯ୍ୟନ୍ତ ନିମ୍ନଲିଖିତ ଔଷଧରେ ଗୋଟିଏ ରୋଗୀର ପ୍ରାଣନାଶ ହେବାର ମୁଁ ଦେଖି ନାହିଁ କି ଶୁଣି ନାହିଁ । ଅତଏବ ଅନୁରୋଧ, ଏହି ଔଷଧ ଦେଇ ପିଲାମାନଙ୍କର ସ୍ୱାସ୍ଥ୍ୟ ଓ ଜୀବନ ରକ୍ଷା କରନ୍ତୁ ।

ଔଷଧ—ବରକୋଳି ଗଛର ଅଗି(ଗୋଟିଏ, ଦୁଇଟି କଅଁଳ ପତ୍ର ମୋଡ଼ ମୋଡ଼ ହୋଇଥିବା ଡଙ୍କ ସହିତ ଛୁଣ୍ଡାଇ ଆଣିବ) ପାଠଗୋଟି, ଗୋଟିଏ ଅଲେଇଚର ସମସ୍ତ ମଞ୍ଜି, ଗୋଟିଏ ଲବଙ୍ଗ ଫୁଲ ଫୋପାଡ଼ଦେଇ), ଏକଢୋଳା ମିଶ୍ରି ଏକତ୍ର ବାଟି, ୯ ୧୦ରେ

ମିଶାଇ ଏକ ପାନ ମାତ୍ର ଦେଲେ ରୋଗମୁକ୍ତ ହେବ ଏବଂ ଆନୁସଙ୍ଗିକ ରୋଗ ହେବ ନାହିଁ । ଯଦି ବାନ୍ତି ହୋଇଯାଏ ତାହାହେଲେ ଆଉ ଏକପାନ ଦେବ । ଗୃମୁଟରେ ଟିକିଏ ଟିକିଏ କରି ପିଆଇଲେ ବାନ୍ତି ହେବ ନାହିଁ । ରୋଗ ମୁକ୍ତ ହେବା ପର୍ଯ୍ୟନ୍ତ ତାଳମିଶ୍ରି ଅଭାବେ ମିଶ୍ରି ପଣା ଦିନକୁ ଗୃଣ ପାଞ୍ଚ ଥର ଦେଉଥିବ ।

**ବସନ୍ତ ରୋଗର ଔଷଧ—**

ଫଣଫଣା ଗଛର ଛାଲି ଏକ ତୋଳାକୁ ଶିଳ୍‌ବଣ କରି ବାଟି ପାଣି ମିଶାଇ ରୋଗୀକୁ ପିଆଇଦେବ ।

ତିନି ଗୃଟ ତୋଳା ଫଣଫଣିଆ ଛାଲି ଶକ୍‌କଣ କରି ବାଟି ସର୍ବାଙ୍ଗରେ ଲଗାଇଲେ ରୋଗମୁକ୍ତ ହେବ । ଏକ ପାନରେ ରୋଗ ମୁକ୍ତ ହେବ । ରୋଗ ବାଧାଡିବ ହୋଇଥିଲେ ଦିନକୁ ଏକପାନ କରି ଦୁଇଦିନ ହେବ । ଗୋଡ଼ର ତଳପାରେ ମଞ୍ଜୁଆତି ପତ୍ରବାଟି ଲଗାଇଲେ ଆଖିରେ ବସନ୍ତ ହେବ ନାହିଁ । ଚନ୍ଦନ ଘୋରି ସେହି ଘୋରାଚନ୍ଦନକୁ ପଦ୍ମଫୁଲରେ ବୁଡ଼ାଇ ବସନ୍ତ ରୋଗୀର ସର୍ବାଙ୍ଗରେ ଲେପିଦେଲେ ବସନ୍ତର ପୀଡ଼ା କମି ଆସେ ।

**କାମଳ (Jaundice) ରୋଗର ଏକମାତ୍ର ଏବଂ ଅବ୍ୟର୍ଥ ମହୌଷଧ—**

ପୁଲିସ ସୁପରିନ୍‌ଟେଣ୍ଡେଣ୍ଟ **ଶ୍ରୀ ଲକ୍ଷ୍ମଣ ମିଶ୍ରଙ୍କ** ବ୍ୟବସ୍ଥା—

ମଞ୍ଜୁଆତି ଗଛର କଞ୍ଚାଡେରର ଆଙ୍ଗୁଠି ମୋଟରେ ଏବଂ ପାଞ୍ଚ ଇଞ୍ଚ ଲମ୍ବରେ ଖଣ୍ଡିଏ ଆଣି ପରିଷ୍କାର କରି ଧୋଇ ରଖିବ । ଅରୁଆ ଗୃଉଳକୁ ପାଣିରେ ଚକଟି ସେହି ପାଣି ଗୋଟିଏ

# ବସନ୍ତ ଓ ମିଳମିଳାରେ ଗ୍ରାମବାସୀଙ୍କର ସାବଧାନତା ଓ କର୍ତ୍ତବ୍ୟ

## ମିଳମିଳା ରୋଗର ଅବ୍ୟର୍ଥ ଔଷଧ—

ଅବସରପ୍ରାପ୍ତ ପୁଲିସ ସୁପରିଣ୍ଟେଣ୍ଡେଣ୍ଟ ଶ୍ରୀ ଲକ୍ଷ୍ମଣ ମିଶ୍ର ଜଣାଇଛନ୍ତି :—

ମିଳମିଳା ରୋଗ ସାଧାରଣତଃ ଛୋଟ ପିଲାମାନଙ୍କୁ ଆକ୍ରମଣ କରେ । ଏହା ମାରାତ୍ମକ ରୋଗ ନୁହେଁ । ଏହି ରୋଗରୁ ମୁକ୍ତ ହେଲାପରେ ଯେଉଁସବୁ ଆନୁସଙ୍ଗିକ ରୋଗ, ଯଥା—ଶ୍ୱାସନଳୀ ପ୍ରଦାହ (Bronchitis), ଫୁସ୍‌ଫୁସ୍ ପ୍ରଦାହ (pneumonia), ନାଲରକ୍ତ ଝାଡ଼ା ପ୍ରଭୃତି ରୋଗ ହୁଏ । ସେହି ରୋଗରେ ପିଲାମାନଙ୍କର ପ୍ରାଣନାଶ ହୁଏ ।

ମିଳାମିଳା ରୋଗର ଯେ କୌଣସି ଅବସ୍ଥାରେ ନିମ୍ନଲିଖିତ ଔଷଧଟି ବ୍ୟବହାର କଲେ ମିଳମିଳାର ଯନ୍ତ୍ରଣା ଏବଂ ଆନୁସଙ୍ଗିକ ରୋଗମାନଙ୍କରୁ ରକ୍ଷାମିଳେ । ଏହି ଔଷଧଟି ବହୁ ପରୀକ୍ଷିତ । ୧୯୩୭ ମସିହାଠାରୁ ଆଜପର୍ଯ୍ୟନ୍ତ ନିମ୍ନଲିଖିତ ଔଷଧରେ ଗୋଟିଏ ରୋଗୀର ପ୍ରାଣନାଶ ହେବାର ମୁଁ ଦେଖି ନାହିଁ କି ଶୁଣି ନାହିଁ । ଅତଏବ ଅନୁରୋଧ, ଏହି ଔଷଧ ଦେଇ ପିଲାମାନଙ୍କର ସ୍ୱାସ୍ଥ୍ୟ ଓ ଜୀବନ ରକ୍ଷା କରନ୍ତୁ ।

ଔଷଧ—ବରକୋଳି ଗଛର ଅଗି(ଗୋଟିଏ, ଦୁଇଟି କଅଁଳ ପତ୍ର ମୋଡ଼ ମୋଡ଼ ହୋଇଥିବା ଡଙ୍କ ସହିତ ଛିଣ୍ଡାଇ ଆଣିବ), ଆଠଗୋଟି, ଗୋଟିଏ ଅଳେଇଚର ସମସ୍ତ ମଞ୍ଜି, ଗୋଟିଏ ଲବଙ୍ଗ (ଫୁଲ ଫୋପାଡ଼ିଦେଇ), ଏକଚୋଳା ମିଶ୍ରି ଏକତ୍ର ବାଟି ୧ ୬ରେ

ମିଶାଇ ଏକ ପାନ ମାନ ଦେଲେ ରୋଗମୁକ୍ତ ହେବ ଏବଂ ଆନୁସଙ୍ଗିକ ରୋଗ ହେବ ନାହିଁ । ଯଦି ବାନ୍ତି ହୋଇଯାଏ ତାହାହେଲେ ଆଉ ଏକପାନ ଦେବ । ଗୁମୁଣ୍ଡରେ ଟିକିଏ ଟିକିଏ କରି ପିଆଇଲେ ବାନ୍ତି ହେବ ନାହିଁ । ରୋଗ ମୁକ୍ତ ହେବା ପର୍ଯ୍ୟନ୍ତ ତାଳମିଶ୍ରି ଅଭାବେ ମିଶ୍ରି ପଣା ଦିନକୁ ଗୁଣ୍ଡ ପାଞ୍ଚ ଥର ଦେଉଥିବ ।

**ବସନ୍ତ ରୋଗର ଔଷଧ—**

ଫଣଫଣା ଗଛର ଛାଲି ଏକ ତୋଳାକୁ ଚେକ୍‌କଣ କରି ବାଟି ପାଣି ମିଶାଇ ରୋଗୀକୁ ପିଆଇଦେବ ।

ତିନି ଗୃତ ତୋଳା ଫଣଫଣିଆ ଛାଲି ଚକ୍‌କଣ କରି ବାଟି ସର୍ବାଙ୍ଗରେ ଲଗାଇଲେ ରୋଗମୁକ୍ତ ହେବ । ଏକ ପାନରେ ରୋଗ ମୁକ୍ତ ହେବ । ରୋଗ ସାଂଘାତିକ ହୋଇଥିଲେ ଦିନକୁ ଏକପାନ କରି ଦୁଇଦିନ ହେବ । ଗୋଡ଼ର ତଳପାଦରେ ମଞ୍ଜୁଆତି ପତ୍ରବାଟି ଲଗାଇଲେ ଅଖିରେ ବସନ୍ତ ହେବ ନାହିଁ । ଚନ୍ଦନ ଘୋରି ସେହି ଘୋରା ଚନ୍ଦନକୁ ପଦ୍ମଫୁଲରେ ବୁଡ଼ାଇ ବସନ୍ତ ରୋଗୀର ସର୍ବାଙ୍ଗରେ ଲେପିଦେଲେ ବସନ୍ତର ପୀଡ଼ା କମି ଆସେ ।

**କାମଳ (Jaundice) ରୋଗର ଏକମାତ୍ର ଏବଂ ଅବ୍ୟର୍ଥ ମହୌଷଧ—**

ପୁଲିସ ସୁପରିନ୍‌ଟେଣ୍ଡେଣ୍ଟ **ଶ୍ରୀ ଲକ୍ଷ୍ମଣ ମିଶ୍ରଙ୍କ** ବ୍ୟବସ୍ଥା—

ମଞ୍ଜୁଆତି ଗଛର କଞ୍ଚାଡେରର ଅଙ୍ଗୁଠି ମୋଟରେ ଏବଂ ପାଞ୍ଚ ଇଞ୍ଚ ଲମ୍ବରେ ଖଣ୍ଡିଏ ଆଣି ପରିଷ୍କାର କରି ଧୋଇ ରଖିବ । ଅରୁଆ ଗୃଉଳକୁ ପାଣିରେ ଚକଟି ସେହି ପାଣି ଗୋଟିଏ

ପାତ୍ରରେ ରଖିବ । ସେହି ପାଣିରୁ ଟିକିଏ ଟିକିଏ ପକାଇ ପରିଷ୍କାର ପଥରରେ ମଞ୍ଜୁଆତି ଚେରକୁ ଚନ୍ଦନ ପରି ବହଳିଆ କରି ଘୋରିବ । ସେହି ଘୋରାରୁ ଏକ ଗ୍ରାମକୁ ସେଥିରେ ପାଞ୍ଚ ଗ୍ରାମର ପାଣି ମିଶାଇ ସକାଳେ ଖାଲିପେଟରେ ପିଇବ । ଦିନକୁ ତିନିଥର; ସକାଳ, ମଧ୍ୟାହ୍ନ ଓ ସନ୍ଧ୍ୟାରେ ଖାଇବ । ପ୍ରତ୍ୟେକ ଥର ଏକ ଗ୍ରାମର ମଞ୍ଜୁଆତି ଚେର ଘୋରା ଏବଂ ପାଞ୍ଚ ଗ୍ରାମର ପାଣି ମିଶାଇ ପିଇବ । ରୋଗ ମୁକ୍ତହେବା ପର୍ଯ୍ୟନ୍ତ ଔଷଧ ଖାଉଥିବ । ରୋଗର ପ୍ରଥମ ଅବସ୍ଥାରେ ଖାଇଲେ ଗୁରି ପାଞ୍ଚଦିନରେ ରୋଗ ମୁକ୍ତ ହେବ । ଜ୍ୱର ଥିଲେ ବାର୍ଲି, ଶାଗୁ ପ୍ରଭୃତି ଖାଇବ । ଜ୍ୱର ନ ଥିଲେ ଭାତ ବା ରୁଟି ଯାହା ଖାଆନ୍ତି ତାହା ଖାଇବ । ମାଛ, ମାଂସ, ଲଙ୍କାମରିଚ, ଖଟା; ଶାଗ ଖାଇବ ନାହିଁ । କାଗଜି ଲେମ୍ବୁ ଖାଇ ପାରିବ । ପଇଡ଼ ପାଣି ଓ ଅଖୁରସ ଖାଇ ପାରିଲେ ଶୀଘ୍ର ଆରୋଗ୍ୟ ହେବ । ଏହି ଔଷଧ ଖାଉଥିବା ସମୟରେ ଅନ୍ୟ ଔଷଧ ଖାଇବ ନାହିଁ । ଏହି ରୋଗର ଔଷଧ ଆଜି ପର୍ଯ୍ୟନ୍ତ ଆବିଷ୍କୃତ ହୋଇନାହିଁ । କେବଳ ମଞ୍ଜୁଆତି ଚେରରେ ଶତକଡ଼ା ଶହେ ରୋଗୀ ଭଲ ହେଉଛନ୍ତି ।

ମଞ୍ଜୁଆତିର ଅନ୍ୟନାମ ମେହେନ୍ଦି । ଏହି ଗଛ ଆଠ ଦଶ ହାତ ଉଚ୍ଚ ହୁଏ । ଏହାର ପତ୍ରକୁ ବାଟି ବାଳିକା ଓ ସ୍ତ୍ରୀଲୋକ-ମାନେ ହାତର ନଖ ଏବଂ ପାପୁଲି ରଙ୍ଗ କରନ୍ତି ।

**ମ୍ୟାଲେରିଆ ଜ୍ୱର**—ବାରପାନ ଖାଇଲେ ଏକବର୍ଷ ଓ ଛଅପାନ ଖାଇଲେ ଛଅମାସପାଇଁ ମ୍ୟାଲେରିଆରୁ ରକ୍ଷା ପାଇ ପାରିବ ଏହା ଗ୍ୟାରେଣ୍ଟି ।

ପୋଟଳପତ୍ର, ଶରେଇତା, ନିମ୍ବଛେଲି, ଗୁଳୁଚ, କଟୁକୀ ଏସବୁ ପ୍ରତ୍ୟେକ ପାଞ୍ଚତୋଳା ହିସାବରେ ନେଇ ବାରଭାଗ କରିବ ।

ଏସବୁର ଏକଭାଗ (ଦୁଇ ଭରିକୁ) ଅଧସେର ପାଣିରେ ସିଝାଇ ଅଧଛଟାଙ୍କି ଥାଉଁ ଛାଣି ସକାଳବେଳା ପାନ କରିବ ।

## ଅମ୍ଳପିତ୍ତ ରୋଗରେ ପ୍ରସଦ୍ଧ ବା ପେଟେଣ୍ଟ ଔଷଧ:—

ପିପ୍ପଳି ଓ ହରିଡ଼ା ଚୂର୍ଣ୍ଣ ସମପରିମାଣରେ ନେଇ ତାହାର ଦୁଇଗୁଣ ପରିମାଣ ପୁରୁଣାଗୁଡ଼ ( ଦୁଇବର୍ଷର ) ସହିତ ମିଶାଇ ମୋଦକ ପ୍ରସ୍ତୁତ କରିବ । ଏହି ମୋଦକରୁ ସୁଭିକାଏ ଓଜନରେ ନେଇ ଅଧପାଏ ଛେଳି ଦୁଧ ସହିତ ରୋଗୀକୁ ସକାଳ ଏବଂ ରାତିର ଭୋଜନର ଅବ୍ୟବହିତ ପରେ ସେବନ କରାଇବ । ଏଥିରେ ଅମ୍ଳପିତ୍ତ ରୋଗ ଶୀଘ୍ର ଭଲହୋଏ ।

ଝାଡ଼ା—ଭେଡେଗୁଡ଼ିଏ ମୁଥା ଛେଚି ରସ ଛାଣି ସେଥିରେ ମିଶ୍ରି ଗୁଣ୍ଡା ମିଶାଇ ଖାଇଲେ ଅନେକ ପ୍ରକାର ଝାଡ଼ା ଭଲ ହୋଇ-ଯାଏ (ମୁଥାରସ ସୁଭିକାଏ ଓଜନରୁ ଅଧଭରି) ।

**ଆମାଶୟ**—(କ) **ଅମ୍ଳିତପତ୍ର** ରସରେ ଅଳ୍ପ ମହୁ ମିଶାଇ ଦୁଇ ତିନି ପାନ ଖାଇଲେ ଉତ୍କଟ **ଆମାଶୟ** ଭଲ ହୋଇଯାଏ ।

(ଖ) ପୋକସୁଙ୍ଗା ପତ୍ରର ରସ ସହିତ ମୁଥା ରସ ମିଶାଇ ସେବନ କଲେ ସକଳ ପ୍ରକାର ଅତିସାର ଶୀଘ୍ର ଆରୋଗ୍ୟ ହୁଏ ।

(ଗ) ମୁଥା ଛେଚି ତାହାର ରସ ସହିତ ପିତାକୋରେଇ ଛେଚି ତାହା ସହ ମିଶାଇ ମିଶ୍ରି ଗୁଣ୍ଡା ଅନୁପାନରେ ତିନି ଚାରିଥର ସେବନ କଲେ ସକଳ ପ୍ରକାର ଅତିସାର ଭଲ ହୋଇଯାଏ । ଏହା ବହୁ ପରୀକ୍ଷିତ ।

ପାନରେ ରଖିବ । ସେହି ପାଣିରୁ ଟିକିଏ ଟିକିଏ ପକାଇ ପରିଷ୍କାର ପଥରରେ ମଞ୍ଜୁଆତି ଚେରକୁ ଚନ୍ଦନ ପରି ବହଳିଆ କରି ଘୋରିବ । ସେହି ଘୋରାରୁ ଏକ ଗ୍ରାମ୍ଭୁ ସେଥିରେ ପାଞ୍ଚ ଗ୍ରାମର ପାଣି ମିଶାଇ ସକାଳେ ଖାଲିପେଟରେ ପିଇବ । ଦିନକୁ ତିନିଥର; ସକାଳ, ମଧ୍ୟାହ୍ନ ଓ ସନ୍ଧ୍ୟାରେ ଖାଇବ । ପ୍ରତ୍ୟେକ ଥର ଏକ ଗ୍ରାମର ମଞ୍ଜୁଆତି ଚେର ଘୋରା ଏବଂ ପାଞ୍ଚ ଗ୍ରାମର ପାଣି ମିଶାଇ ପିଇବ । ରୋଗ ମୁକ୍ତହେବା ପର୍ଯ୍ୟନ୍ତ ଔଷଧ ଖାଉ-ଥିବ । ରୋଗର ପ୍ରଥମ ଅବସ୍ଥାରେ ଖାଇଲେ ଚାରି ପାଞ୍ଚଦିନରେ ରୋଗ ମୁକ୍ତ ହେବ । ଜ୍ୱର ଥିଲେ ବାର୍ଲି, ଶାଗୁ ପ୍ରଭୃତି ଖାଇବ । ଜ୍ୱର ନ ଥିଲେ ଭାତ ବା ରୁଟି ଯାହା ଖାଆନ୍ତି ତାହା ଖାଇବ । ମାଛ, ମାଂସ, ଲଙ୍କାମରିଚ, ଖଟା; ଶାଗ ଖାଇବ ନାହିଁ । କାଗଜି ଲେମ୍ବୁ ଖାଇ ପାରିବ । ପଇଡ଼ ପାଣି ଓ ଅଖୁରସ ଖାଇ ପାରିଲେ ଶୀଘ୍ର ଆରୋଗ୍ୟ ହେବ । ଏହି ଔଷଧ ଖାଉଥିବା ସମୟରେ ଅନ୍ୟ ଔଷଧ ଖାଇବ ନାହିଁ । ଏହି ରୋଗର ଔଷଧ ଆଜି ପର୍ଯ୍ୟନ୍ତ ଆବିଷ୍କୃତ ହୋଇନାହିଁ । କେବଳ ମଞ୍ଜୁଆତି ଚେରରେ ଶତକଡ଼ା ଶହେ ରୋଗୀ ଭଲ ହେଉଛନ୍ତି ।

ମଞ୍ଜୁଆତିର ଅନ୍ୟନାମ ମେହେନ୍ଦି । ଏହି ଗଛ ଆଠ ଦଶ ହାତ ଉଚ୍ଚ ହୁଏ । ଏହାର ପତ୍ରକୁ ବାଟି ବାଳିକା ଓ ସ୍ତ୍ରୀଲୋକ-ମାନେ ହାତର ନଖ ଏବଂ ପାପୁଲି ରଙ୍ଗ କରନ୍ତି ।

**ମ୍ୟାଲେରିଆ ଜ୍ୱର—**ବାରପାନ ଖାଇଲେ ଏକବର୍ଷ ଓ ଛଅପାନ ଖାଇଲେ ଛଅମାସପାଇଁ ମ୍ୟାଲେରିଆରୁ ରକ୍ଷା ପାଇ ପାରିବ ଏହା ଗ୍ୟାରେଣ୍ଟି ।

ପୋଟଳପତ୍ର, ଚିରେଇତା, ନିମ୍ବଛେଲି, ଗୁଳୁଚି, କଟୁକୀ ଏସବୁ ପ୍ରତ୍ୟେକ ପାଞ୍ଚତୋଳା ହିସାବରେ ନେଇ ବାରଭାଗ କରିବ ।

ଏସବୁର ଏକଭାଗ (ଦୁଇ ଭରିକୁ) ଅଧସେର ପାଣିରେ ସିଝାଇ ଅଧଛଟାଙ୍କି ଥାଉଁ ଛାଣି ସକାଳବେଳା ପାନ କରିବ ।

## ଅମ୍ଳପିତ୍ତ ରୋଗରେ ପ୍ରସିଦ୍ଧ ବା ପେଟେଣ୍ଟ ଔଷଧ:—

ପିପ୍ପଳି ଓ ହରିଡ଼ା ଚୂର୍ଣ୍ଣ ସମପରିମାଣରେ ନେଇ ତାହାର ଦୁଇଗୁଣ ପରିମାଣ ପୁରୁଣାଗୁଡ଼ ( ଦୁଇବର୍ଷର ) ସହିତ ମିଶାଇ ମୋଦକ ପ୍ରସ୍ତୁତ କରିବ । ଏହି ମୋଦକରୁ ଥୁଳିକିଏ ଓଜନରେ ନେଇ ଅଧପାଏ ଛେଳି ଦୁଧ ସହିତ ରୋଗୀକୁ ସକାଳ ଏବଂ ରାତିର ଭୋଜନର ଅବ୍ୟବହିତ ପରେ ସେବନ କରାଇବ । ଏଥିରେ ଅମ୍ଳପିତ୍ତ ରୋଗ ଶୀଘ୍ର ଭଲହୁଏ ।

ଝାଡ଼ା—କେତେଗୁଡ଼ିଏ ମୁଥା ଛେଚି ରସ ଛାଣି ସେଥିରେ ମିଶ୍ରିଗୁଣ୍ଡା ମିଶାଇ ଖାଇଲେ ଅନେକ ପ୍ରକାର ଝାଡ଼ା ଭଲ ହୋଇଯାଏ (ମୁଥାରସ ଥୁଳିକିଏ ଓଜନରୁ ଅଧଭରି) ।

ଆମାଶୟ—(କ) ଅମ୍ବିଳତିପତ୍ର ରସରେ ଅଳ୍ପ ମହୁ ମିଶାଇ ଦୁଇ ତିନି ପାନ ଖାଇଲେ ଉତ୍କଟ ଅମାଶୟ ଭଲ ହୋଇଯାଏ ।

(ଖ) ପୋକସୁଙ୍ଘା ପତ୍ରର ରସ ସହିତ ମୁଥା ରସ ମିଶାଇ ସେବନ କଲେ ସକଳ ପ୍ରକାର ଅତିସାର ଶୀଘ୍ର ଆରୋଗ୍ୟ ହୁଏ ।

(ଗ) ମୁଥା ଛେଚି ତାହାର ରସ ସହିତ ପିତାକୋରେଇ ଛେଚି ତାହା ସହ ମିଶାଇ ମିଶ୍ରି ଗୁଣ୍ଡା ଅନୁପାନରେ ତିନି ଚାରିଥର ସେବନ କଲେ ସକଳ ପ୍ରକାର ଅତିସାର ଭଲ ହୋଇଯାଏ । ଏହା ବହୁ ପରୀକ୍ଷିତ ।

**ନାଳରକ୍ତ ଝାଡ଼ା**—କଷି ଡାଳିମ୍ବପତ୍ର ରସ ଓ ତେନ୍ତୁଳି ପତ୍ର ରସ ଏକତ୍ର ମିଶାଇ ମହୁ ଅନୁପାନରେ ଖାଇଲେ ନାଳରକ୍ତ ଝାଡ଼ା ଭଲହୁଏ ।

(କ) ପୁରୁଣା ତେନ୍ତୁଳି ଏକତୋଳା ଓ କାଠିଆ କଦଳୀ ଏକତୋଳା ଏକତ୍ର ବାଟି ଖାଇଲେ ଅମାଶୟ ଶୀଘ୍ର ଭଲ ହୋଇଯାଏ । ଏହା ବ୍ରହ୍ମାସ୍ତ୍ର ।

(ଖ) ଅସାଧ ରକ୍ତାତିସାରରେ ବେଲଶୁଣ୍ଠା ଏକତୋଳା ଓ ଦେଢ଼ପା ଛେଳି ଦୁଧ ଏକତ୍ର କରି ସିଦ୍ଧ କରିବ । ଅଠତୋଳା ଶେଷ ଥାଉଁ ଓହ୍ଲାଇବ । ଏଥିରେ ଦୋଅଣିଏ ଓଜନର ଚିନି ମିଶାଇ ପାନ କରିବ । ଏହା ବହୁ ପରୀକ୍ଷିତ ।

**ଅଜୀର୍ଣ୍ଣ ଓ ପେଟଫମ୍ପା**—ପୋଦନାପତ୍ରର ରସସଙ୍ଗରେ ଅଳ୍ପ କାଗଜିଲେମ୍ବୁ ରସ ଓ ମିଶ୍ରି ଗୁଣ୍ଡ ମିଶାଇ ସେବନ କଲେ ଅଜୀର୍ଣ୍ଣ, ପେଟ ଫାମ୍ପିବା ଅମ୍ଳତକାର ଗୁଲିଯାଏ ।

**ସକଳ ପ୍ରକାର ପେଟରୋଗ**—ଶୁଣ୍ଠି ଦୁଇଭରି, ଗୋଲମରିଚ ଏକ ଭରି, ଯୁଆଣୀ ଦୁଇଭରି, ପାନମହୁରି ଦୁଇଭରି, ବାଇବିଡ଼ଙ୍ଗ ଏକଭରି, ସୈନ୍ଧବ ଲବଣ ଦୁଇଭରି, ସୁନାମକେଇ ଏକଭରି, ଗୋଟା ହରଡ଼ା (ମଞ୍ଜି ଛଡ଼ା) ଏକ ଛଟାଙ୍କି— ପ୍ରାତଃକାଳରେ ଓ ସନ୍ଧ୍ୟାରେ ଗରମ ଜଳରେ ସେବ୍ୟ ।

ମାତ୍ରା—ସୁଜିଏଠାରୁ ଅଧଭରି ପର୍ଯ୍ୟନ୍ତ ।

ଅନେକ ଦିନ ଅତିସାର, ପେଟରୋଗ ଭୋଗ କରି ଯେଉଁମାନେ ହତାଶ ହୋଇଅଛନ୍ତି, ସେମାନଙ୍କପାଇଁ କବିରାଜ ବନମାଳି ଦାସଙ୍କର ଏହି ଔଷଧଟି ମୃତ ସଞ୍ଜୀବନୀ ।

ଲବଙ୍ଗ, ଜାଇଫଳ, ମୁଥା, ଯୁଆଣୀ, ପ୍ରତ୍ୟେକ ଏକତୋଳା, ପିତାକୋବେଇ ଛେଲି ଦୁଇତୋଳା, ବେଲଶୁଣ୍ଠା ଛ' ତୋଳା

ଏକାଣ ଚୂର୍ଣ୍ଣକର କପଡ଼ାଛାଣ କରି ରଖିବ । ଏହି ଚୂର୍ଣ୍ଣରୁ ଅବସ୍ଥା ଭେଦରେ ଦୋଅଣି ଓଜନରୁ ସୁଦ୍ଧ ଚାରିଅଣି ଓଜନର ଶୀତଳଜଳରେ ସେବନକଲେ ବର୍ତ୍ତମାନ ଯୁଗରେ ବିଶେଷଭାବରେ ବ୍ୟାପୁଥିବା ଅମୋଦ୍ଧକ୍ ଇସେଣ୍ଟି ଭଲହୁଏ । ଏହା ତାଙ୍କର ପେଟେଣ୍ଟ ଔଷଧ !

**କାଶ**—ଅଦାରସରେ ପିପ୍‌ପଳୀ ଚୂର୍ଣ୍ଣ ଓ ମହୁ ମିଶାଇ ସେବନ କଲେ ଶୁଖିଲାକାଶ ତରଳ ହୋଇ ବାହାରି ଯାଏ ।

(ଖ) ମୃଷାକାଣ୍ଡୀପତ୍ର ରସରେ ଅଳ୍ପ ଚିନି ମିଶାଇ ତିନି ପାନ ଖାଇଲେ ଶୁଖିଲା କାଶ ତରଳ ହୋଇ ବାହାରିପଡ଼େ ।

(ଗ) ଅଙ୍କରାନ୍ତି ଗଛ ଛେଚି ତାହା ରସରେ ମିଶ୍ରି ଗୁଣ୍ଡ ମିଶାଇ ସେବନ କଲେ ସବୁ କାଶ ଛାଡ଼ିଯାଏ ।

(ଘ) ପାନପତ୍ରକୁ ଛେଚି ରସ ବାହାର କରି ଗାଈ ଘିଅରେ ଫୁଟାଇ ଉଷୁମ ଥାଉଁ ଥାଉଁ ତାକୁ ପିଠିର ବେକଷଣ୍ଢା (ମୂଳରେ) ଓ ମୁଣ୍ଡର ଦୁଇପାଖରେ ମାଲିସ କଲେ, ମୁଣ୍ଡର ମଜ୍ଜା ଶ୍ଳେଷ୍ମା ଗଳିଯାଏ ।

**କାଶି କାଣି ବେଦନା ହେଉଥିଲେ**—ପୁରୁଣା ତେନ୍ତୁଳି ଏକ ତୋଳା ଓ ଅଖୁଗୁଡ଼ ଏକତୋଳା ଏକାଣ ଗୋଟି ପଥୁରି କିମ୍ବା କାଚବୋଟିରେ ଗୋଳାଇ ସର୍ବତ କରିବ । ଏହି ସର୍ବତକୁ ତିନିଭାଗ କରି, ଭାଗେ ସକାଳେ, ଭାଗେ ମଧ୍ୟାହ୍ନରେ ଓ ଭାଗେ ସନ୍ଧ୍ୟାବେଳକୁ ପିଇବ । ଏହିପରି ତିନିଦିନ ପିଇଲେ ଦୁର୍ଜୟ କାଶର ଉପଶମ ହୁଏ । ସାବଧାନ ! ଜ୍ୱରଥାଇ କିମ୍ବା ପଡିଥାଇ ଏହି ଔଷଧ ଦେବନାହିଁ ।

**ଶ୍ୱାସରୋଗରେ ଲୁପ୍ତରତ୍ନର ଉଦ୍ଧାର**—(ଜଣେ ନବେ-ବର୍ଷର ବୃଦ୍ଧ ସନ୍ୟାସୀଙ୍କଠାରୁ ପ୍ରାପ୍ତ) ହରଡ଼ା ଅଧସେର ଅଣି (ଲୁହାରେ ନ ଛେଚି କାଠରେ ଛେଚି) ମଞ୍ଜି ତକ ବାହାର

କରି ଫୋପାଡ଼ି ଦେବ । ପିପ୍‌ପଳୀ ଅଧଛଟାଙ୍କି ଗୁଣ୍ଡ୍ରକର ହରଡ଼ା ସଙ୍ଗେ ମିଶାଇବ । ଗୋଟିଏ ଲୁହା କଟେଇରେ ଏକପା ଗାଈଘିଅ ପକାଇ ଏହି ହରଡ଼ା ଓ ପିପ୍‌ପଳୀକୁ ଭାଜିବ । କିଛି ସମୟ ପରେ ମହୁ ଅଧଛଟାଙ୍କି ମଧ ଏହି କଟେଇରେ ପକାଇବ । ହରଡ଼ାରୁ ଘିଅ ଓ ମହୁତକ ମରିଗଲେ କଟେଇଟିକୁ ଚୂଲିରୁ ଓହ୍ଲାଇବ । ଓହ୍ଲାଇସାରି ଗୋଟିଏ କଦଳୀପତ୍ରରେ ରଖି ଏହାକୁ ପନ୍ଦରମିନିଟ ଗୋଟିଏ ଲିପାଜାଗାରେ ଖରାରେ ରଖିଦେବ ଓ ଗୋଟିଏ ଦଣ୍ଡବତ କରିବ । ତା'ପରେ ଏହାକୁ ନେଇ ଗୋଟିଏ କାଚପାତ୍ରରେ ରଖିବ । ଅଗାଧୁଆ ଛୁଇଁବ ନାହିଁ ।

ପ୍ରତିଦିନ ଗାଧୋଇ ସାରି ଢକ୍ରୁ ଫାଳ ହରଡ଼ାରୁ ଖଣ୍ଡେ ଆଣି ପାଟିରେ ପକାଇ ଚୋଷିବ ଓ ସିଠା ଫୋପାଡ଼ି ଦେବ । ଦିନ ମଧ୍ୟରେ ଚାରି ପାଞ୍ଚଥର ଏହି ହରଡ଼ାକୁ ଚୋଷିକରି ଖାଇବ । ସବୁତକ ସରିଗଲେ ତୁମର ଶ୍ୱାସରୋଗ ଚିରଦିନ ପାଇଁ ଚାଲିଯିବ ।

## ଆମବାତର ପ୍ରସିଦ୍ଧ ମଲମ—

(କ) ସଜନା ଗଛର ମୂଳରୁ ଛେଲି ଆଣି ସେଥିରେ ହାଇସୋରସ୍ମ ମିଶାଇ ସଦ୍ୟ ଗୋମୂତ୍ରରେ ବାଟି ନିଆଁରେ ତତାଇ ଉଷୁମ ଥାଉଁଥାଉଁ ଲେପଦେଲେ ଆମବାତର ତୀବ୍ର ଯନ୍ତ୍ରଣା ଓ ଫୁଲା ଚାଲିଯାଏ ।

(ଖ) ଅରଖପତ୍ର, ଦୁଦୁରାପତ୍ର, ବେଗୁନିଆପତ୍ର, ବାସଙ୍ଗପତ୍ର-ତଙ୍କାଷିପତ୍ର, ଏସବୁ ଏକତ୍ର ମିଶାଇ ଶିଳରେ ଛେଚି ନିଆଁରେ ତତାଇ ଉଷୁମ ଥାଉଁ ଥାଉଁ ବେଦନା ଜାଗାରେ ବୋଳି ପଟି

ବାନ୍ଧି ରଖିବ । ଏଥିରେ ଆମବାତର ଫୁଲା ଓ ବେଦନା ଶୀଘ୍ର ଆରୋଗ୍ୟ ହୁଏ ।

**ଚକ୍ଷୁରୋଗ**—(କ) ହାଡ଼ସିରା ରସରେ ସୁଣ୍ଡତେଲ ମିଶାଇ ମୁଣ୍ଡରେ ମାଲିସ କଲେ ଅନ୍ଧାରକଣା ଓ ଯାବତୀୟ ଚକ୍ଷୁରୋଗ ଭଲ ହୋଇଯାଏ ।

(ଖ) କାଗଜିଲେମ୍ବୁ ରସକୁ ଟିକିଏ ଆଖିରେ ଲଗାଇଲେ ଆଲୁଅ ଉଠିବା ଓ ଆଖି ଗଲୁ ଭଲ ହୁଏ ।

(ଗ) ଅମ୍ଳତିପନ ଛେଚ ସେହି ରସକୁ ଛାଣି ସେଥିରେ ଗୁଆ ଲହୁଣୀ ଓ ଗୋଲମରିଚ ଗୁଣ୍ଡ ମିଶାଇ ଏକତ୍ର ଗୋଳି ଅଞ୍ଜନ କରି ଚକ୍ଷୁରେ ଦେଲେ ଚକ୍ଷୁର ଯାବତୀୟ ପ୍ରକାର ବେଦନା ଆରୋଗ୍ୟ ହୁଏ ।

**ଚକ୍ଷୁରୋଗରେ ବ୍ରହ୍ମାସ୍ତ୍ର**—ଶ୍ୱେତ ପୁନର୍ଣ୍ଣବା ମୂଳକୁ ବିଶୁଦ୍ଧ ଗୁଆ ଘିଅରେ ଚନ୍ଦନ ପେଡ଼ିରେ ଘୋରି ଆଖିରେ ଅଞ୍ଜନ ଦେଲେ ଚକ୍ଷୁର ଜାଲୁଜାଲୁଆ ଓ ପାଣି ଗଡ଼ିବା ଭଲହୁଏ ।

**ଆଖିରେ ଚିଞ୍ଚୁଡ଼ି କ୍ଷୀର ପଡ଼ିଗଲେ—**

କର୍ପୂର ଜଳରେ ମିଶାଇ ସେ ଜଳ ପକାଇବ ।
ଜଡ଼ାତେଲ ଆଖିରେ ପକାଇବ ।

**ସମସ୍ତ ପ୍ରକାର ଚକ୍ଷୁରୋଗରେ—**

ଏହି ଔଷଧଟି ଜଣେ ୯୦ ବର୍ଷର ସନ୍ନ୍ୟାସୀଙ୍କଠାରୁ ବହୁ କଷ୍ଟରେ ପ୍ରାପ୍ତ । ଏଥିରେ (କେବଳ ପରଳ ଛାଡ଼ି) ସମସ୍ତ ଚକ୍ଷୁରୋଗ ନିଶ୍ଚୟ ଆରୋଗ୍ୟ ହେବ ।

ଫାଲେ ପାଚିଲା କାଗଜିଲେମ୍ବୁ ରସରେ ସମପରିମାଣ ବିଶୁଦ୍ଧ ମହୁ ମିଶାଇବ । ତା'ପରେ ଟିକିଏ ବିଶୁଦ୍ଧ କର୍ପୂର, ଗୋଟିଏ

ଲବଙ୍ଗ ଓ ଖଣ୍ଡେ ଶ୍ୱେତପୁରୁଣୀ ମୂଳ ଭକ୍ତ ଲେମ୍ବୁରସ ଓ
ମହୁରେ ଘୋରିବ । ଏହି ଘୋରା ଔଷଧକୁ ଗୋଟିଏ
ପରିଷ୍କାର କାଚପାତ୍ର ଭିତରେ ରଖି ପାରାପର୍ଚ୍ଛୀଦ୍ୱାରା ଆଖିରେ
ଲଗାଇବ । ଦିନ ମଧ୍ୟରେ ସକାଳେ ଓ ସନ୍ଧ୍ୟାରେ ଦୁଇଥର ।

**ପରସ୍ତ୍ରା ପୋଡୁଥିଲେ**—ଟେକା ସିଙ୍ଗୁପତ୍ରରୁ ପାଞ୍ଚଟି ଆଣି
ତାହା ଉପରେ ବାନ୍ଧିରଖିଲେ ପରସ୍ତ୍ରା ପୋଡ଼ା ବନ୍ଦହୁଏ ।

**ଲିଙ୍ଗଦ୍ୱାର ବେଗ ରକ୍ତ ପଡ଼ିଲେ**—

ଅଳତା ଏକଛଟାଙ୍କ, ଅଧସେର ସଜଦୁହାଁ ଗାଈ ଦୁଧରେ
ବଟୁଥାଇ ସେହି ଦୁଧ ଅଧଛଟାଙ୍କି ଲେଖାଁ ପିଇଲେ ସଙ୍ଗେ ସଙ୍ଗେ
ରକ୍ତ ପଡ଼ିବା ବନ୍ଦହୁଏ ।

**ନାକରୁ ରକ୍ତ ପଡୁଥିଲେ**—

ନରେଲା ଗାଈଘିଅ ନାକରେ ଭର୍ତ୍ତିକଲେ ରକ୍ତ ବନ୍ଦହୁଏ ।
ଦୁଧରେ କିମ୍ବା ଦୁବରସରେ ଚିନି ମିଶାଇ ନାସନେବ ।

**ଚମ ଉକୁଣୀ**—ଛଣ୍ଡଅଳା ପତ୍ରର ରସକୁ ଦେହରେ
ଲଗାଇ କିଛିକ୍ଷଣ ପରେ ଗାଧୋଇ ପଡ଼ିଲେ ଦେହର ଚମ ଉକୁଣୀ
ବିନଷ୍ଟ ହୁଏ ।

**କୁଣ୍ଡିଆ**—କଅଁଆ ଦୁବ ଛେଚି ତାହାର ରସ ଛାଣି ଅଧ-
ଛଟାଙ୍କିରେ ଅଧପା ରାଶିତେଲ ମିଶାଇ ନିଆଁ ଚୁଲି ଉପରେ ରଖି
ଫୁଟାଇବ । ଦୁବରସ ମରିଯାଇ ତେଲତକ ରହିଲେ ତାକୁ ଦେହରେ
ବୋଳିଲେ ଅଷ୍ଟପ୍ରହରରେ କୁଣ୍ଡିଆ ଶୁଖିଯାଏ ।

**ଘିମିରି**—ଚନ୍ଦନ ଘୋରି, ସେଥିରେ ଟିକେ କର୍ପୂର ମିଶାଇ
ଘିମିରି ଜାଗାରେ ବୋଳିଦେଲେ ଘିମିରି ମିଳାଇଯାଏ ।

**ଦାଦ**—(କ) ଅମ୍ଳିତ ପତ୍ର ରସରେ ରସୁଣକୁ ଘୋରି ବଥ କିମ୍ବା
ବାଳମୂଳିଆ ଉପରେ ଲଗାଇଲେ ତାହା ଶୀଘ୍ର ବସିଯାଏ ।

(ଖ) ଅଦାଭସରେ ଅଫିମ ଘୋର ଲଗାଇଲେ ବଥ ବସିଯାଏ ।

(ଗ) ଗୋରୁଖିଆ ପତରେ ଚୂନମିଶାଇ ଗରମ କରି ଲଗାଇଲେ ବଥ ପାଚି ଫାଟିଯାଏ ।

(ଘ) କଳା କୁକୁରି ପତ୍ର ରସ ସହିତ ଗାଈ ଘିଅ ମିଶାଇ ଗରମ କରି ଲେପ ଦେଲେ ବଥ ପାଚି ଫାଟିଯାଏ ।

**ବେଙ୍ଗ ବଥ**—ଛୋଟ ଛୋଟ ପିଲାମାନଙ୍କର ମୁଣ୍ଡରେ ଓ ଗାଲରେ ବେଙ୍ଗ ବଥ ହେଲେ ଖଣ୍ଡେ ମୋଟା ନିମ୍ବକାଠ (ଚନ୍ଦନକାଠ ଭଳି ମୋଟା) ଆଣି ତାକୁ ଚନ୍ଦନ ପେଡ଼ିରେ ଘୋରି ସେଥିରୁ ଯେଉଁ ଚନ୍ଦନ ବାହାରିବ ସେହି ପ୍ରଲେପ ଲଗାଇଲେ ବେଙ୍ଗ ବଥ ଭଲହୁଏ ।

**ବାଗି**—ସଜନାଗଛରୁ କ୍ଷୀର ବାହାରି କରି ସେଥିରେ ଚୂନ ମିଶାଇ ବାଗି ଉପରେ ଲେପଦେଲେ ବାଗି ବସିଯାଏ ବା ଫାଟିଯାଏ । ମାତ୍ର ବାଗି ପାଚିଲେ ତାକୁ ଅସ୍ତ୍ରଚିକିତ୍ସା କରାଇବ ।

**ରକ୍ତ ଗଡ଼ା**—ଦେହରେ କୌଣସି ସ୍ଥାନରେ ରକ୍ତ ଗଡ଼ିଲେ ଚକ୍‌ଖଣ୍ଡି, ଘର ଅଳନ୍ଧୁ ଓ ଲୁଣ ଏକତ୍ର ମିଶାଇ ଗୋରୁମୂତ୍ରରେ ବାଟି ଲେପ ଦେବ ।

**ଗାଲୁଆ**—ନରକୋଳିକୁ ଛେଚ, ଅଫିଟା କଦଳୀପତ୍ରରେ ରଖି, ଗାଲୁଆ ଜାଗାରେ ଦେଇ ଗୋଟିଏ ପଟି ବାନ୍ଧି ରଖିଲେ ଅଳ୍ପ ସମୟ ମଧ୍ୟରେ ତାହା ମିଳାଇଯାଏ । ଏହା ସୁପରୀକ୍ଷିତ ।

**କାଖଗୁଳି, ବ୍ରଣ, ବଥ**—ଅକ୍ଳାନବାନ୍ଧି ପତ୍ରକୁ ବାଟି ଉଷୁମ କରି ବୋଳିଦେଲେ ଏସବୁ ପାଚି ଫାଟିଯାଏ ।

**ଗୁଳୁଣିଆ**—ମୂଷାକାନି ପତ୍ରକୁ ହଳଦୀ ସହିତ ବାଟି ନିଆଁରେ ଉଷୁମ କରି ଲେପ ଦେଲେ ପାଦ ତଳର ଗୁଳୁଣିଆ ଭଲହୁଏ ।

**କୌଣସି ସ୍ଥାନ ହାଣି ହୋଇଗଲେ—(କ)ବଣଲୁଂ,** ଝରଣୀ ଗଛ ଛେଚି କଟି ଯାଇଥିବା ଜାଗାରେ ଭର୍ତ୍ତି କରି ପଟି ବାନ୍ଧିଲେ ଭଲ ହୁଏ ।

(ଖ) ପୋକଶୁଙ୍ଘା ରସ କଟା ଘାରେ ପୂରାଇ ତା' ଉପରେ ଖଣ୍ଡିଏ ଧୋବ କନା ପଟି ବାନ୍ଧିଲେ କଟା ଘା ଯୋଡ଼ ହୋଇଯାଏ ।

ପୋଡ଼ା ଘା—ପଥର କୋଇଲା ଚୂର୍ଣ୍ଣ କପଡାଛାଣ କରି ପକାଇଲେ ଘା ଶୁଖି ଆସେ । ଏହା ବହୁ ପରୀକ୍ଷିତ ।

**ଦାନ୍ତମୂଳ ଫୁଲିଥିଲେ ( ଧରିଥିଲେ )—**

ଧଳା ଲଙ୍କାଜଡ଼ା (ବାଇଗବା) କ୍ଷୀର ଅଣି ସେଥିରେ ଟିକିଏ ଲୁଣ ମିଶାଇ ଫେଣ୍ଟି ଦାନ୍ତମୂଳରେ ଘଷିଲେ ସଙ୍ଗେ ସଙ୍ଗେ ଉପକାର ହୁଏ ।

**କାନ ଟାଣୁଥିଲେ—କାନ** ଝାଣୁଥିଲେ କାଟିଆ ସିଝ୍କୁ ପୋଡି ସେଥିରୁ ରସ ବାହାର କରି ଛାଣି ନଖ ଉଷୁମ ଥାଉଁ ଥାଉଁ କାନରେ ପକାଇଲେ କାନଝଣା ଭଲ ହୁଏ ।

**କାନଭିତରେ କୌଣସି ପୋକ ପଡ଼ିଲେ—** କେତେଟୋପା ଜଡ଼ାତେଲ କାନ ଭିତରେ ପକାଇଦେଲେ କାନକୁ ତଳମୁହାଁ କରି ରଖିଲେ ପୋକ ବାହାରି ଆସେ ।

**କୁକୁର କାମୁଡ଼ା—**କୌଣସି ଲୋକକୁ କୁକୁର କାମୁଡ଼ି ଥିଲେ ହଠାତ୍ କୋଶଲା ପତ୍ରକୁ ବାଟି ସେହି କାମୁଡ଼ା ଯାଗାରେ ବୋଳି ରଖିବ । ଏଥିରେ କୁକୁର ବିଷ ନଷ୍ଟ ହୁଏ ।

**କଙ୍କଡ଼ାବିଛା କାମୁଡ଼ିଲେ—**(କ) ଛୋଟ ଗୃକୁଣ୍ଡି ଗଛଟିଏ ଉପାଡ଼ି ଅଣି ତାହାର ପତ୍ରରୁ ଦୁଇ ତିନି ପୁଳା ନେଇ, କାମୁଡ଼ା ଜାଗାରେ ଚୋପାଇକରି କିଛି ସମୟ ଘଷିଲେ ହଠାତ୍ ଯନ୍ତ୍ରଣା ବନ୍ଦ ହୋଇଯାଏ ।

(ଖ) ଅପାମାରଙ୍ଗ ପତ୍ର ଘଷିଲେ ମଧ୍ଯ ତତ୍‌କ୍ଷଣାତ୍ ଯନ୍ତ୍ରଣା ବନ୍ଦ ହୋଇଯାଏ ।

**ସାପ କାମୁଡ଼ିଲେ**—ଷୋହଳବର୍ଷରୁ ପଚିଶବର୍ଷ ବୟସର ନିରୋଗ ଯୁବକର ସଦ୍ୟ ମୂତ୍ର ଏକଛଟାଙ୍କି ପିଆଇଦେଲେ ରୋଗୀ ବଞ୍ଚିଯାଏ । ଦୀର୍ଘ ସମୟପାଇଁ ସମସ୍ତ ଶରୀରରେ ମୂତ୍ର ମାଲିସ କରିବ । ଏହା ପରୀକ୍ଷିତ ।

ଏକ ଇଞ୍ଚ ଲମ୍ବ ଗୋଟିଏ **ଜିଅ** ପାଟିଲ କଦଳୀ ମଧ୍ଯରେ ପୂରାଇ ରୋଗୀକୁ ଖାଇବାକୁ ଦେଲେ ସେ **ଆରୋଗ୍ୟ** ହୋଇଯିବ । ଯଦି ଗୋଟିଏ ପାନରେ ନ ହୁଏ, ତେବେ ପ୍ରତି ଦୁଇଘଣ୍ଟା ବାଦେ ମୋଟ ତିନିପାନ ଦେବ । ସେଥିରେ ରୋଗୀ ନିଶ୍ଚୟ ଆରୋଗ୍ୟ ହେବ, ସନ୍ଦେହ ନାହିଁ । ଏହା ବହୁ ପରୀକ୍ଷିତ ଅଟେ । ଯଦି ରୋଗୀ ଅଜ୍ଞାନ ଥାଏ, ତେବେ କୌଣସି ପ୍ରକାରେ ଉପରୋକ୍ତ ଔଷଧ ତା'ର ଗଳା ଭିତରକୁ ଠେଲିଦେଲେ ମଧ୍ଯ ବିଷ ନଷ୍ଟ ହୋଇଯାଏ ଓ ସେ ଜ୍ଞାନ ପାଏ ।

## ଶିଶୁମାନଙ୍କ ପକ୍ଷରେ ମୃତ ସଞ୍ଜୀବନୀ

ଘିକୁଆଁରୀ ରସ ଏକଭାଗ, ଛତୁଅରୀ ରସ ଏକଭାଗ, ଅଶ୍ୱଗନ୍ଧା ମୂଳର ରସ ଏକଭାଗ ଓ ମିଶ୍ରି ଅଭାବେ ଚିନି ଏକଭାଗ— ଏ ସମସ୍ତ ଦ୍ରବ୍ୟକୁ ଏକତ୍ର ମିଶାଇ ଏକମାସ ପର୍ଯ୍ୟନ୍ତ ପ୍ରତିଦିନ ସକାଳେ ଶିଶୁମାନଙ୍କୁ ସେବନ କରାଇଲେ ସେମାନେ ବହୁକାଳ ନିରୋଗ ରହନ୍ତି ଓ ସେମାନଙ୍କର ସ୍ମରଣ ଶକ୍ତି ପ୍ରଖର ହୁଏ ।

**ପିଲାଙ୍କର ସର୍ଦ୍ଦି**—ପାନରସ ଓ ସୋରିଷତେଲ ଏ ଦୁହିଁ ଏକତ୍ର କରି ନିଆଁରେ ଫୁଟାଇ ଉଷୁମ ଥାଉଁ ଥାଉଁ ପିଲାଙ୍କ ଦେହରେ ମାଲିସ କଲେ ସର୍ଦ୍ଦି ଛାଡ଼ିଯାଏ ।

**ଶିଶୁମାନଙ୍କ ପାଇଁ**—ଛେଳି ଦୁଧ ପିଲାମାନଙ୍କୁ ଗୋଟିଏ ବର୍ଷ (ସକାଳୁ) ଖୁଆଇଲେ ତାଙ୍କୁ ଚିରକାଳ ସକାଶେ କାଶ, ଶ୍ୱାସ ଓ ବିଶେଷତଃ ଯକ୍ଷ୍ମା ରୋଗ ହୁଏ ନାହିଁ ।

---

ମୁଦ୍ରାକର ଶ୍ରୀ ବଣ୍ଡମ୍ବର ପରିଡ଼ା, ପ୍ରଜାତନ୍ତ୍ର ପ୍ରେସ, କଟକ-୨, ୧୯୬